ପ୍ରାଚୀ ଗ୍ରନ୍ଥମାଳା—ତ୍ରୟୋବିଂଶ

# ଗୋପୀଭାଷା

—

ପ୍ରଧାନ ସଂପାଦକ—

ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

# ଗୋପୀଭାଷା

ମହାକବି ଦନାତ ଦାସଙ୍କ କୃତ

ଶ୍ରୀଯୁକ୍ତ ବଚ୍ଛନ ଚରଣ ପଟ୍ଟନାୟକ ବି: ଏ: ଙ୍କ ଦ୍ୱାରା
ବିଭିନ୍ନପାଠ ଗୃହୀତ ।

ଟୀକା ଓ ମୁଖବନ୍ଧ ସହ

**ପ୍ରାଚୀ ସମିତି ଦ୍ୱାରା**

ସଂକଳିତ ଓ ପ୍ରକାଶିତ

ମୂଲ୍ୟ ଏକଟଙ୍କା ମାତ୍ର

# ମୁଖବନ୍ଧ

ଦନାଇ ଦାସଙ୍କ 'ଗୋପୀଭାଷା' ଉତ୍କଳର ଘରେ ଘରେ ସୁପରିଚିତ । କିନ୍ତୁ ଦୁଃଖର କଥା, ସେହି ଗୋପୀଭାଷାର କେବଳ ପ୍ରଥମ ଭଜନଗୋଟି ଛାନ୍ଦରୁ କେତେକ ପଦ ମାତ୍ର ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ତେଣୁ ଆମ୍ଭମାନଙ୍କ ଗୋପୀଭାଷାର ବିଶାଳ କଳେବର ଦର୍ଶନରେ କେହି କେହି ବିସ୍ମିତ ହେବା ବିଚିତ୍ର ନୁହେଁ । [redacted] ୩୨ ଛାନ୍ଦ ବିଶିଷ୍ଟ ଛଅଖଣ୍ଡି ଗୋପୀଭାଷା ପୋଥି ପାଇ ଏହି ଗୋପୀଭାଷାର ସଂକଳନ କଲି । ଶୁଣାଯାଏ, ଏହା ୯୬ ଛାନ୍ଦ ବିଶିଷ୍ଟ । କିନ୍ତୁ ଅସ୍ମତ୍ ସଂକଳିତ ଗୋପୀଭାଷାର ଉପସଂହାର ପାଠକଲେ ଜଣାଯାଏ ଯେପରି କି ଏହା ୩୨ ଛାନ୍ଦରେ ସଂପୂର୍ଣ୍ଣ ହୋଇଅଛି । ଯଦ୍ୟପି ଏହାପରେ ଆଉ ୬୪ ଛାନ୍ଦ ମିଳେ, ତେବେ ତାହା ପରେ ସଂକଳିତ ହେବ ।

କବି ଦନାଇଦାସ ଜଣେ ପ୍ରଧାନ ଭକ୍ତ ଥିଲେ, କୃଷ୍ଣ ରସରେ ରସିକ ଥିଲେ—ମତୁଆଲା ଥିଲେ । ସେ ଗୋପୀ ଭାବରେ ଏତେଦୂର ଭୋଳିଥିଲେ ଯେ, ତାଙ୍କର ବାସ୍ତବ ଜ୍ଞାନ ଥିଲା ପରି ଜଣାଯାଏ ନାହିଁ । ଗୋପୀଭାଷା ଗୋଟିଏ ଉପଦେଶପୂର୍ଣ୍ଣ ଗ୍ରନ୍ଥ । ଦନାଇଦାସ ସ୍ୱ ସମୟର ସାମାଜିକ ଓ ପାରିବାରିକ ଚିତ୍ରମାନ ତହିଁରେ ଗୌଣଭାବରେ ଉପସ୍ଥାପିତ କରି ଅଛନ୍ତି । ସେ କେଉଁ ସମୟର ଲୋକ, ତାହା ବର୍ତ୍ତମାନ ବିଚାର୍ଯ୍ୟ । ଗୋପୀଭାଷା ପାଠକଲେ ଜଣାଯାଏ ଯେ :—

(କ) ଦନାଇ ଦାସ ଜଗନ୍ନାଥ ଦାସଙ୍କ ଭାଗବତରୁ ଅନେକ ବିଷୟ ଓ ସ୍ଥଳ ବିଶେଷରେ ପଦମାନ ବ୍ୟବହାର କରି ଅଛନ୍ତି । ଯଥା :—

(୧) ହେ ନାଥ ପରମ ଦୟାଳୁ । ଦୁଃଖ ନିବାରି ସନ୍ତ ପାଳୁ । (ଭାଗବତ)
କଂସରୁ ମାରି ମେଦିନୀ ରଖିଲୁ । ଦୁଃଖ ନିବାରି ସନ୍ତକୁ ପାଳିଲୁ । (ଗୋପୀଭାଷା)

(୨) ଅନ୍ୟାନ୍ୟ ବିଷୟ ଛଡ଼ା ବୃନ୍ଦାବତୀ ବିଷୟ ଯାହା ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି, ତାହା ମଧ୍ୟ ଗୋପୀଭାଷାରେ ଉଦ୍ଧୃତ ।

(୬) ଉଦ୍ଧବଙ୍କ ବ୍ରହ୍ମଜ୍ଞାନରେ ଗୋପୀମାନେ ସନ୍ତୁଷ୍ଟ ହୋଇ ରହିବ। ଯାହା ଓଡ଼ିଆ ଭାଗବତରେ ଅଛି, ତାହାର ଅବଲମ୍ବନରେ ଗୋପୀଭାଷାରେ, ନାରଦ ଗୋପୀମାନଙ୍କୁ ବ୍ରହ୍ମଜ୍ଞାନ କହି ସନ୍ତୁଷ୍ଟ କରିଥିବା କଥା ଲିଖିତ ଅଛି ।

ଏ ସମସ୍ତରୁ ଜଣାଯାଉଅଛି ଯେ, ଦନାଇଦାସ ଜଗନ୍ନାଥଦାସଙ୍କ ପରବର୍ତ୍ତୀ ।

(ଖ) ଦନାଇ ଦାସ ଅଚ୍ୟୁତାନନ୍ଦ ଦାସଙ୍କର ମଧ୍ୟ ପରବର୍ତ୍ତୀ । କାରଣ :—

(୧) ଅଚ୍ୟୁତାନନ୍ଦ ବୃନ୍ଦାବନ ହରଣ ବିଷୟ ସ୍ୱ ହରିବଂଶରେ ଲେଖିଛନ୍ତି ।

(୨) ଗୋପୀମାନଙ୍କୁ ନାରଦଙ୍କ ବ୍ରହ୍ମଜ୍ଞାନ କଥନ ଅଚ୍ୟୁତାନନ୍ଦଙ୍କ ଗୁରୁଭକ୍ତି ଗୀତା ୧ମ ଖଣ୍ଡ ୮ମ ଛାନ୍ଦର ପଦମାନଙ୍କ ଅନୁରୂପ ।

ରୂପ ଦେଖିବାକୁ ତ ସମସ୍ତ ଜନ ଧାଏ । ନାମକୁ ପରଚେ ସହ ଏକ ଏକ ଜଣ ।
ଗୋପୀ ରୂପ ଦେଖି କରି ଶୋକେ ବୁଡ଼ିଥିଲେ । ଉଦ୍ଧବ ଯେତେବେଳେ ନାମ ପରଚେ ହୋଇଲେ ।
ଲଳିତା ଅକ୍ଷୟ ବନ୍ଧି ନାମ ଉଚ୍ଚାରିଲେ । ରୂପ ଗଲେ ନାମ ଥିବ ମନେ ଲୟେ କଲେ ।

(ଗ) ଚୈତନ୍ୟଦେବଙ୍କ ଆବିର୍ଭାବ ଓ ତାଙ୍କ ଉତ୍କଳ ଲୀଳାପରେ ଦନାଇଦାସ ଜନ୍ମ ଗ୍ରହଣ କରିଥିଲେ । କାରଣ ସେ ଗୋପୀଭାଷାର ୬ଷ୍ଠ ଛାନ୍ଦର ୧୯ ପଦରେ ଲେଖିଅଛନ୍ତି—

"ବେଣୁ ଭୂଷଣ ଯେ ହୋଇଲେ ଗୋରା । ଏହି ସମୟେ ମିଳେ ଶ୍ୟାମ ଗୋରା"

(ଘ) କଳାପାହାଡ଼ ଦ୍ୱାରା ଜଗନ୍ନାଥଙ୍କ ମୂର୍ତ୍ତି ଦଗ୍ଧ ହେବା ଗୋପୀଭାଷାରେ ସୂଚିତ ହୋଇଥିବା ବିଷୟ କବିଙ୍କ ଉକ୍ତିରୁ ଜଣା ପଡ଼େ । ଯଥା :—

"ଶିବ ଥାନରେ ରହିଲ ଭରିଲୁ । ବିଷ୍ଣୁ ପ୍ରତିମା ଅଗ୍ନିରେ ଦହିଲୁ ।"

ଏଥିରୁ ଜଣାଯାଏ ଯେ, ସେ କଳା ପାହାଡ଼ର ସମସାମୟିକ କିମ୍ବା ତତ୍‌ପରବର୍ତ୍ତୀ କାଳର ଲୋକ ।

(ଙ) ବୈରାଜ୍ୟ ଗୀତାକାର ଦେବାନନ୍ଦ ଦାସ ଓ ଅଣାକାର ସଂହିତାର ନନ୍ଦ ଦାସ ଏକ ବ୍ୟକ୍ତି ବୋଲି ଅନେକଙ୍କର ମତ । ନନ୍ଦ ଦାସ ତାଙ୍କ ଅଣାକାର ସଂହିତାରେ ଲେଖିଅଛନ୍ତି, ପଞ୍ଚସଖାଙ୍କ ମଧ୍ୟରୁ ଏକତମ ଅନନ୍ତ ଖୋର୍ଦ୍ଧାରେ ଜନାର୍ଦ୍ଦନ ରୂପରେ ଜନ୍ମ ପରିଗ୍ରହ କରିଥିଲେ । ଦେବାନନ୍ଦ ବା ନନ୍ଦ ଦାସଙ୍କ ବିଷୟରେ ବିନାୟକ ମିଶ୍ରେ ଲେଖି ଅଛନ୍ତି—"ଏହାଙ୍କର ଆବିର୍ଭାବ କାଳ ସମ୍ବନ୍ଧରେ କୌଣସି ସଙ୍କେତ ମିଳି ନାହିଁ । ଅଚ୍ୟୁତାନନ୍ଦ, ଦ୍ୱାରିକା ଓ ଜନାର୍ଦ୍ଦନ ପ୍ରଭୃତିଙ୍କ ଆବିର୍ଭାବ

କାଳ ନନ୍ଦଦାସ ଅଣାକାର ସଂହିତାରେ ଲେଖିଥିବାରୁ ଏହାଙ୍କୁ ସପ୍ତଦଶ ଶତାବ୍ଦୀର କବି ବୋଲି ଅନୁମାନ କରିବାକୁ ହୁଏ ।" ପରଚେ ଗୀତାର ମୁଖବନ୍ଧରେ ଆମ୍ଭେମାନେ ନିର୍ଦ୍ଦେଶ କରିଅଛୁ ଯେ, ଦ୍ୱାରିକା ଦାସ ୧୬୬୨ ସାଲ ବା ତତ୍ସମୀପବର୍ତ୍ତୀ କାଳରେ ଜନ୍ମଗ୍ରହଣ କରି ୧୭୪୦ ସାଲ ବା ତତ୍ସମୀପବର୍ତ୍ତୀ କାଳରେ ଦେହ ତ୍ୟାଗ କରିଥିବା ସମ୍ଭବପର । ଦ୍ୱାରିକା ଦାସ ମୁକୁନ୍ଦ ଦେବଙ୍କର ୨ ଅଙ୍କ ଓ ୨୭ ଅଙ୍କରେ ବର୍ତ୍ତମାନ ଥିବା ତାଙ୍କ ଛତିଶ ଗୁପ୍ତ ଗୀତାରେ ଲେଖିଅଛନ୍ତି । ବୈଚନ୍ଦ୍ର ଗୀତାକାର ଦେବାନନ୍ଦ ଦାସ ବୈଚନ୍ଦ୍ର ଗୀତାର ଉପସଂହାରରେ ସ୍ୱ ଗ୍ରନ୍ଥର ରଚନାକାଳ ଓ ନିଜର ଅଧିଷ୍ଠାନ ନିର୍ଦ୍ଦେଶ କରି କହିଅଛନ୍ତି :—

"ମୁକୁନ୍ଦ ଦେବ ନୃପତିରେ । ସଂପୂର୍ଣ୍ଣ ଚଉଦ ଅଙ୍କରେ
ବେନି ଅଷାଢ ସେ ସାଲର । ସ୍ୱାମୀ ନନ୍ଦାଳ ଝଟଳେର ।
ଦ୍ୱିତୀୟା ଅଦ ଶୁକ୍ରବାରେ । ଗୁପ୍ତିର ବଜସ୍ୱେ ଠାଣେରେ
ସେ ଦିନ ଏ ଗୀତା ସଂପୂର୍ଣ୍ଣ । ଯେ ପୁର ଶାସନର ଗ୍ରାମେଣ ।"

ବିନାୟକ ମିଶ୍ରେ ବୈଚନ୍ଦ୍ର ଗୀତାର ଏହି ଅଂଶ କେତେକ ପଢ଼ି ନ ଥିବାରୁ ଦେବାନନ୍ଦଙ୍କ ସମୟ ନିରୂପଣ କରି ପାରି ନାହାନ୍ତି । ସେ ଯାହାହେଉ, ଉଦ୍ଧୃତାଂଶରୁ ସ୍ପଷ୍ଟ ଜଣାଯାଉଅଛି ଯେ, ମୁକୁନ୍ଦ ଦେବଙ୍କ ୧୪ ଅଙ୍କରେ ସେ ଏ ଗ୍ରନ୍ଥ ସମାପନ କରିଥିଲେ । ଅଣାକାରସଂହିତା ଯେବେ ଏ ଗ୍ରନ୍ଥର ୧୦।୨୦ ବର୍ଷ ପରେ ଲେଖାଯାଇ ଥିବାର ଅନୁମାନ କରାଯାଏ । ତେବେ ( ୧୬୬୨+୧୨ +୨୦ ) ୧୬୯୪ ସାଲରେ ଅଣାକାରସଂହିତା ଲେଖା ହେବା ସମ୍ଭବପର । ସେତେବେଳକୁ ଦ୍ୱାରିକା ଦାସଙ୍କ ବୟସ ୩୧ କି ୩୨ ବର୍ଷ ହେଉଅଛି । ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ, ଦେବାନନ୍ଦ ଦାସ ଦ୍ୱାରିକା ଦାସଙ୍କ ଠାରୁ ବୟସରେ ଜ୍ୟେଷ୍ଠ, ତେଣୁ ସେ ଦ୍ୱାରିକା ଦାସଙ୍କ ବିଷୟରେ ସ୍ୱ ଅଣାକାରସଂହିତା ଗ୍ରନ୍ଥରେ ଲେଖିବା ସମ୍ଭବପର ନୁହେ । ତହୁଁ ଆମ୍ଭମାନଙ୍କ ମତରେ ତୃତୀୟ ମୁକୁନ୍ଦଦେବ— ଯେ ୧୭୯୮ ରୁ ୧୮୧୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ତାଙ୍କର ୧୪ ଅଙ୍କରେ ବୈଚନ୍ଦ୍ରଗୀତା ଲେଖା ଶେଷ ହୋଇଥିଲା । ତେଣୁ ଆମ୍ଭେମାନେ ୧୮୦୯ ସାଲରେ ବୈଚନ୍ଦ୍ରଗୀତା ସମାପ୍ତ ହେବାର ନିର୍ଦ୍ଦେଶ କରିପାରୁ । ନନ୍ଦଦାସ ତାଙ୍କ ପୂର୍ବବର୍ତ୍ତୀ ଅଚ୍ୟୁତ ଦ୍ୱାରିକା ଓ ଜନାର୍ଦ୍ଦନ ପ୍ରଭୃତିଙ୍କ ବିଷୟ ଲେଖିବା ସ୍ୱାଭାବିକ । ଆମ୍ଭେମାନେ ପରଚେ ଗୀତାର ମୁଖବନ୍ଧରେ ଦର୍ଶାଇ ଅଛୁ ଯେ, ନନ୍ଦଦାସଙ୍କ ଉକ୍ତ ଦ୍ୱାରିକା ଦାସଙ୍କ କାଳ ନିରୂପଣ ପ୍ରମାଦକ ।

ପୁନଶ୍ଚ ବିନାୟକ ମିଶ୍ରେ ମଯୂର ଚନ୍ଦ୍ରିକାର ହରିଦାସଙ୍କୁ ଆଓରଙ୍ଗଜେବଙ୍କ ଦ୍ୱାରା ଅତ୍ୟାଚରିତ ହେବାର ଯାହା ଅନୁମାନ କରିଅଛନ୍ତି, ତାହା ଯୁକ୍ତି ସଙ୍ଗତ ରୂପ ପ୍ରତୀତ ହେଉନାହିଁ । କାରଣ, ହରିଦାସ ସ୍ୱ ମଯୂର ଚନ୍ଦ୍ରିକାର ପଞ୍ଚମ ଚନ୍ଦ୍ରିକାକୁ ଗୋପୀଭାଷା ବୃତ୍ତରେ ନିର୍ଦ୍ଦେଶ କରିଅଛନ୍ତି । ଜଣକର ଲେଖା ଜନ ସାଧାରଣରେ ପ୍ରଚଳିତ ନ ହେଲେ କେହି ସେ ଲେଖାର ବୃତ୍ତରେ କବିତା ଲେଖି ଜନସାଧାରଣଙ୍କ ସମକ୍ଷରେ ଉପସ୍ଥାପିତ କରିବାକୁ ସାହାସୀ ହେବ ନାହିଁ । ବିନାୟକ ବାବୁ ଦୁଇଜଣଙ୍କୁ ସମକାଳୀନ କରି "ସେ କାଳରେ ମୁଦ୍ରାଯନ୍ତ୍ରର ସୁବିଧା ନ ଥାଇ ସୁଦ୍ଧା କପରି କବିମାନଙ୍କର ରଚନାମାନ ଦେଶ ଭିତରେ ଦ୍ରୁତ ଗତିରେ ପ୍ରଚାରିତ ହେଉଥିଲା" ବୋଲି ଯେଉଁ ମନ୍ତବ୍ୟଟି ପ୍ରକାଶ କରିଅଛନ୍ତି, ତାହା ଯେପରି ବିସ୍ମୟ ଜନକ ସେହିପରି ହାସ୍ୟୋଦ୍ଦୀପକ ! ହରିଦାସ ଖୁବ କମରେ ଗୋପୀଭାଷାକାର ଜନାର୍ଦ୍ଦନ ଦାସଙ୍କ ୫୦ ବର୍ଷ ପରର ଲୋକ କହିଲେ ସତ୍ୟର ଅପଲାପ ହେବ ନାହିଁ ।

ନନ୍ଦଦାସ ଯେ କ ଅଣାକାର ସଂହିତାରେ ଜନାର୍ଦ୍ଦନଙ୍କ ବିଷୟ ଲେଖି ଅଛନ୍ତି, ତାଙ୍କୁ ଜନାର୍ଦ୍ଦନଙ୍କ ୫୦।୬୦ ବର୍ଷର ପରବର୍ତ୍ତୀ ଲୋକ ଧରିଲେ ଜନାର୍ଦ୍ଦନ ଦାସ ୧୭୪୦ ସାଲରେ ଜୀବିତ ଥିବା ସମ୍ଭବପର । ହରିଦାସ ଓ ନନ୍ଦଦାସ ପ୍ରାୟ ଏକ କାଳର ଲୋକ, ଏଥିରେ ଅଣୁ ମାତ୍ର ସନ୍ଦେହ ନାହିଁ ।

(ଚ) ଗୋପୀଭାଷାର ବଂଶ ସ୍ଥଳରେ ଦନାଇଦାସ ଲେଖିଅଛନ୍ତି—

"ବଳା ବୋଲଥ ପତିତ ପାବନ । ଗୋପୀନାଥ ନାମ ବକ୍ଷ୍ୟାଭ ପୁଣ ।"

ଯେଉଁ ରାମଚନ୍ଦ୍ର ଦେବ ୧୭୩୨ ସାଲରୁ ୧୭୪୩ ସାଲ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ, ସେ ମୁର୍ଷିଦକୁଲିଖାଁଙ୍କ କନ୍ୟାକୁ ବିବାହ କରିଥିବାରୁ ତାଙ୍କୁ ଦେଉଳ ବାସନ୍ଦ ହୋଇଥିଲା । ତେଣୁ ସେ ପତିତ ପାବନ ମୂର୍ତ୍ତି ପ୍ରତିଷ୍ଠିତ କରି-ଥିଲେ । ଏଥିରୁ ଅନୁମାନ କରାଯାଇପାରେ, ଦନାଇ ଦାସ ୧୭୪୦ ସାଲପରେ ତାଙ୍କର ଗୋପୀଭାଷା ଲେଖିଥିଲେ ।

(ଛ) ଗୋପୀଭାଷାର ବୃତ୍ତ ହରିଦାସଙ୍କ ଛଡ଼ା ସ୍ୱ କୃତିରେ କେହି ଅବଲମ୍ବନ କରିଥିବାର ଆମ୍ଭେମାନେ ପାଇ ନାହୁଁ । ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନ-ଞ୍ଜୟଙ୍କ ଠାରୁ ଭକ୍ତ ଚରଣଙ୍କ ପର୍ଯ୍ୟନ୍ତ କେହି ଗୋପୀଭାଷା ବୃତ୍ତରେ ଛାନ୍ଦ ଲେଖିବା ନିର୍ଦ୍ଦେଶ କରି ନ ଥିବା ସ୍ଥଳେ ଆମ୍ଭେମାନେ ଦନାଇ ଦାସଙ୍କୁ ୧୮ଶ ଶତାବ୍ଦୀର ପୂର୍ବକାଳର ଲେଖକରୂପେ ଗ୍ରହଣ କରି ନ ପାରୁ ।

(କ) ଆମ୍ଭେମାନେ ଯେଉଁ ଯାବନିକ ଶବ୍ଦମାନଙ୍କର ପ୍ରୟୋଗ ଗୋପୀଭାଷାରେ ଦେଖିବାକୁ ପାଉ, ତାହା ୧୭ଶ ଶତାବ୍ଦୀର ଲେଖକଙ୍କ କୃତିମାନଙ୍କରେ ଦେଖିବାକୁ ପାଉନା । ନାଏକ (ନାଏକ୍) ଇନସ୍ତ, ମହଲ, ସିପାହୀ, ହୁକୁମ ପ୍ରଭୃତି । ଏହି ଉପରୋକ୍ତ କାରଣମାନଙ୍କରୁ ଆମ୍ଭମାନଙ୍କର ବିଶ୍ୱାସ ଯେ, ଦନାଇଦାସ ୧୭୧୦ ବା ୧୭୨୦ ସାଲରେ ଜନ୍ମ ଗ୍ରହଣ କରି ୧୭୭୦ ବା ୧୭୮୦ ସାଲରେ ଦେହ ତ୍ୟାଗ କରିଥିବା ସମ୍ଭବପର ।

ବିଜୟଚନ୍ଦ୍ର ମଜୁମଦାର ତାଙ୍କର ଉତ୍କଳ ସାହିତ୍ୟ ପରିଚୟ ୧ମ ଖଣ୍ଡର ମୁଖବନ୍ଧରେ ଗୋପୀଭାଷା ବିଷୟରେ ଲେଖିଅଛନ୍ତି ଯେ, ଗୋପୀଭାଷା ଚଉତିଶା ମାନଙ୍କ ପରି ପ୍ରାଚୀନ । କେଶବ କୋଇଲି ପରି ଏହା ସବୁ ଗୃହଶାଳୀରେ ପଢ଼ା ହୁଏ । ଜନମୁଖରୁ ଶୁଣାଯାଏ, ବହୁକାଳରୁ ଏହାର ଅସ୍ତିତ୍ୱ ସମୟ ନିର୍ଦ୍ଧାରିତ ହୋଇ ପାରି ନାହିଁ । ତାଙ୍କ ଉକ୍ତି ଅନୁସାରେ ଗୋପୀଭାଷା ବହୁ ପ୍ରାଚୀନ ଏବଂ ତଦନୁସାରେ ସେ ଗୋପୀଭାଷାକୁ ଶାରଳା ମହାଭାରତ, ବଳରାମଙ୍କ ରାମାୟଣ ଓ ଜଗନ୍ନାଥ ଦାଶଙ୍କ ଭାଗବତ ଠାରୁ ପ୍ରାଚୀନତର ରୂପେ ଗ୍ରହଣ କରିଅଛନ୍ତି । ଏହା କିପରି ଭ୍ରମାତ୍ମକ, ବର୍ତ୍ତମାନ ତାହା ପାଠକମାନେ ସହଜେ ଉପଲବ୍ଧି କରି ପାରିବେ ।

ତାରିଣୀ ଚରଣଙ୍କ ଉତ୍କଳ ସାହିତ୍ୟ ଇତିହାସରେ କବିମାନଙ୍କର ସମୟ ନିରୂପଣ ପ୍ରମାଦ-ବହୁଳ । କାରଣ, ସେ ଜଗନ୍ନାଥ ଦାଶ, ଅଚ୍ୟୁତାନନ୍ଦ ଦାସ, ଦ୍ୱାରିକା ଦାସ, ଜନାର୍ଦ୍ଦନ ଦାସ ଓ ବଳରାମ ଦାସ ଏହିପରି କ୍ରମରେ କବିମାନଙ୍କର ନାମ ତାଙ୍କ ଇତିହାସରେ ଲେଖିଅଛନ୍ତି । ଏହା କିପରି ଭ୍ରମାତ୍ମକ ତାହା ମଧ୍ୟ ପାଠକେ ବର୍ତ୍ତମାନ ବୁଝି ପାରୁଥିବେ ।

ବିନାୟକ ମିଶ୍ରେ ଦନାଇ ଦାସଙ୍କୁ ୧୭ଶ ଶତାବ୍ଦୀର ଲୋକ ବୋଲି ଲେଖି ଅଛନ୍ତି । ସେ କେବଳ ନନ୍ଦ ଦାସଙ୍କ ଅଣାକାରସଂହିତା ଉପରେ ନିର୍ଭର କରି ଏପରି ଏକ ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି । ଏ ବିଷୟ ପୂର୍ବେ ବିଚାର କରା ଯାଇଅଛି । ତେଣୁ ପୁନର୍ବାର ଏଠାରେ ସେ ସମସ୍ତର ଅବତାରଣା ଅନାବଶ୍ୟକ ।

ଦନାଇ ଦାସଙ୍କ ବିରଚିତ ଦୁଇଗୋଟି ଚଉତିଶା ଆମ୍ଭମାନଙ୍କ ହସ୍ତଗତ ହୋଇଅଛି । ତାହାର ନାମ ଯଥାକ୍ରମେ—ବଡ଼ କନଡ଼ା ଓ ଛୋଟ କନଡ଼ା । ଏହାକୁ ପାଇ ଆମ୍ଭେମାନେ ମନେ କରିଥିଲୁ ଯେ, ଦନାଇ ଦାସ କନଡ଼ା ରାଗର ପ୍ରଥମ ସୃଷ୍ଟି-ବିଧାୟକ । କିନ୍ତୁ ପରେ ବିଚାର କରି ଦେଖି ଉପରୋକ୍ତ ପ୍ରମାଣ ମାନଙ୍କ ବଳରେ ଆମ୍ଭେମାନେ ଉକ୍ତ ମତ ପୋଷଣ କରିବାରେ ପଶ୍ଚାତ୍‌ପଦ ।

ଆମ୍ଭେମାନେ ଯେତେ ପ୍ରାଚୀନ ଗ୍ରନ୍ଥମାନ ପାଇଅଛୁ ଓ ଆଲୋଚନା କରିଅଛୁ, ତନ୍ମଧ୍ୟରେ ଧନଞ୍ଜୟ ଭଞ୍ଜଙ୍କ କୃତିରେ ପ୍ରଥମତଃ କନଡ଼ା ରାଗରେ ଛାନ୍ଦ ଲେଖା ହୋଇଥିବାର ଦେଖିବାକୁ ପାଉ ଏବଂ ତତ୍ପରବର୍ତ୍ତୀ କାବ୍ୟକାରମାନେ ଉକ୍ତ କନଡ଼ା ରାଗର ବ୍ୟବହାର କରିଅଛନ୍ତି । ଓଡ଼ିଆ କାବ୍ୟରେ କିଏ କନଡ଼ା ରାଗର ପ୍ରବର୍ତ୍ତକ, ତାହା ଆମ୍ଭେମାନେ ସ୍ଥିର କରି ପାରିନାହୁଁ । ଧନଞ୍ଜୟ ଭଞ୍ଜଙ୍କ ପୂର୍ବବର୍ତ୍ତୀ କବିମାନଙ୍କର କାବ୍ୟାଦି ମାନଙ୍କ ମଧ୍ୟରେ ବିଶେଷତଃ ରାମବିଭା, ରସ-ବାରିଧି, ଉଷାଭିଳାଷ, ପରିମଳା, ରହସ୍ୟ ମଞ୍ଜରୀ, ରୁକ୍ମିଣୀ ବିଭା, ପ୍ରଭୃତିରେ ଆମ୍ଭେମାନେ କନଡ଼ା ରାଗର ଛାନ୍ଦ ଦେଖିବାକୁ ପାଉନା । ବର୍ତ୍ତମାନ ଆମ୍ଭମାନଙ୍କ ଅନୁସନ୍ଧାନର ଫଳରେ ଧନଞ୍ଜୟ କନଡା ରାଗରେ ପ୍ରଥମେ ଓଡ଼ିଆ ଛାନ୍ଦ ଲେଖିବାର ପରିଚୟ ମିଳିଲା । ତାଙ୍କ ପୂର୍ବେ ଅନ୍ୟ କୌଣସି କବି କନଡ଼ା ରାଗରେ ଛାନ୍ଦ ଲେଖି ପାରିଥିବେ, ତାହା ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କ ଦୃଷ୍ଟି ଗୋଚର ହୋଇ ନାହିଁ । ତହୁଁ ଆମ୍ଭେମାନେ ଏ ବିଷୟରେ କିଛି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ପାରୁ ନାହୁଁ । ବଳରାମ ଦାସ ତାଙ୍କ ଦାଣ୍ଡି ରାମାୟଣରେ କର୍ଣ୍ଣାଟକା ରାଗର ନାମ ନିର୍ଦ୍ଦେଶ କରିଅଛନ୍ତି । କିନ୍ତୁ ଆମ୍ଭେମାନେ ବଳରାମ ଦାସଙ୍କଠାରୁ ଧନଞ୍ଜୟଙ୍କ ପର୍ଯ୍ୟନ୍ତ କୌଣସି କବିଙ୍କ କୃତିରେ କନଡ଼ା ରାଗରେ ଛାନ୍ଦ ଲେଖା ହୋଇଥିବାର ଦେଖି ନାହୁଁ । ଦିନାଇ ଦାସଙ୍କ କାଳ ନିରୂପଣ ପ୍ରସଙ୍ଗରେ ଆମ୍ଭେମାନେ ଯେ କାରଣମାନ ଦର୍ଶାଇ ଅଛୁଁ, ତତ୍ ସମସ୍ତରେ ଦିନାଇ ଦାସଙ୍କୁ କନଡା ରାଗର ସ୍ରଷ୍ଟା ଓ ଧନଞ୍ଜୟଙ୍କ ପୂର୍ବବର୍ତ୍ତୀ ବୋଲି କହି ନ ପାରୁ । ଦିନାଇ ତାଙ୍କର ଦୁଇଟି ଯାକ ଚୌତିଶା କନଡା ରାଗରେ ଲେଖି ସେହି ରାଗ ଅନୁସାରେ ଚୌତିଶା ଦୁଇଟିର ନାମ ନିର୍ଦ୍ଦେଶ କରି ଅଛନ୍ତି । ସେ ଯେବେ ଚୌତିଶା ଶେଷରେ କନଡ଼ା ରଚିଲେ ବା ଲେଖିଲେ ଦିନାଇ ଦାସ ବୋଲି ଲେଖି ଥାଆନ୍ତେ, ତାହାହେଲେ ଆମ୍ଭେମାନେ ତାଙ୍କୁ ଧନଞ୍ଜୟଙ୍କ ପୂର୍ବବର୍ତ୍ତୀ ବୋଲି ଗ୍ରହଣ କରିଥାନ୍ତୁ । :—

ଆମ୍ଭମାନଙ୍କ ଯୁକ୍ତି ଅନୁସାରେ ଦିନାଇ ଦାସ ଭାଗବତ, ଅଚ୍ୟୁତଙ୍କ ହରିବଂଶ, ବିପ୍ର ନାରାୟଣଙ୍କ ହରିବଂଶ, ଦୀନକୃଷ୍ଣଙ୍କ ରସକଲ୍ଲୋଳ, ନାବକେଳି, ବୃନ୍ଦାବନ ପ୍ରଭୃତି ଗ୍ରନ୍ଥମାନ, ଭୂପତି ପଣ୍ଡିତଙ୍କ ପ୍ରେମପଞ୍ଚାମୃତ ଏବଂ ରୂପ ଗୋସ୍ୱାମୀଙ୍କ ବିଦଗ୍ଧ ମାଧବ ଓ ଲଳିତ ମାଧବ ଆଦି ଗ୍ରନ୍ଥମାନ ପାଠ କରିବାର ସୁଯୋଗ ପାଇଥିଲେ । କାରଣ ଗୋପୀଭାଷାର

"ଅରତ ହୋଇଣ ସର୍ବ ତରୁଣୀ । କୃଷ୍ଣ କୋଡ଼ିଲୁ ସେହି ବନେ ପୁଣି ।
ବକୁଳ ବେଳରେ ହୋଇଲେ ଦେଖା । କାନ ପଣନ୍ତରେ ବାନ୍ଧି ରଖିବା ।"

ଏହି ବର୍ଣ୍ଣନା ଭୂପତି ପଣ୍ଡିତଙ୍କ ପ୍ରେମ ପଞ୍ଚାମୃତର

"ଏମନ୍ତ ବୋଲି ଠାକୁରାଣୀ । ଅଧରେ ବାନ୍ଧିଲେକ ଫଣି ।
ସଙ୍ଗତେ ଘେନ ଗୋପୀବୃନ୍ଦ । ହସି ଚାହାନ୍ତି ମନ୍ଦ ମନ୍ଦ ।"

ଏହି ପଦ ଅନୁରୂପ । ଏହି ଭୂପତି ପଣ୍ଡିତ ଦିବ୍ୟସିଂହ ଦେବଙ୍କ ସମକାଳୀନ ଥିଲେ । ଉପେନ୍ଦ୍ର ଓ ଦୀନକୃଷ୍ଣ ମଧ୍ୟ ସେହି ଦିବ୍ୟସିଂହଙ୍କ ସମକାଳୀନ । ଭୂତକେଳି ଓ ନାବକେଳି ପ୍ରଭୃତି ଯେଉଁ କେତେକ ବିଷୟର ସଂକ୍ଷେପ ସୂଚନା ଦନାଇ ଗୋପୀଭାଷାରେ ବର୍ଣ୍ଣନା କରି ଅଛନ୍ତି, ତାହା ଖୁବ୍ ସମ୍ଭବତଃ ସେ ଦୀନକୃଷ୍ଣଙ୍କ ତଥା-ନାମିତ ଗ୍ରନ୍ଥ ବିଷୟର ଅବଲମ୍ବନରେ ଲେଖି ଅଛନ୍ତି—ଏଥିରେ କୌଣସି ସନ୍ଦେହ ନାହିଁ ।

## ଗ୍ରନ୍ଥର ସଂକ୍ଷିପ୍ତ ସୂଚନା

କବି ସ୍ୱ ଗୋପୀଭାଷା ଗ୍ରନ୍ଥର ଆଦ୍ୟରେ ଜଗନ୍ନାଥଙ୍କୁ ବନ୍ଦନା କରି ବର୍ଣ୍ଣନୀୟ ବିଷୟର ଅବଧାରଣା କଲେ ଶ୍ରୋତା ବକ୍ତା ଛଳରେ ପାର୍ବତୀ ଓ ମହାଦେବଙ୍କୁ ଉପ-ସ୍ଥାପିତ କରି ଅଛନ୍ତି । କୃଷ୍ଣ ଗୋପପୁର ଛାଡ଼ି ମଥୁରା ଯିବାରୁ ଗୋପୀମାନେ କିପରି ସମୟ କଟାଇ ଥିଲେ, ପାର୍ବତୀ ଏହା ପଚାରନ୍ତେ ମହାଦେବ ମୂଳରୁ ସମସ୍ତ କଥା ସଂକ୍ଷେପରେ ଆରମ୍ଭ କରି କହିଲେ—ଗୋପୀମାନେ ନିତ୍ୟ ଯମୁନା ତଟରେ ସ୍ନାନ କରି ବାଲୁକା ଗଉରୀ ପୂଜି ଓ ମୋତେ ବନ୍ଦନା କରି ନାରାୟଣଙ୍କୁ ବର ମାଗିବାରୁ ମୁଁ ପ୍ରସନ୍ନ ହୋଇ ତଥାସ୍ତୁ ବୋଲି କହିଲି । ତତ୍ପରେ କୃଷ୍ଣ ବସୁଦେବ ଘରେ ଜନ୍ମଲାଭ କରି ଗୋପକୁ ଗଲେ । କଂସ ତାହା ଦେଖି ତାଙ୍କୁ ମାରିବା ନିମନ୍ତେ ପୂତନା ଓ ଅନ୍ୟାନ ଅସୁରମାନଙ୍କୁ ଗୋପକୁ ପଠାଇଲା । କିନ୍ତୁ ସେଠାରେ ସମସ୍ତେ ଗୋଟି ଗୋଟି ହୋଇ କୃଷ୍ଣ ହାତରେ ପ୍ରାଣ ହରାଇଲେ । ତହୁଁ ଅନ୍ୟ ଉପାୟ ନ ଦେଖି କଂସ ଛଳ କରି ଧନୁଯାତ୍ରା ଉଆଇଲା ଏବଂ ଅକ୍ରୂରଙ୍କୁ ଗୋପକୁ ପଠାଇ ରାମକୃଷ୍ଣ ଓ ନନ୍ଦାଦିଙ୍କୁ ମଥୁରାକୁ ନେଇଗଲା । ବାଟରେ ଯାଉଁ ଯାଉଁ କୃଷ୍ଣ ରଜକକୁ ନାଶ କଲେ । କୁବ୍‌ଜାକୁ ସୁନ୍ଦର ରୂପ ଦେଲେ, ଧନୁ ଭାଙ୍ଗି କୁବଲୟାକୁ ଯମ ପୁରକୁ ପଠାଇଲେ, କଂସକୁ ମାରି ଉଗ୍ରସେନକୁ ରାଜା କଲେ ଏବଂ ଗୋପକୁ ନନ୍ଦ ଯଶୋଦାଙ୍କୁ ପଠାଇ ଦେଇ ନିଜେ ସେଠାରେ ରହିଲେ ।

ମଥୁରାରେ କୃଷ୍ଣଚନ୍ଦ୍ର ରହିବାରୁ ଇନ୍ଦ୍ର ଷୋଳ ସହସ୍ର ଦେବକନ୍ୟା ସେଠାକୁ ପଠାଇ ଦେଲେ । ଏଣେ ଗୋପୀମାନେ ଗୋପରେ ତାଙ୍କ କଥା ଭାଳି ଭାଳି ଶୋକରେ ଭାସିବାକୁ ଲାଗିଲେ । ସେମାନଙ୍କ ଭିତରେ ଷୋଳଜଣ ନାୟିକା ପ୍ରଧାନ

ଏବ ପ୍ରତି ନାୟିକାଙ୍କ ମଣ୍ଡଳୀରେ ଏକ ସଦସ୍ୟ ଲେଖାଏଁ ଗୋପୀ । ଏହି ଷୋଳ ସଦସ୍ୟ ଗୋପୀଙ୍କ ଭ୍ରଲେଣି କଥା କବି ପ୍ରଥମ ଷୋଳ ଛାନ୍ଦରେ ବର୍ଣ୍ଣନା କରି ଅଛନ୍ତି । ଲଳିତା, ବିଶାଖା, ମଲ୍ଲିକା, ମାଳତୀ, ରାଧିକା, ଦୂତିକା, ମରୁଆ, କୁଞ୍ଜଲତା, ପୌର୍ଣ୍ଣମାସୀ, ବୃନ୍ଦାବତୀ, ଲବଙ୍ଗଲତା, ରଙ୍ଗଦେବୀ, ସୁଦେବୀ, ତୁଙ୍ଗବିଦ୍ୟା, ଚନ୍ଦ୍ରରେଖା, ଚିତ୍ରରେଖା—ଏହିପରି ପ୍ରଧାନ ଷୋଳ ନାୟିକା ନିଜ ନିଜ ମଣ୍ଡଳୀମାନଙ୍କ ସହିତ କୃଷ୍ଣଙ୍କ ସମ୍ବନ୍ଧରେ ନାନା କଥା ଆଲୋଚନା କରି ସମୟ କ୍ଷେପଣ କରିଅଛନ୍ତି । ସେହି ନାନା କଥା ଭିତରେ କୃଷ୍ଣଙ୍କ ସହିତ ସେମାନଙ୍କ ରମଣ ଲୀଳା ଅତି କରୁଣ ଭାବରେ ବର୍ଣ୍ଣିତ ହୋଇଅଛି ।

କୃଷ୍ଣଚନ୍ଦ୍ର ଗୋପରେ ରାଧାଙ୍କୁ ରାଜା କରି ନନ୍ଦେ ଓ ଗୋପୀମାନେ ତାଙ୍କ ଖଟଣୀରେ ରହିବା କଥା କହି ଯାଇ ଥିବାରୁ ଗୋପୀମାନେ ରାଧାଙ୍କୁ ରାଜା କଲେ ଓ ଗୋପେଶ୍ୱରଙ୍କୁ ଭିତର କରୁଣ କାହାଣୀ ଜଣାଇଲେ । ଗୋପେଶ୍ୱର ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ—କୃଷ୍ଣଚନ୍ଦ୍ର ସମସ୍ତଙ୍କର ପ୍ରଭୁ, କେବଳ ତୁମ୍ଭ ମାନଙ୍କର ନୁହନ୍ତି । ସେ ମଥୁରାରେ କିଛିଦିନ ରହି ଜରାସନ୍ଧଙ୍କୁ ମାରିବେ । ବର୍ତ୍ତମାନ ସେ ଗୁରୁ ଗୃହରେ ରହି ପାଠ ପଢୁଅଛନ୍ତି । ତୁମ୍ଭମାନଙ୍କ ସଙ୍ଗେ ସେ ତ ଅଠବର୍ଷ ଲୀଳା କରିଅଛନ୍ତି । ବର୍ତ୍ତମାନ ପୁଣି ଅଠବର୍ଷ ତାଙ୍କ ସଙ୍ଗେ ବିରହ ହେବ । ପ୍ରତିଦିନ ତୁମ୍ଭେମାନେ ସ୍ନାନ କରି ବାଲୁକା ପୂଜା କରି ଓ ସୂର୍ଯ୍ୟଙ୍କୁ ବନ୍ଦନା କର । ରାଧାଙ୍କୁ କୃଷ୍ଣ ଗୋପପୁରରେ ରାଜା କରି ଯାଇ ଅଛନ୍ତି, ତେଣୁ ତାଙ୍କୁ ରାଜା ବୋଲି ମାନି ଏହି ଅଠୋଅ ବର୍ଷ ତାଙ୍କର ସେବାରେ କଟାଅ । ପରେ କୃଷ୍ଣଚନ୍ଦ୍ର ଦ୍ୱାରକାରେ ତୁମ୍ଭମାନଙ୍କ ସଙ୍ଗେ ବିହାର କରିବେ । ଗୋପେଶ୍ୱରଙ୍କ ଏହି ଉକ୍ତି ଅନୁସାରେ ରାଧା ରାଜପଦରେ ଅଭିଷିକ୍ତ ହେଲେ ଏବଂ ଲଳିତାଦି ଅନ୍ୟାନ୍ୟ ଗୋପିକାଗଣ ତାଙ୍କର ନିଯୋଗରେ ତତ୍ପର ହେଲେ ।

ରାଧା ରାଜା ହୋଇ ଖଟଣୀ ସେବିକା ମାନଙ୍କ ସହ ପ୍ରତ୍ୟହ ଯମୁନାରେ ସ୍ନାନ ବଢ଼ାଇ ବାଲୁକା, ଗୋପେଶ୍ୱର ଓ ସୂର୍ଯ୍ୟଙ୍କ ପୂଜା କରି ବୃନ୍ଦାବନରେ ରାଜବିଧିରେ ସମୟ ଯାପନ କରିବାକୁ ଲାଗିଲେ । ଶେଷରେ ଦାମ ସୁଦାମ ଓ ମଧୁ ମଙ୍ଗଳ ପ୍ରଭୃତିଙ୍କୁ ଦୂତ ରୂପେ ଉଗ୍ରସେନଙ୍କ ନିକଟକୁ ଚିଠାଉ ସହ ପ୍ରେରଣ କଲେ । ସେମାନେ ଯାଇଁ ଯଥାସମୟରେ ଉଗ୍ରସେନଙ୍କ ରାଜସଭାରେ ଉପସ୍ଥିତ ହେଲେ । ସେତେବେଳେ କୃଷ୍ଣ ଅବନ୍ତୀ ପୁରରେ ସାନ୍ଦୀପନି ଋଷିଙ୍କ ପାଖରୁ ପାଠ ପଢ଼ି ଫେରିଆସି ସଭାରେ ବସିଥାନ୍ତି । ଉଗ୍ରସେନଙ୍କ ପଚାରିବା ଅନୁସାରେ

ସେ କହୁଥାନ୍ତି, ଯେ ପାଠ ପଢ଼ା ଶେଷରେ ବରୁଣ ପୁରରୁ ଗୁରୁଙ୍କ ମଲ୍ଲ ଛଅ ପୁଅଙ୍କୁ ଫେରାଇ ଆଣି ତାଙ୍କୁ ଗୁରୁଦକ୍ଷିଣା ରୂପେ ଦେଲେ । ତା ପରେ ଯମପୁରରୁ ନିଜର ମଲ୍ଲ ଛଅ ଭାଇଙ୍କୁ ଆଣି ସ୍ୱର୍ଗକୁ ଗଲେ ଏବଂ ସେଠାରେ ବିଧିପୂର୍ବକ ଉପନୟନ କ୍ରିୟା ବଢ଼ାଇ କାଲି ରାତ୍ରରେ ଏଠାକୁ ଫେରି ଆଇଲେ । ଠିକ୍ ଏହି ସମୟରେ ମଧୁମଙ୍ଗଳାଦି ଦୂତମାନେ ସଭାରେ ପ୍ରବେଶ ହୋଇ ରାଈ ରାଜାଙ୍କ ଆଦେଶ ଓ ପତ୍ର ପ୍ରଦାନ କଲେ । ରାଜା ସମ୍ମାନର ସହିତ ତାହା ଗ୍ରହଣ କରି ପତ୍ରର ମର୍ମାନୁଯାୟୀ କାର୍ଯ୍ୟ କଲେ ଏବଂ କନକ ସ୍ନାନ ନିମିତ୍ତ ଏକଲକ୍ଷ ସୁବର୍ଣ୍ଣ ସହ ଲେଖି ପଠାଇଲେ ଯେ, ବର୍ତ୍ତମାନ ବିଶେଷ କାର୍ଯ୍ୟବଶତଃ କୃଷ୍ଣ କିଛିଦିନ ମଥୁରାରେ ଅବସ୍ଥାନ କରିବେ ।

ମଧୁମଙ୍ଗଳ ପ୍ରଭୃତିଙ୍କ ଠାରୁ ପତ୍ର ପାଠ କରି ଗୋପୀମାନେ ବିରହରେ ବିଳାପ କରିବାକୁ ଲାଗିଲେ । ଏହାର ଫଳରେ ଅଙ୍ଗିରା ଋଷି ଗୋପକୁ ଆସି ରାଧା ଓ ଅନ୍ୟାନ୍ୟ ଗୋପୀମାନଙ୍କୁ ମହାମନ୍ତ୍ର ପ୍ରଦାନ ପୂର୍ବକ ଷୋଳ ନାୟିକାଙ୍କୁ କନକ ସ୍ନାନ କରାଇ ସୁବର୍ଣ୍ଣ ବଣ୍ଟନ କଲେ । ତୀର୍ଥ ଜଳରେ ରାଈ ରାଜାଙ୍କର ଅଭିଷେକ କରିବାପାଇଁ ପୂର୍ଣ୍ଣିମାସୀ ସ୍ୱର୍ଗପୁରକୁ ଗଲେ । ଇନ୍ଦ୍ରଦେବ ବିକସା ଗନ୍ଧର୍ବ ହାତରେ ସକଳ ତୀର୍ଥର ଜଳ ପଠାଇଦେବାରୁ ରାଧାଙ୍କ ଅଭିଷେକ କ୍ରିୟା ଆରମ୍ଭ ହେଲା । ସେତେବେଳେ ନାନାବିଧ ବାଦ୍ୟ ବାଜିବାକୁ ଲାଗିଲା ଏବଂ ବୃନ୍ଦାବତୀଙ୍କ ମୁରଳୀ ନିନାଦରେ ଜଗତ ସ୍ତବ୍ଧ ହୋଇଗଲା । ଅଭିଷେକ ପରେ ଅଙ୍ଗିରା ସ୍ୱସ୍ଥାନକୁ ପ୍ରସ୍ଥାନ କଲେ । ପୁତ୍ରର ଗୁଣ ସ୍ମରଣ କରି ଯଶୋଦା ବିଳାପ କରିବାରୁ ରାଧା ତାହାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ଅନ୍ୟାନ୍ୟ ଗୋପିକାମାନଙ୍କ ସହ ନିଜେ ବିଳାପ କଲେ । ଶେଷରେ ପୂର୍ଣ୍ଣିମାସୀଙ୍କ ଆଶ୍ୱାସନା ବାଣୀ ଶ୍ରବଣ କରି ସମସ୍ତେ ଶାନ୍ତ ହେଲେ ।

ପରଦିନ ପ୍ରଭାତରେ ଗୋପୀମାନେ ନିଦ୍ରାରୁ ଉଠି ସ୍ନାନାଦି କ୍ରିୟା ସମାପନ ପୂର୍ବକ ବାଲୁକା, ସୂର୍ଯ୍ୟ ଓ ଗୋପେଶ୍ୱରଙ୍କୁ ପୂଜା କଲେ ଏବଂ କୁଞ୍ଜବନକୁ ଯାଇ କୃଷ୍ଣଙ୍କର ଗୁଣ ବାଖାଣିବାକୁ ଲାଗିଲେ । ଶେଷରେ ରାଧାଙ୍କୁ ବୃନ୍ଦାବନରେ ରାଜବିଧିରେ ସେବା କରି ସମସ୍ତେ ନିଜ ନିଜ ଘରକୁ ଫେରି ଆସିଲେ । ଏହି ସମୟରେ ନାରଦ ଗୋପପୁରକୁ ଆସି ଗୋପୀମାନଙ୍କୁ ବ୍ରହ୍ମଜ୍ଞାନ ଉପଦେଶ ଦେଲେ ଏବଂ ବିଭିନ୍ନ ପ୍ରକାର ମାଳ ଏକ ଏକ ନାୟିକାଙ୍କୁ ଦେଇ ପ୍ରତ୍ୟେକଙ୍କ ଘରେ ଚନ୍ଦ୍ରଶେଖର, କୃଷ୍ଣ, ମଦନମୋହନ, ମାଧବ, ଇନ୍ଦ୍ର, ଗୋବିନ୍ଦ, ନାରାୟଣ, ଗୋପୀନାଥ, କହ୍ନାଇ, ବାସୁଦେବ, ବାମନ, ନୃସିଂହ, ଦାଶରଥି, ରାମ, ଜଗନ୍ନାଥ, ମତ୍ସ୍ୟ, କୂର୍ମ, ଅଣାକାର ଓ ଦାରୁବ୍ରହ୍ମ ଆଦି ଛବିମାନ ସ୍ୱର୍ଗପୁରର ଚିତ୍ରଶିଳ୍ପୀଙ୍କ ଦ୍ୱାରା

ଅଙ୍କିତ କରାଇ ଜୀବନ୍ୟାସ କଲେ ଓ ସେ ସମସ୍ତର ସେବାପୂଜାରେ ସମୟ ଯାପନ କରିବାକୁ ଗୋପୀମାନଙ୍କୁ ଉପଦେଶ ଦେଇ ସ୍ୱସ୍ଥାନକୁ ଫେରିଗଲେ । ଗୋପୀମାନେ ନାରଦଙ୍କ କଥା ଅନୁସାରେ ଚିତ୍ରମୂର୍ତ୍ତିର ପୂଜା କରି ପରମ ଆନନ୍ଦରେ ସମୟ କଟାଇଲେ । ଏହିଠାରେ ଗ୍ରନ୍ଥଟିର ସମାପ୍ତି ସୂଚିତ ହୋଇଅଛି ।

କୃଷ୍ଣଚନ୍ଦ୍ରଙ୍କ ବିରହରେ ଗୋପୀମାନଙ୍କ ବିଭିନ୍ନ ଦଶା ସେମାନଙ୍କ ବିଳାପରୁ ପ୍ରକାଶ ପାଏ । ସେଥିରେ ଉନ୍ମାଦ, ମୋହ, ଅନୁଳାପ ଅପଳାପ, ପ୍ରଳାପ, ସନ୍ଦେଶ, ପ୍ରେଷଣ, ଚିନ୍ତା ଓ ଉଦ୍‌ବେଗ ସ୍ଥାନେ ସ୍ଥାନେ ଲକ୍ଷିତ ହୁଏ । ସେହି ଗୋପୀମାନଙ୍କ ବିଳାପରେ କାରୁଣ୍ୟର ଯେ ମହାଭାବମୟୀ ଧାରା ଖେଳି ଯାଇଅଛି, ତାହା ଶ୍ରବଣ କରି ଜଡ଼ ପଦାର୍ଥ ମଧ୍ୟ ତରଳି ଯିବ । ତାହା ଯେପରି ସରଳ, ସହଜ, ବାସ୍ତବ ଓ ପ୍ରାଣସ୍ପର୍ଶୀ, ସେହିପରି ମଧ୍ୟ ଅପ୍ରାକୃତ, ଚିନ୍ମୟ ଓ ମହାଭାବବ୍ୟଞ୍ଜକ । ସାଧାରଣ ଲୋକ ତାହା ପାଠକଲେ ଜୁଗୁପ୍ସା ପ୍ରକାଶ କରିବ—ଲଜ୍ଜାରେ ମୁଖ ଅବନତ କରିବ—ଅଶ୍ଳୀଳତାର ଚିତ୍ରରେ ବ୍ୟତିବ୍ୟସ୍ତ ହୋଇ ପଡ଼ିବ । କିନ୍ତୁ ପ୍ରକୃତରେ ସେ ଚିତ୍ର ସେପରି ନୁହେଁ । ସେ ପ୍ରେମ ଦିବ୍ୟ ଚିନ୍ମୟ ଲୀଳାର ବିକାଶ । କୃଷ୍ଣ ଓ ଗୋପୀଙ୍କ ରାସଲୀଳା ପ୍ରସଙ୍ଗ ପ୍ରତି କେତେକ ପାଶ୍ଚାତ୍ୟ ଶିକ୍ଷିତଙ୍କ ପଣ୍ଡିତ ନାସିକା କୁଞ୍ଚନ ପ୍ରକାଶ କରିଥାନ୍ତି ସତ ଏବଂ ଆଉ କେତେକ ସ୍ୱଦେଶପ୍ରାଣ ପାଶ୍ଚାତ୍ୟ ଶିକ୍ଷିତଙ୍କ ରାସଲୀଳାର ବିଭିନ୍ନ ପ୍ରକାର ଅର୍ଥ କରିବାକୁ ବା ତାହା ଏକାବେଳକେ ମିଥ୍ୟା ବୋଲି ପ୍ରମାଣ କରିବାକୁ ପ୍ରୟାସ କରିଥାନ୍ତି ସତ, କିନ୍ତୁ ଗଭୀର ଗବେଷଣା କରି ପ୍ରକୃତ ତତ୍ତ୍ୱ ଅବଗତ ହେବାକୁ ପ୍ରାୟଶଃ ବିମୁଖ ହୋଇଥାନ୍ତି । ଭାଗବତରେ ଏହି ରାସଲୀଳା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ଏବଂ କୃଷ୍ଣ ଓ ଗୋପୀଙ୍କ ପ୍ରଣୟ ବ୍ୟାପାର ଯେ ନିରାଟ ସତ୍ୟ, ତାହା ଦୃଢ଼ ଭାବରେ ସମର୍ଥିତ ହୋଇଅଛି । ତେଣୁ ଏ ସ୍ଥଳରେ ପ୍ରକୃତ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଏବଂ ରାସଲୀଳାର ପ୍ରଣୟରୁ ଦିବ୍ୟ ଚିନ୍ମୟତା ପ୍ରତିପାଦିତ କରିବା ପାଇଁ ଭାଗବତର ରାସଲୀଳାଚିତ୍ର ବିଶ୍ଳେଷଣ କରି ଦେଖିବା ଆବଶ୍ୟକ ।

ବେଦବେଦାନ୍ତ ଉପନିଷଦ ଓ ପୁରାଣ ଇତିହାସଠାରୁ ଭାଗବତର ମୂଲ୍ୟ ବୈଷ୍ଣବ ନିକଟରେ ଅତି ଅଧିକ । ବ୍ୟାସଦେବ ବେଦ ବେଦାନ୍ତ ଓ ପୁରାଣ ଇତିହାସାଦି ସଂକଳନ କରି ଚିତ୍ତରେ ପ୍ରସାଦ ଲାଭ ନ କରିବାରୁ ବୈଷ୍ଣବାଗ୍ରଣୀ ଭକ୍ତିମାର୍ଗର ପ୍ରବର୍ତ୍ତକ ଦେବର୍ଷି ନାରଦ ତାହାଙ୍କୁ କୃଷ୍ଣଲୀଳା ବର୍ଣ୍ଣନ କରିବା ନିମିତ୍ତ ଆଦେଶ ପ୍ରଦାନ କଲେ ଏବଂ ଉପନିଷଦରେ ମଧ୍ୟ ସଂକେତ ପ୍ରଦାନ କରିଥିଲେ । ଭାଗବତ

ଶାସ୍ତ୍ର ପ୍ରଣୟନ କରି ବ୍ୟାସଦେବ ଚିତ୍ତରେ ପରମ ଶାନ୍ତି ଲାଭ କଲେ । 'ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ' ଏବଂ 'ବିଦ୍ୟା ଭାଗବତାବଧି' ଓ 'ଅଖିଳ ଶ୍ରୁତି ସାରଭୂତ'—ଏହି ଉକ୍ତି ମାନଙ୍କରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଭାଗବତ ପ୍ରଧାନ ତତ୍ତ୍ୱସାର ଗ୍ରନ୍ଥ । ଭଗବାନଙ୍କ ଲୀଳା ପ୍ରଚାର କରିବା ନିମିତ୍ତ ପରମ ଭାଗବତ ରାଜା ପରୀକ୍ଷିତ୍ ଜନ୍ମ ଗ୍ରହଣ କରିଥିଲେ । ଏହି କଳିଯୁଗରେ ଲୋକେ ନାମରସାମୃତ ପାନ କରି ପରମ ଗତି ଲାଭ କରିବେ, ଏହି ଉଦ୍ଦେଶ୍ୟ-ରେହିଁ ଭଗବାନ କୃଷ୍ଣଚନ୍ଦ୍ର ଉତ୍ତରା ଗର୍ଭସ୍ଥିତ ଶିଶୁକୁ ଦ୍ରୋଣପୁତ୍ର ଅଶ୍ୱତ୍ଥାମା-ପ୍ରେରିତ ଅମୋଘ ବ୍ରହ୍ମାସ୍ତ୍ରର ବିଷମ ଘାତରୁ ସୁଦର୍ଶନ ଚକ୍ରଦ୍ୱାରା ରକ୍ଷା କରିଥିଲେ । କୃଷ୍ଣଙ୍କ ନାମ ମାହାତ୍ମ୍ୟ ପ୍ରଚାର ନିମିତ୍ତହିଁ ଶମୀକ ଋଷିଙ୍କ ପୁତ୍ର ଶୃଙ୍ଗୀଙ୍କର ପରୀକ୍ଷିତଙ୍କ ପ୍ରତି ଅଭିଶାପ । ଧନ୍ୟ ତୁମ୍ଭେ ପରୀକ୍ଷିତ ! ତୁମ୍ଭ ହେତୁ ସିନା ଆଜି ପ୍ରାଣୀମାନେ ଭବଭୟରୁ ମୁକ୍ତିଲାଭ କରୁ ଅଛନ୍ତି । ଅହୋ ! ଅପୂର୍ବ ସେହି କାଳ, ଯେଉଁ କାଳରେ ଆଜନ୍ମବ୍ରହ୍ମଚାରୀ ବ୍ରହ୍ମାତ୍ମା ଶୁକଦେବ ଧରାଧାମରେ ଆବିର୍ଭୂତ ହେଲେ । ତାଙ୍କର ଆବିର୍ଭାବ ଘଟେ ଯେପରି ଏହି କୃଷ୍ଣଲୀଳାର ପ୍ରଚାର ନିମିତ୍ତ ! କୁଳଶୀଳ-ମର୍ଯ୍ୟାଦାସଂପନ୍ନ, ବିନୀତ, ଶୁଚି ଧର୍ମାତ୍ମା ପରୀକ୍ଷିତ ଏହି ଭାଗବତର ଶ୍ରୋତା, ବକ୍ତା ସେହି ପରମ ଭାଗବତ ବ୍ରହ୍ମାତ୍ମା ଶୁକଦେବ ! ଯେଉଁ ଭାଗବତରେ ପରୀକ୍ଷିତ ଶ୍ରୋତା ଓ ଶୁକଦେବ ବକ୍ତା, ସେହି ଭାଗବତରେ ରାସପଞ୍ଚାଧ୍ୟାୟୀ ସର୍ବ ଶ୍ରେଷ୍ଠ । ଭକ୍ତ ମାନଙ୍କ ମଧ୍ୟରେ ଶ୍ରେଷ୍ଠତମା ଗୋପୀମାନଙ୍କ ସହିତ ଭଗବାନଙ୍କର ଲୀଳା ଏଥିରେ ବର୍ଣ୍ଣିତ ହୋଇଅଛି । ତେଣୁ ରାସଲୀଳାର ରହସ୍ୟ ଯଥାର୍ଥରୂପେ ଅବଗତ ହେବା ପାଇଁ ଏହି ରାସପଞ୍ଚାଧ୍ୟାୟୀର ଆଲୋଚନା ନିତାନ୍ତ ଆବଶ୍ୟକ ।

ପୁରୁଷ ଓ ପ୍ରକୃତି ନେଇ ଏ ସଂସାର । ପୁରୁଷ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଚନ୍ଦ୍ର । ସେ ଯେତେବେଳେ ସ୍ୱଲୀଳା କରିବାରେ ଇଚ୍ଛା କରନ୍ତି, ସେତେବେଳେ ସେ ଜଗତ୍ ସୃଷ୍ଟି କରନ୍ତି । ତାଙ୍କର ଲୀଳାହିଁ ମାୟା-କଳ୍ପିତ । ସେ ମାୟା ବା ପ୍ରକୃତି ତ୍ରିବିଧରୂପେ ଶାସ୍ତ୍ରମାନଙ୍କରେ ଦେଖାଯାଏ । (୧) ତାହା ଯଥାକ୍ରମରେ ଚିତ୍, ଜୀବ (କ୍ଷେତ୍ରଜ୍ଞ, ତଟସ୍ଥ) ଅବିଦ୍ୟା (କର୍ମ-ଜଡ) । ଭଗବାନଙ୍କର ଶକ୍ତି ଦୁଇଗୋଟି—

---

(୧) ବିଷ୍ଣୁଶକ୍ତି ପରା ପ୍ରୋକ୍ତା; କ୍ଷେତ୍ରଜ୍ଞାଖ୍ୟା ତଥାପରା ।
ଅବିଦ୍ୟା କର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ । ବିଷ୍ଣୁପୁରାଣ ୬ । ୭ । ୬୧ ।
ଯା ଯା କ୍ଷେତ୍ରଜ୍ଞଶକ୍ତିଃ ସା ବେଷ୍ଟିତା ନୃପ ସର୍ବଗା ।
ସଂସାରତାପାନଖିଳାନବାପ୍ନୋତ୍ୟନ୍ତ ସନ୍ତତାନ୍ । ବିଷ୍ଣୁପୁରାଣ । ୬ । ୭ । ୬୨ ।

ଅନ୍ତରଙ୍ଗା ଓ ବହିରଙ୍ଗା । ଅନ୍ତରଙ୍ଗା ଶକ୍ତିରୁ ଚିତ୍ଜଗତ ଓ ବହିରଙ୍ଗା ଶକ୍ତିରୁ ଜଡ଼ଜଗତ୍ ନିସୃତ ହୁଏ । ଅନ୍ତରଙ୍ଗା ଶକ୍ତିକୁ ଯୋଗମାୟା ଓ ବହିରଙ୍ଗା ଶକ୍ତିକୁ ମାୟା କୁହାଯାଏ । ଜୀବ ଏହି ସଂସାରରେ ଜଡ଼ ମଧ୍ୟରେ ଥିବାରୁ ତାହାର ଜଡ଼ଭାବ ଓ ଚିତ୍ଭାବ ଅଛି । ତାହାର ଶକ୍ତିକୁ ତଟସ୍ଥ (କ୍ଷେତ୍ରଜ୍ଞ) ଶକ୍ତି କୁହାଯାଏ । କାରଣ ସେ ଉଭୟ ଶକ୍ତିର ଉପଯୋଗୀ । ଅନ୍ତରଙ୍ଗା ଚିତ୍ ଶକ୍ତିକୁ ପରା ଓ ଜଡ଼ଭାବର ଜନ୍ମଦାତା ବୋଲି ବହିରଙ୍ଗା ଶକ୍ତିକୁ ଅପରା କୁହାଯାଏ । ଜଡ଼ ଜଗତରେ ତ୍ରିଗୁଣ ବା ଅବିଦ୍ୟା ଦ୍ୱାରା ଜଡ଼ିତ ହୋଇଥିବା ହେତୁ ଜୀବମାନେ ସଂସାର ତାପ ଭୋଗ କରନ୍ତି ।

ଭଗବତ୍ କୃପାବଶତଃ ଜୀବ ପ୍ରଥମତଃ କର୍ମଯୋଗ ସ୍ୱୀକାର କରି ଅର୍ଥାତ୍ ନିତ୍ୟ ନୈମିତ୍ତିକ କାର୍ଯ୍ୟ ଅବଲମ୍ବନ ଓ କାମ୍ୟକର୍ମ ତ୍ୟାଗରୂପ ପୁଣ୍ୟ କର୍ମ ଦ୍ୱାରା ଜୀବନରୁ ପାପକୁ ଦୂର କରିଦିଏ । ସେତେବେଳେ ସେ ତମ ଓ ରଜ ଗୁଣରୁ ବିମୁକ୍ତ ହୋଇ ସତ୍ତ୍ୱାତ୍ମମୟ ହୁଏ । ସେତେବେଳେ ସେ ଜୀବର ଦୃଷ୍ଟି ଭଗବତ୍ ପର, ତାହାର ସ୍ଖଳନ ହୁଏ ନାହିଁ—ସେ ରଜ ଓ ତମ ଗୁଣ ଦ୍ୱାରା ପୁନର୍ବାର ଆକ୍ରାନ୍ତ ହୁଏ ନାହିଁ । ଯେତେବେଳେ ସେ ସତ୍ତ୍ୱମୟ ହୁଏ, ସେତେବେଳେ ସେ ଜଡରାଜ୍ୟରୁ ଚିତ୍ରାଜ୍ୟକୁ ଗମନ କରେ । ସେ ଜ୍ଞାନ ଓ ଧ୍ୟାନ ଯୋଗଦ୍ୱାରା ସମାଧି କ୍ରମରେ ଚିତ୍ତତ୍ତ୍ୱ ଉପଲବ୍ଧି କରେ ଓ ସଂସାର ବାସନାରୁ ମୁକ୍ତ ହୋଇ ଭଗବାନଙ୍କୁ ଭଜନା କରେ । ଯୋଗମାୟା କଳ୍ପିତ ସେହି ଚିତ୍ରାଜ୍ୟରେ ସେ ବିଳାସୀ । ସେ ସେହି ରାଜ୍ୟରେ ସତ୍ତ୍ୱମୟ ଚିନ୍ମୟ ଆନନ୍ଦମୟ ଭାବ ପ୍ରାପ୍ତ ହୁଏ ଏବଂ ଭଗବାନଙ୍କ ଲୀଳା-ପରିକର ହୋଇ ସଦାନନ୍ଦ ସୁଖ ଅନୁଭବ କରେ । ଭଗବାନଙ୍କ ସ୍ୱରୂପ ବ୍ରହ୍ମ-ସଂହିତାରେ ସଚ୍ଚିଦାନନ୍ଦ ବିଗ୍ରହରୂପେ କଥିତ । ଭଗବାନ ସତ୍ତ୍ୱମୟ, ଚିନ୍ମୟ (ଜ୍ଞାନମୟ) ଓ ଆନନ୍ଦମୟ (୨) । ତାଙ୍କର ଶକ୍ତି ସତ୍ତ୍ୱମୟୀ (ସନ୍ଧିନୀ), ଚିନ୍ମୟୀ (ଜ୍ଞାନମୟୀ—ସଂବିତ୍), ଓ ଆନନ୍ଦମୟୀ (ହ୍ଲାଦିନୀ) (୩) । ଏହି ଚିତ୍ ରାଜ୍ୟରେ ସେହି ଭଗବାନଙ୍କ ଶକ୍ତି ମାନଙ୍କର ବିଳାସ । ଭକ୍ତମାନେ ଅର୍ଥାତ୍ ବିଶୁଦ୍ଧଜୀବମାନେ ସତ୍ତ୍ୱମୟ ଜ୍ଞାନମୟ ଓ ଆନନ୍ଦମୟ ଅବସ୍ଥାମାନ ଲାଭ

(୨) ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ।
ଅନାଦିରାଦି ର୍ଗୋବିନ୍ଦଃ ସର୍ବକାରଣକାରଣମ୍ । ବ୍ରହ୍ମସଂହିତା । ୧ ।

(୩) ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ ତ୍ୱୟ୍ୟେକା ସର୍ବସଂସ୍ଥିତୌ ।
ହ୍ଲାଦତାପକରୀ ମିଶ୍ରା ତ୍ୱୟି ନୋ ଗୁଣବର୍ଜିତେ । ବିଷ୍ଣୁପୁରାଣ ।

କରନ୍ତି । ଏହି ଶକ୍ତିମାନଙ୍କ ମଧ୍ୟରେ ହ୍ଲାଦିନୀ ଶକ୍ତି (ଆନନ୍ଦମୟୀ) ଶ୍ରେଷ୍ଠ । କୃଷ୍ଣଚନ୍ଦ୍ରଙ୍କର ପ୍ରେୟସୀମାନେ ହ୍ଲାଦିନୀ ଶକ୍ତିରୂପେ ଶାସ୍ତ୍ରମାନଙ୍କରେ କଥିତ । ତନ୍ମଧ୍ୟରେ ମହାଭାବମୟୀ ଗୋପୀମାନେ ଶ୍ରେଷ୍ଠ ଓ ଗୋପୀମାନଙ୍କ ମଧ୍ୟରେ ବ୍ରଜ କନ୍ୟାମାନେ ଶ୍ରେଷ୍ଠତର ଏବଂ ତନ୍ମଧ୍ୟରେ ରାଧା ଶ୍ରେଷ୍ଠତମା ।

ଗୋପୀମାନେ ନିତ୍ୟସିଦ୍ଧା ଓ ସାଧନସିଦ୍ଧା ରୂପେ ଦୁଇ ଭାଗରେ ବିଭକ୍ତ । ବ୍ରଜକନ୍ୟାମାନେ ନିତ୍ୟସିଦ୍ଧା, ମୁନିକନ୍ୟା ଓ ଦେବକନ୍ୟାମାନେ ସାଧନସିଦ୍ଧା ଅଟନ୍ତି । (ପ୍ରେମ ପଞ୍ଚାମୃତର ମୁଖବନ୍ଧ ଦ୍ରଷ୍ଟବ୍ୟ) । ବ୍ରଜକନ୍ୟାମାନଙ୍କୁ ନିତ୍ୟସିଦ୍ଧା କହିବାର କାରଣ ଏହି ଯେ, ସେମାନେ ଭଗବାନଙ୍କର ସ୍ୱରୂପ, ନିଜର ଅଙ୍ଗଭୂତ । ବ୍ରହ୍ମସଂହିତାରେ କଥିତ ଅଛି—"ଯାହାଙ୍କର ପ୍ରେୟସୀମାନେ ଆନନ୍ଦ ଓ ଚିନ୍ମୟ ରସରେ ବିଭୋର ଓ ନିଜର ସ୍ୱରୂପ ଏବଂ କଳାରୂପରେ ବିଖ୍ୟାତ (ନିଜର ହ୍ଲାଦିନୀବୃତ୍ତିରୂପା ଗୋପୀକୁଳ), ସେହି ଅମୃତରୂପିଣୀ ଗୋପୀମାନଙ୍କ ସହିତ ଅଖିଳ ବ୍ରହ୍ମାଣ୍ଡର ଅନ୍ତର୍ଭୂତ ଭଗବାନ କେବଳ ମାତ୍ର ଦିବ୍ୟଧାମ ଗୋଲୋକରେ ବାସ କରନ୍ତି (୪) । ପୁନଶ୍ଚ—ଶତସହସ୍ର ଲକ୍ଷ୍ମୀ ଅର୍ଥାତ୍ ଗୋପସୁନ୍ଦରୀମାନେ ଯାହାଙ୍କର ସେବାକାର୍ଯ୍ୟରେ ତତ୍ପରଥାନ୍ତି (୫) । ଗୋପାଳ ତାପିନୀରେ—"ଯେ ଗୋପୀମାନଙ୍କ ମଧ୍ୟରେ ଥାନ୍ତି ଓ ଗୋପୀମାନଙ୍କୁ ପାଳନ କରନ୍ତି, ସେହି କେବଳ ଆମ୍ଭମାନଙ୍କର ସ୍ୱାମୀ (୬) । ପୁନଶ୍ଚ—ଯେ ଗୋପଙ୍କୁ—ଜୀବଙ୍କୁ ଆତ୍ମ ରୂପରେ ସୃଷ୍ଟି ପର୍ଯ୍ୟନ୍ତ ଦେଖନ୍ତି ଥାନ୍ତି, ସେହି ଗୋପାଳ ମୁଁ, ମୁଁ କୃଷ୍ଣାତ୍ମକ ପରଂବ୍ରହ୍ମ, ମୁଁ ସେହି ନିତ୍ୟାନନ୍ଦ ସ୍ୱରୂପ (୭) । ଗୌତମୀୟ ତନ୍ତ୍ରରେ—'ଗୋପୀଙ୍କୁ' ପ୍ରକୃତିରୂପେ, 'ଜନଙ୍କୁ' ସେମାନଙ୍କର ସମୂହ ରୂପେ ଜାଣିବ । ଆନନ୍ଦ ଘନପରଂ ଜ୍ୟୋତିହିଁ ବଲ୍ଲଭ ରୂପରେ କଥିତ । ଅନେକ ଜନ୍ମର ତପସ୍ୟାବଳରେ ସିଦ୍ଧି ଲାଭକରିଥିବା ଗୋପୀମାନଙ୍କର ସେ ପତି (ଏଠାରେ ଏହି ଗୋପୀମାନେ ସାଧନସିଦ୍ଧା) । ତାଙ୍କର ନାମ ନନ୍ଦନନ୍ଦନ ଓ ସେ ତ୍ରୈଲୋକ୍ୟର

---

(୪) ଆନନ୍ଦ ଚିନ୍ମୟରସ ପ୍ରତିଭାବିତାଭିସ୍ତାଭିର୍ଯ ଏବ ନିଜରୂପତୟା କଳାଭିଃ ।
ଗୋଲୋକ ଏବ ନିବସତ୍ୟଖିଳାତ୍ମଭୂତୋ ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ବ୍ରହ୍ମସଂହିତା । ୪୧

(୫) ଲକ୍ଷ୍ମୀସହସ୍ର ଶତସମ୍ଭ୍ରମସେବ୍ୟମାନମ୍—ବ୍ରହ୍ମସଂହିତା ୨୯ ।

(୬) ଯୋଽସୌ ଗୋଷୁ ତିଷ୍ଠତି । ଯୋଽସୌ ଗୋପାନ୍ ପାଳୟତି·········ସ ବୋହି ସ୍ୱାମୀ ଭବତି ।

(୭) ସ ଗୋପାନ୍ ଜୀବାନାତ୍ମତ୍ୱେନ ସୃଷ୍ଟିପର୍ଯ୍ୟନ୍ତମାଭାତି । ସ ଗୋପାଳ ଧ୍ୟେୟାମ୍ ।
ତତ ସତ୍ ସୋଽହମ୍ । ପରଂବ୍ରହ୍ମ କୃଷ୍ଣାତ୍ମକୋ ନିତ୍ୟାନନ୍ଦୈକ ସ୍ୱରୂପଃ ସୋଽହମ୍ ।

ଆନନ୍ଦ ବର୍ଦ୍ଧନକାରୀ (୮)। ରାସପଞ୍ଚାଧ୍ୟାୟୀ ପାଠକଲେ ସ୍ପଷ୍ଟ ଜଣାଯାଏ ଯେ, ଲୀଳା-ବିଧୃତ କଳେବର ଆତ୍ମାରାମ ସଚ୍ଚିଦାନନ୍ଦ ବିଗ୍ରହ ନନ୍ଦନନ୍ଦନ ସ୍ୱୟଂ ଭଗବାନ ଏବଂ ତାଙ୍କର ସେହି ହ୍ଲାଦିନୀଶକ୍ତିର ମହାଭାବ ସ୍ୱରୂପିଣୀ ପ୍ରେୟସୀମାନେହିଁ ମର୍ତ୍ତ୍ୟର ଗୋପୀମାନେ ।

ପୂର୍ବେ କୁହାଯାଇଅଛି ଯେ, ଭଗବାନ ଗୋଲୋକରେ ନିଜର ସ୍ୱରୂପ ଓ କଳାରୂପେ ବିଖ୍ୟାତ ଗୋପୀମାନଙ୍କ ସଙ୍ଗରେ ବାସ କରନ୍ତି । ଏଥିରୁ ଜଣାଯାଏ ଯେ, ଗୋଲୋକରେ ପ୍ରୀତି ସ୍ୱକୀୟା ଏବଂ ଗୋକୁଳରେ ପ୍ରପଞ୍ଚଗତ ପ୍ରକଟଲୀଳାରେ କୃଷ୍ଣଚନ୍ଦ୍ର ପରଦାର ଗ୍ରହଣରେ ବାସ କରନ୍ତି । ତେଣୁ ବୃନ୍ଦାବନରେ ଭଗବାନଙ୍କ ସହିତ ତାଙ୍କର ଅଙ୍ଗୀଭୂତ ନିତ୍ୟସିଦ୍ଧାମାନେ ମଧ୍ୟ ଅବତୀର୍ଣ୍ଣ ହୋଇଥିଲେ । ସଂସାରରେ—ସଂସାରର ମର୍ଯ୍ୟାଦା ମଧ୍ୟରେ ରହିଥିବା ହେତୁ ନନ୍ଦନନ୍ଦନ କୃଷ୍ଣଚନ୍ଦ୍ରଙ୍କ ସହିତ ରମଣରେ ସେମାନଙ୍କର ପରକୀୟାତ୍ୱ ପ୍ରମାଣିତ ହୁଏ । ସେମାନେ ବିଷୟ ବାସନାକୁ ଜଳାଞ୍ଜଳି ଦେଇ ସଂସାରର ମର୍ଯ୍ୟାଦାକୁ ଲଙ୍ଘନ କରି ପରମପୁରୁଷ ଭଗବାନଙ୍କ ସହ ମିଳିତ ହେଲେ । ଏହା ହେଉଛି ସେମାନଙ୍କ ଔପପତ୍ୟ ସ୍ୱୀକାର ।

ନିମ୍ନଲିଖିତ ରାସପଞ୍ଚାଧ୍ୟାୟୀର କେତେକ ଉକ୍ତି ନିଦର୍ଶନ ରୂପେ ଉଦ୍ଧୃତ ହେଲା:—

(୧) ଭଗବାନ କୃଷ୍ଣଚନ୍ଦ୍ର ଯୋଗମାୟାଙ୍କ ଆଶ୍ରୟ ଗ୍ରହଣ କରି ଗୋପୀମାନଙ୍କ ସହିତ ରମଣ କରିବାକୁ ଇଚ୍ଛାକଲେ (କ) ।

(୨) ଗୋପୀମାନେ କୃଷ୍ଣଙ୍କର ମୁରଲୀ ଧ୍ୱନି ଶୁଣି ବାଧାବିଘ୍ନ ସକଳ ଏଡ଼ି ଦେଇ ବୃନ୍ଦାବନରେ କୃଷ୍ଣଙ୍କ ନିକଟରେ ଉପସ୍ଥିତ ହେଲେ । କେତେକ ପିତା ପତି ପ୍ରଭୃତିଙ୍କର ନିଷେଧରେ ଆସି ନପାରି ଗୃହରେ ଅବରୁଦ୍ଧ ହୋଇ କୃଷ୍ଣଙ୍କୁ ଧ୍ୟାନରେ ପାଇଥିଲେ (ଖ) । ସେମାନେ

(୮) ଗୋପୀତି ପ୍ରକୃତିଂ ବଦ୍ୟାତ୍ମନ ମୃତ୍ତି ସମୃଦ୍ଧକଃ । ଅନୟୋରାଶ୍ରୟତ୍ୱେନ କାରଣତ୍ୱେନ ଚେଶ୍ୱରଃ । ସାନ୍ଦ୍ରାନନ୍ଦଂ ପରଂ ଜ୍ୟୋତିର୍ବଲ୍ଲଭତ୍ୱେନ କଥ୍ୟତେ ଅନେକଜନ୍ମସିଦ୍ଧାନାଂ ଗୋପୀନାଂ ପତିରେବ ବା । ନନ୍ଦନନ୍ଦନ ଇତ୍ୟୁକ୍ତ ସ୍ତୈଲୋକ୍ୟାନନ୍ଦବର୍ଦ୍ଧନ । ଗୌତମୀୟ ତନ୍ତ୍ର ।

(କ) ଭଗବାନପି ତା ରାତ୍ରୀଃ ଶରଦୋତ୍‌ଫୁଲ୍ଲମଲ୍ଲିକାଃ । ବୀକ୍ଷ୍ୟରନ୍ତୁ ମନଶ୍ଚକ୍ରେ ଯୋଗମାୟାମୁପାଶ୍ରିତଃ ୧୦ । ୨୯ । ୧ ।

(ଖ) ଅନ୍ତର୍ଗୃହଗତାଃ କାଶ୍ଚିଦ୍ଗୋପ୍ୟୋଽଲବ୍ଧବିନିର୍ଗମାଃ । କୃଷ୍ଣ ତଦ୍ଭାବନାଯୁକ୍ତା ଦଧ୍ୟୁର୍ମୀଳିତଲୋଚନାଃ ୧୦ । ୨୯ । ୯ ।

ଉପପତି ଜ୍ଞାନରେ ପରମାତ୍ମା କୃଷ୍ଣଙ୍କ ସଙ୍ଗମ ଲଭି ଗୁଣମୟ ଶରୀର ପରିତ୍ୟାଗ ପୂର୍ବକ ସଂସାର ବନ୍ଧନରୁ ମୁକ୍ତିଲାଭ କରିଥିଲେ (ଗ) । ଏ ସମସ୍ତ ଶ୍ରବଣ କରି ରାସଲୀଳାର ପ୍ରଥମ ଅବଧାରଣାରୁ ପରୀକ୍ଷିତ ସନ୍ଦେହଚିତ୍ତରେ ଶୁକଦେବଙ୍କୁ ପ୍ରଶ୍ନ କରିଥିଲେ—ଗୋପୀମାନେ କୃଷ୍ଣଙ୍କୁ ପରମ କାନ୍ତ ରୂପେ ମଣିଥିଲେ, କିନ୍ତୁ ତାଙ୍କୁ ବ୍ରହ୍ମରୂପେ ଜାଣି ପାରି ନ ଥିଲେ । ସେମାନଙ୍କର ବୁଦ୍ଧି ତ ଗୁଣରେ ଆସକ୍ତ ଥିଲା, ତେବେ ସେମାନଙ୍କର ସଂସାର ବନ୍ଧନ କିପରି ତୁଟିଲା ? (ଘ) ତଦୁତ୍ତରରେ ଶୁକଦେବ କହିଥିଲେ—ମୁଁ ପୂର୍ବେ କହିଅଛି ଯେ, ଶିଶୁପାଳ ଶତ୍ରୁତା ଆଚରଣ କରି ଯେବେ ମୋକ୍ଷ ଲାଭ କଲା, ତେବେ ଯେଉଁମାନେ ତାଙ୍କର ପ୍ରିୟା—ତାଙ୍କ ବିଷୟ ବା ଆଉ କଣ କହିବି ? (ଙ) ଯାହାଙ୍କଠାରୁ ସ୍ଥାବର ଜଙ୍ଗମାଦି ମୁକ୍ତି ଲାଭ କରନ୍ତି, ସେହି ଭଗବାନ ଜନ୍ମରହିତ ଯୋଗେଶ୍ୱରଙ୍କ ଈଶ୍ୱର ଶ୍ରୀକୃଷ୍ଣଙ୍କଠାରେ ଏପରି ବିସ୍ମୟ ପ୍ରକାଶ କରି ନାହିଁ (ଚ) ।

(୩) ବୃନ୍ଦାବନରେ ଗୋପୀମାନଙ୍କର ଉପସ୍ଥିତି ଦେଖି କୃଷ୍ଣ ସେମାନଙ୍କ ଭକ୍ତିର ଐକାନ୍ତିକତା ପରୀକ୍ଷା କଲେ ଏବଂ ଲୌକିକ ମର୍ଯ୍ୟାଦା ଦୃଷ୍ଟିରେ ସେମାନଙ୍କୁ ଗୃହକୁ ଫେରିଯାଇ ପତି ଓ ଗୁରୁଜନଙ୍କୁ ସେବା କରିବା ରୂପ କୁଳସ୍ତ୍ରୀଙ୍କର ଧର୍ମ ପ୍ରତିପାଳନ କରିବାକୁ କହିଥିଲେ (ଛ) । ଉପପତି ସହ ସଙ୍ଗମ ସ୍ୱର୍ଗଚ୍ୟୁତିର କାରଣ, ଏହା ଅତି ନିନ୍ଦନୀୟ କଥା (ଜ) । ମୋର ନାମ ଶ୍ରବଣ, ମୋର

---

(ଗ) ତମେବ ପରମାତ୍ମାନଂ ଜାରବୁଦ୍ଧ୍ୟାପି ସଙ୍ଗତାଃ । ଜହୁର୍ଗୁଣମୟଂ ଦେହଂ ସଦ୍ୟଃ ପ୍ରକ୍ଷୀଣବନ୍ଧନାଃ ॥ ୧୦ । ୨୯ । ୧୧ ।

(ଘ) କୃଷ୍ଣଂ ବିଦୁଃ ପରଂ କାନ୍ତଂ ନ ତୁ ବ୍ରହ୍ମତୟା ମୁନେ । ଗୁଣପ୍ରବାହୋପରମସ୍ତାସାଂ ଗୁଣଧିୟାଂ କଥମ୍ ।

(ଙ) ଉକ୍ତଂ ପୁରସ୍ତାଦେତତ୍ତେ ଚୈଦ୍ୟଃ ସିଦ୍ଧିଂ ଯଥା ଗତଃ । ଦ୍ୱିଷନ୍ନପି ହୃଷୀକେଶଂ କିମୁତାଧୋକ୍ଷଜପ୍ରିୟାଃ ।

(ଚ) ନଚୈବଂ ବିସ୍ମୟଃ କାର୍ଯ୍ୟୋ ଭବତା ଭଗବତ୍ୟଜେ । ଯୋଗେଶ୍ୱରେଶ୍ୱରେ କୃଷ୍ଣେ ଯତ ଏତଦ୍ ବିମୁଚ୍ୟତେ ।

(ଛ) ପ୍ରତିଯାତ ବ୍ରଜଂ ନେହ ସ୍ଥେୟଂ ସ୍ତ୍ରୀଭିଃ ସୁମଧ୍ୟମାଃ ।........ ଭର୍ତ୍ତୁଃ ଶୁଶ୍ରୂଷଣଂ ସ୍ତ୍ରୀଣାଂ ପରୋଧର୍ମୋ ହ୍ୟମାୟୟା । ତଦ୍ବନ୍ଧୂନାଂ ଚ କଲ୍ୟାଣ୍ୟଃ ପ୍ରଜାନାଂ ଚାନୁପୋଷଣମ୍ ।

(ଜ) ଅସ୍ୱର୍ଗ୍ୟମୟଶସ୍ୟଂ ଚ ଫଲ୍ଗୁ କୃଚ୍ଛ୍ରଂ ଭୟାବହଂ । ଜୁଗୁପ୍ସିତଂ ଚ ସର୍ବତ୍ର ଔପପତ୍ୟଂ କୁଳସ୍ତ୍ରିୟାଃ ।

ଧ୍ୟାନ ଓ ମୋର ଗୁଣ କୀର୍ତ୍ତନ କଲେ ମୋଠାରେ ଯେପରି ପ୍ରୀତି ଜନ୍ମେ, ମୋ ନିକଟରେ ଥିଲେ ସେପରି ଜନ୍ମେ ନାହିଁ । ତେଣୁ ତୁମ୍ଭେମାନେ ଘରକୁ ଫେରି ଯାଅ (ଝ) । ଏହି ତୀବ୍ର ପ୍ରତ୍ୟାଖ୍ୟାନ ଶ୍ରବଣ କରି ବିଶୁଦ୍ଧ ଜୀବ ସ୍ୱରୂପିଣୀ ଗୋପୀମାନେ ହୃଦୟର ଆବେଗରେ ଉତ୍ତର କଲେ:—"ଆମ୍ଭେମାନେ ସମସ୍ତ ବିଷୟ ବିଭବରେ ଜଳାଞ୍ଜଳି ଦେଇ ଆପଣଙ୍କ ପାଦମୂଳ ଭଜୁଅଛୁ । ଯେପରି ଆଦି ପୁରୁଷ ମୁମୁକ୍ଷୁ ଲୋକଙ୍କୁ ଗ୍ରହଣ କରନ୍ତି, ସେହିପରି ଆପଣ ଆମ୍ଭମାନଙ୍କୁ ଗ୍ରହଣ କରନ୍ତୁ (ଞ) । ଆପଣଙ୍କ ସେବାରେ ପତି ପୁତ୍ରାଦି ସେବା ସମାହିତ ହେବ । ଆପଣ ଜୀବମାନଙ୍କ ସମସ୍ତଙ୍କର ପ୍ରିୟତମ, ବନ୍ଧୁ, ଆତ୍ମା ଓ ନିତ୍ୟପ୍ରିୟ (ଟ) । ପତିପୁତ୍ରାଦି କ୍ଳେଶ ଦାୟକ, ସେମାନଙ୍କୁ ପାଇ ଆମ୍ଭମାନଙ୍କର ବା କଣ ହେବ (ଠ) ? ଆପଣ ଆମ୍ଭମାନଙ୍କର ଚିତ୍ତ ହରଣ କରିଅଛନ୍ତି । ଆପଣଙ୍କ ପାଦ ମୂଳରୁ ପାଦେ ହେଲେ ଗୋଡ ଚଳୁ ନାହିଁ (ଡ) । ଆପଣ ଆମ୍ଭମାନଙ୍କୁ ଗ୍ରହଣ ନ କଲେ ଆମ୍ଭେମାନେ ବିରହ ଅଗ୍ନିରେ ପୋଡ଼ି ହୋଇ ଧ୍ୟାନବଳରେ ଆପଣଙ୍କ ପାଦମୂଳ ଲାଭ କରିବୁ ।"(ଢ) ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଗୋପୀମାନେ ପରମଭକ୍ତ, ବିଶୁଦ୍ଧଜୀବ ଓ ସଂସାର ଗୁଣ ପାଶରୁ ମୁକ୍ତ । ସେମାନଙ୍କ ପ୍ରୀତିରେ ଲୌକିକ କାମର ଗନ୍ଧ ନାହିଁ । ସେ ପ୍ରେମ ଦିବ୍ୟ, ଅପ୍ରାକୃତ ।

(୪) ଗୋପୀମାନଙ୍କର ଆତ୍ମ ସମର୍ପଣ ପୂର୍ବକ ଆର୍ତ୍ତିବାଣୀ ଶ୍ରବଣରେ ଶୁକଦେବ କହୁଅଛନ୍ତି 'ହେ ରାଜା, ଯୋଗେଶ୍ୱରଙ୍କର ଈଶ୍ୱର ଆତ୍ମାରାମ ଗୋପୀଙ୍କ କାତରୋକ୍ତି ଶ୍ରବଣରେ ଦୟା ପରବଶ ହୋଇ ଆନନ୍ଦରେ ହାସ୍ୟ ସମ୍ବରଣପୂର୍ବକ ସେମାନଙ୍କୁ କ୍ରୀଡ଼ା କରାଇଲେ (ଣ) ।

---

(ଝ) ଶ୍ରବଣାଦ୍ଦର୍ଶନାଦ୍ଧ୍ୟାନାନ୍ମୟି ଭାବୋଽନୁକୀର୍ତ୍ତନାତ୍ । ନ ତଥା ସନ୍ନିକର୍ଷେଣ ପ୍ରତିଯାତ ତତୋ ଗୃହାନ୍ ।

(ଞ) ମୈବଂ ବିଭୋଽର୍ହତି ଭବାନ୍ ଗଦିତୁଂ ନୃଶଂସଂ ସନ୍ତ୍ୟଜ୍ୟ ସର୍ବ ବିଷୟାଂସ୍ତବ ପାଦମୂଲମ୍ । ଭକ୍ତା ଭଜସ୍ୱ ଦୁରବଗ୍ରହ ମା ତ୍ୟଜାସ୍ମାନ୍ ଦେବୋ ଯଥାଦିପୁରୁଷୋ ଭଜତେ ମୁମୁକ୍ଷୂନ୍ ।

(ଟ) ପ୍ରେଷ୍ଠୋ ଭବାଂସ୍ତନୁଭୃତାଂ କିଲ ବନ୍ଧୁରାତ୍ମା । ୧୦।୨୯।୩୨ ।

(ଠ) ପତିସୁତାଦିଭିରାର୍ତ୍ତିଦୈଃ କିମ୍ ।୧୦।୨୯।୩୩ ।

(ଡ) ଚିତ୍ତଂ ସୁଖେନ ଭବତାପହୃତଂ ।୧୦।୨୯।୩୪ ।

(ଢ) ନୋ ଚେଦ୍ବୟଂ ବିରହଜାଗ୍ନ୍ୟୁପଯୁକ୍ତଦେହା ଧ୍ୟାନେନ ଯାମ ପଦୟୋଃ ପଦବୀଂ ସଖେ ତେ । ୧୦।୨୯।୩୫ ।

(ଣ) ଇତି ବିକ୍ଳବିତଂ ତାସାଂ ଶ୍ରୁତ୍ୱା ଯୋଗେଶ୍ୱରେଶ୍ୱରଃ । ପ୍ରହସ୍ୟ ସଦୟଂ ଗୋପୀରାତ୍ମାରାମୋଽପ୍ୟରୀରମତ୍ ୧୦।୨୯।୪୨

(୫) ଗୋପୀମାନଙ୍କର ରାସକ୍ରୀଡ଼ାରେ ଆତ୍ମାଭିମାନ ଦେଖି ଭଗବାନ ସେମାନଙ୍କ ଚିତ୍ତର ପ୍ରଶମ ଓ ପ୍ରସାଦ ନିମିତ୍ତ ଅନ୍ତର୍ହିତ ହୋଇଗଲେ । (ତ)

(୬) ଶ୍ରୀବୃନ୍ଦାବତୀଙ୍କୁ ନେଇ ଯାଇ କୃଷ୍ଣଚନ୍ଦ୍ର ଏକାନ୍ତରେ ତାଙ୍କ ସଙ୍ଗରେ ରମଣ କଲେ । ଶ୍ରୀକୃଷ୍ଣ ଆତ୍ମାରାମ, ନିଜେ ନିଜେହିଁ କ୍ରୀଡ଼ା କରନ୍ତି । ସ୍ତ୍ରୀମାନଙ୍କର ବିଭ୍ରମ ତାହାଙ୍କୁ ଆକର୍ଷଣ କରିପାରେ ନାହିଁ । ତଥାପି କାମୀ ପୁରୁଷଙ୍କର ଦୈନ୍ୟ ଓ ସ୍ତ୍ରୀମାନଙ୍କର ଦୁଷ୍ଟ ସ୍ୱଭାବକୁ ଦେଖାଇବା ନିମିତ୍ତ ପ୍ରେୟସୀ ବୃନ୍ଦାବତୀଙ୍କ ସହିତ ସେ କ୍ରୀଡ଼ା କରିଥିଲେ । (ଥ)

(୭) ଯୋଗେଶ୍ୱରଙ୍କ ହୃଦୟରେ ଯାହାଙ୍କର ଆସନ ବିଦ୍ୟମାନ, ଆଜି ସେହି ଭଗବାନ ଶ୍ରୀକୃଷ୍ଣ ଗୋପୀ ସଭାରେ ଗୋପୀମାନଙ୍କ ଦ୍ୱାରା କଳ୍ପିତ ଆସନରେ ଉପବେଶନ କଲେ । (ଦ)

(୮) ରାସୋତ୍ସବ ଆରମ୍ଭ ହେବାରୁ ଗୋପୀ ମଣ୍ଡଳରେ ମଣ୍ଡିତ ହୋଇ ଯୋଗେଶ୍ୱରଙ୍କ ଈଶ୍ୱର କୃଷ୍ଣ ଦୁଇ ଦୁଇ ଜଣ ଗୋପୀଙ୍କ ମଧ୍ୟରେ ପ୍ରବେଶ କରି ଗୋପୀମାନଙ୍କର କଣ୍ଠ ଧାରଣ କଲେ । (ଧ)

(୯) ଭଗବାନ ଆତ୍ମାରାମ ହୋଇ ମଧ୍ୟ ଲୀଳାକ୍ରମେ ଗୋପୀଙ୍କ ସଂଖ୍ୟା ଅନୁସାରେ ସ୍ୱରୂପ ପ୍ରକାଶ କରି ସେମାନଙ୍କ ସହିତ କ୍ରୀଡ଼ା କରିବାକୁ ଆରମ୍ଭ କଲେ । (ନ)

(୧୦) ଅନୁରାଗିଣୀ ଗୋପୀ ମଣ୍ଡଳଦ୍ୱାରା ପରିବୃତ ହୋଇ ସତ୍ୟ-ସଂକଳ୍ପ ଶ୍ରୀ କୃଷ୍ଣ ନିଜଠାରେ ଶୁକ୍ର ରୁଦ୍ଧ କରି ସମ୍ଭୋଗ କରିବାକୁ ଲାଗିଲେ । (ପ)

---

(ତ) ତାସାଂ ତତ୍‌ସୌଭଗମଦଂ ବୀକ୍ଷ୍ୟମାନଂଚ କେଶବଃ । ପ୍ରଶମାୟ ପ୍ରସାଦାୟ ତତ୍ରୈବାନ୍ତରଧୀୟତ ॥ ୧୦।୨୯।୪୮

(ଥ) ରେମେ ତୟା ଚାତ୍ମରତ ଆତ୍ମାରାମୋଽପ୍ୟଖଣ୍ଡିତଃ । କାମିନାଂ ଦର୍ଶୟନ୍ ଦୈନ୍ୟଂ ସ୍ତ୍ରୀଣାଂ ଚୈବ ଦୁରାତ୍ମତାମ୍ । ୧୦।୩୦।୩୪

(ଦ) ତତ୍ରୋପବିଷ୍ଟୋ ଭଗବାନ୍ ସ ଈଶ୍ୱରୋ ଯୋଗେଶ୍ୱରାନ୍ତର୍ହୃଦି କଳ୍ପିତାସନଃ । ୧୦।୩୨।୧୪

(ଧ) ଯୋଗେଶ୍ୱରେଣ କୃଷ୍ଣେନ ତାସାଂ ମଧ୍ୟେ ଦ୍ୱୟୋର୍ଦ୍ୱୟୋଃ ॥ ପ୍ରବିଷ୍ଟେନ ଗୃହୀତାନାଂ କଣ୍ଠେ ସ୍ୱନିକଟଂ ସ୍ତ୍ରିୟଃ । ୧୦।୩୩।୩

(ନ) କୃତ୍ୱା ତାବନ୍ତମାତ୍ମାନଂ ଯାବତୀର୍ଗୋପଯୋଷିତଃ । ରେମେ ସ ଭଗବାଂସ୍ତାଭିରାତ୍ମାରାମୋଽପି ଲୀଳୟା । ୧୦।୩୩।୨୦

(ପ) ସିଷେବ ଆତ୍ମନ୍ୟବରୁଦ୍ଧ ସୌରତଃ ଇତ୍ୟାଦ । ୧୦।୩୩।୨୬

କିନ୍ତୁ ଏହି ରାସୋତ୍ସବ ବର୍ଣ୍ଣନାର ଶେଷରେ ପରମଭାଗବତ ପରୀକ୍ଷିତ ମଧ୍ୟ ସନ୍ଦେହାନ ହୋଇ ଭୀତ ସଂକୁଚିତ ଭାବରେ ପ୍ରଶ୍ନ କଲେ—"ଧର୍ମମର୍ଯ୍ୟାଦାମାନଙ୍କର ଉପଦେଷ୍ଟା ସୃଷ୍ଟିକର୍ତ୍ତା ଓ ରକ୍ଷାକାରୀ ହୋଇ କି ନିମିତ୍ତ କୃଷ୍ଣଚନ୍ଦ୍ର ପରସ୍ତ୍ରୀ ଗ୍ରହଣ ରୂପ ଅଧର୍ମ ଆଚରଣ କଲେ? ପୂର୍ଣ୍ଣକାମ ଯଦୁପତି କି ଅଭିପ୍ରାୟରେ ଏହି ଅଧର୍ମ ଆଚରଣ କଲେ, ଏ ବିଷୟରେ ମୋର ସନ୍ଦେହ ଦୂର କରନ୍ତୁ।" (ଫ)

ରାସପଞ୍ଚାଧ୍ୟାୟୀ ଶ୍ରବଣ କଲେ ସାଧାରଣ ଲୋକର ମନରେ ଏହିପରି ପ୍ରଶ୍ନ ଜାଗରୂକ ହୁଏ। ପରୀକ୍ଷିତ ଯେ ରାସପଞ୍ଚାଧ୍ୟାୟୀର ତତ୍ତ୍ୱ ବୁଝି ନ ଥିଲେ, ଏହା କହି ହେବ ନାହିଁ। ବୋଧହୁଏ ସେ ରାଜ୍ୟର ରାଜା, ସଂସାରର ଲୋକମାନେ ଏପରି ଭାବରେ ଭାବିପାରନ୍ତି—ଏହି ଆଶଙ୍କା କରି ସେ ଲୀଳାର ତତ୍ତ୍ୱ ଜନସାଧାରଣଙ୍କର ସୁନ୍ଦର ଅବବୋଧ ନିମିତ୍ତ ଟିକିଏ ସରଳ ଭାବରେ ଓ ଚୂଡ଼ାନ୍ତ ନିଷ୍ପତ୍ତି ସହିତ ଶୁଣିବାକୁ ପ୍ରାର୍ଥନା କରିଥିଲେ। ଶୁକଦେବ ଏହାର ଉତ୍ତର ଦେବାକୁ ଯାଇଁ କହିଥିଲେ—"ତେଜସ୍ୱୀଙ୍କଠାରେ ଧର୍ମ ବ୍ୟତିକ୍ରମାଦି ଦ୍ୱାରା କୌଣସି ଦୋଷ ସମ୍ଭବେ ନାହିଁ। ଯେପରି ଅଗ୍ନି ସର୍ବଭକ୍ଷଣ କରି ନିଜର ପବିତ୍ରତା ନଷ୍ଟ କରେ ନାହିଁ, ସେହିପରି ତେଜସ୍ୱୀ ମହାପୁରୁଷ ଅହଙ୍କାରଶୂନ୍ୟ ହୋଇ ଥିବାରୁ ମଙ୍ଗଳ ଓ ଅମଙ୍ଗଳରେ ଅର୍ଥ ଓ ଅନର୍ଥରେ ସେମାନଙ୍କର କୌଣସି ଦୋଷାଦୋଷ ଘଟେ ନାହିଁ (ବ)। ଯେ ନିଖିଳ ଜୀବବର୍ଗର ଈଶ୍ୱର ଓ ଯାବତୀୟ ଐଶ୍ୱର୍ଯ୍ୟର ଅଧିପତି, ତାଙ୍କର କୁଶଳ ଓ ଅକୁଶଳର ସମ୍ଭାବନା କେଉଁଠି? (ଭ) ଯାହାଙ୍କର ପାଦସେବକ ଭକ୍ତ ଓ ଜ୍ଞାନୀମାନେ କର୍ମବନ୍ଧ ଦୂରକରି ସ୍ୱଚ୍ଛନ୍ଦରେ ବିଚରଣ କରିଥାନ୍ତି, କେବେହେଲେ ସଂସାରରେ ବଦ୍ଧ ହୁଅନ୍ତି ନାହିଁ। ଯେ ସ୍ୱଇଚ୍ଛାରେ ଦେହ ଧାରଣ କରିପାରନ୍ତି, ତାଙ୍କର କିପରି ବନ୍ଧ ହୋଇପାରେ? (ମ) ଯେ ଗୋପ ଗୋପୀଙ୍କ ସ୍ୱାମୀ ଓ ଯାବତୀୟ ଜୀବଙ୍କ ଅନ୍ତରରେ ବିରାଜମାନ ଓ

---

(ଫ) ସ କଥଂ ଧର୍ମସେତୂନାଂ ବକ୍ତା କର୍ତ୍ତାଭିରକ୍ଷିତା। ପ୍ରତୀପମାଚରଦ୍ ବ୍ରହ୍ମନ୍ ପରଦାରାଭିମର୍ଷଣମ୍॥ ୧୦।୩୩।୨୮

(ବ) ଧର୍ମବ୍ୟତିକ୍ରମୋ ଦୃଷ୍ଟ ଈଶ୍ୱରାଣାଂଚ ସାହସମ୍। ତେଜୀୟସାଂ ନ ଦୋଷାୟ ବହ୍ନେଃ ସର୍ବଭୁଜୋ ଯଥା।୧୦।୩୩।୩୦

(ଭ) କିମୁତାଖିଳ ସତ୍ତ୍ୱାନାଂ ତିର୍ଯ୍ୟଙ୍ମର୍ତ୍ତ୍ୟଦିବୌକସାମ୍। ଈଶିତୁଶ୍ଚେଶିତବ୍ୟାନାଂ କୁଶଲାକୁଶଲାନ୍ୱୟଃ। ୧୦।୩୩।୩୪

(ମ) ଯତ୍ପାଦପଙ୍କଜପରାଗନିଷେବତୃପ୍ତା ଯୋଗପ୍ରଭାବବିଧୂତାଖିଳ କର୍ମବନ୍ଧାଃ। ସ୍ୱୈରଂ ଚରନ୍ତି ମୁନୟୋଽପି ନ ନହ୍ୟମାନାସ୍ତସ୍ୟେଚ୍ଛୟାତ୍ତବପୁଷଃ କୁତ ଏବ ବନ୍ଧଃ। ୧୦।୩୩।୩୫

ଯେ ବୁଦ୍ଧି ଆଦିର ସାକ୍ଷୀ, ସେହି ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଲୀଳାନିମିତ୍ତ ଦେହ ଧାରଣ କରିଥିଲେ । (ଘ) ଜୀବର ମଙ୍ଗଳ ସାଧନ କରିବା ନିମିତ୍ତ ସେ ମନୁଷ୍ୟ ରୂପ ଧାରଣ କରି ଏହିରୂପ ବିବିଧ କ୍ରୀଡା କରିଥାଆନ୍ତି । ବ୍ରଜବାସୀମାନେ ଶ୍ରୀକୃଷ୍ଣଙ୍କ ପ୍ରତି ଅସୂୟା ପ୍ରକାଶ କରିନାହାନ୍ତି । କାରଣ ସେମାନେ ତାଙ୍କର ମାୟାରେ ମୁଗ୍ଧହୋଇ ସେମାନଙ୍କର ପତ୍ନୀଙ୍କୁ ସ୍ୱ ସ୍ୱ ପାର୍ଶ୍ୱରେ ଦେଖିବାକୁ ପାଉଥିଲେ (ଙ) ।

ଶୁକଦେବ ଏହିପରି ଶେଷ ସମାଧାନ କରି ପରୀକ୍ଷିତଙ୍କ ମନରେ ସନ୍ତୋଷ ଦେଇ ପାରିଥିଲେ ।

ଏ ବିଷୟରେ ଆଉ ବେଶି ଆଲୋଚନା କରିବା ଅନାବଶ୍ୟକ । ଯେଉଁ ବିଷୟମାନ ରାସ ପଞ୍ଚାଧ୍ୟାୟୀରୁ କଥିତ ହେଲା, ସେଥିରୁ ସ୍ପଷ୍ଟ ଜଣାଯାଏ ଯେ କୃଷ୍ଣ ସାମାନ୍ୟ ମାନବ ନୁହନ୍ତି ଓ ଗୋପୀମାନେ ମଧ୍ୟ ସାଧାରଣ ସ୍ତ୍ରୀ ନୁହନ୍ତି । ଉପରୋକ୍ତ ବିଷୟମାନ ଲେଖିବାର ଉଦ୍ଦେଶ୍ୟ ମଧ୍ୟ ଏହାହିଁ ଦର୍ଶାଇବା । ସାଧାରଣତଃ ସଂସାରରେ ପରିଦୃଷ୍ଟ ହୁଏ ଯେ ଲୋକେ ଧର୍ମଭାବରେ ଆତ୍ମହରା ହୋଇ ସଂସାର ବିଷୟ ପ୍ରତି—ଜାତି, କୁଳ ଓ ମର୍ଯ୍ୟାଦା ପ୍ରତି ଜଳାଞ୍ଜଳି ପ୍ରଦାନ କରନ୍ତି । ଧର୍ମଭାବରେ ବିଭୋର ହୋଇ ଭଗବାନଙ୍କ ନାମ କୀର୍ତ୍ତନରେ ଭକ୍ତଙ୍କର ପ୍ରେମ ଉଚ୍ଛୁଳି ଉଠେ ଓ ହୃଦୟ ବିଗଳିତ ହୁଏ ଏବଂ ସେ କେତେବେଳେ ଅବଶ ଓ ଜଡ଼ ହୋଇ ଯାଆନ୍ତି, କେତେବେଳେ ଉନ୍ମତ୍ତ ପରି ଉଚ୍ଚରେ ହାସ୍ୟ କରନ୍ତି, କେତେବେଳେ ରୋଦନ କରନ୍ତି—ଚିତ୍କାର କରନ୍ତି, କେତେବେଳେ ବା ନୃତ୍ୟ କରନ୍ତି । ଏହାହିଁ ଭକ୍ତର ଚରମଭାବ । ଏହି ଭାବରେ ଲୋକ ଚିନ୍ମୟ ସୁଖ ଅନୁଭବ କରେ । ଏହି ଭାବ ଭକ୍ତର ସର୍ବଦା ରହିଲେ ସେ ଗୋପୀଭାବ ଆସ୍ୱାଦନ କରେ ଏବଂ ଭଗବତ୍ କୃପାବଶରେ ସେ ସାଧନସିଦ୍ଧା ଗୋପୀଙ୍କ ତୁଲ୍ୟ ହୋଇ ଭଗବାନଙ୍କ ଚିନ୍ମୟ ରାଜ୍ୟରେ ଚିରନ୍ତନ ଆନନ୍ଦ-ସୁଖ ଅନୁଭବ କରେ । ଏହା ହେଉଅଛି ସାଧନାର ଚରମ ପରିଣତି । ଏହାଙ୍କ ଉପରେହିଁ ନିତ୍ୟସିଦ୍ଧା ବ୍ରଜ-କନ୍ୟା ଗୋପୀମାନେ । ଏମାନଙ୍କ ଭାବ ସାଧକଙ୍କର ମଧ୍ୟ ଦୁର୍ଲଭ, କାରଣ ଏମାନେ ଭଗବାନଙ୍କ ଆତ୍ମକଳ୍ପ ଅଟନ୍ତି । ଏମାନେ ସର୍ବଦା ଜୀବର ଉପାସ୍ୟା ଓ ତାହାଙ୍କ ଗୁରୁ

(ଘ) ଗୋପୀନାଂ ତତ୍ପତୀନାଞ୍ଚ ସର୍ବେଷାମେବ ଦେହିନାମ୍ । ଯୋଽନ୍ତଶ୍ଚରତି ସୋଽଧ୍ୟକ୍ଷଃ କ୍ରୀଡ଼ନେନେହ ଦେହଭାକ୍ । ୧୦।୩୩।୩୬

(ଙ) ନାସୂୟନ୍ ଖଳୁ କୃଷ୍ଣାୟ ମୋହିତାସ୍ତସ୍ୟ ମାୟୟା । ମନ୍ୟମାନାଃ ସ୍ୱପାର୍ଶ୍ୱସ୍ଥାନ୍ ସ୍ୱାନ୍ ସ୍ୱାନ୍ ଦାରାନ୍ ବ୍ରଜୌକସଃ । ୧୦।୩୩।୩୮

କଲ୍ଲା—ଏପରି ଦୃଷ୍ଟିରେ ଭାଗବତର ଗୋପୀଲୀଳାକୁ ଦେଖିବାକୁ ହେବ । ଏହି ଭାବରେ ଅନୁପ୍ରାଣିତ ହେଲେ ଲୋକ ପରମ ସୁଖ ଅନୁଭବ କରିବ । ଏହାହିଁ ବୈଷ୍ଣବ ଧର୍ମର ଚରମ ଉଦ୍ଦେଶ୍ୟ ।

ହନାଇ ଦାସ ଜଣେ ପ୍ରୀତିପ୍ରବିଭକ୍ତିଆ ଥିଲେ । ସେ କୃଷ୍ଣ ପ୍ରେମରେ ବିଭୋର, ଗୋପୀ ଭାବରେ ତନ୍ମୟ ଥିଲେ । ସେ ପ୍ରେମରସରେ ଯେ ମଜ୍ଜିଯାଏ, ସେ ଆତ୍ମହରା ହୁଏ—ସେ କୃଷ୍ଣଙ୍କ ଜନ୍ମ, କର୍ମ ଓ ନାମ ଶ୍ରବଣ କରି ନିର୍ଲଜ୍ଜ ଭାବରେ ଗାନ କରି ନିଶ୍ଚିନ୍ତ ହୃଦୟରେ ବିଚରଣ କରେ । ତାର କି ଲୌକିକ ମର୍ଯ୍ୟାଦା ପ୍ରତି ଭ୍ରୁକ୍ଷେପ ଅଛି ? ଲୋକଙ୍କର ଭଲ ମନ୍ଦ କଥା ତାକୁ ସମାନ—ତାର ଲଜ୍ଜା ନାହିଁ, ଅପମାନ ନାହିଁ, ଅହଙ୍କାର ମଧ୍ୟ ନାହିଁ । ଭାଗବତର ଉକ୍ତି "ସ୍ୱଜନଂ ଆର୍ଯ୍ୟପଥଂ ଚ ହିତ୍ୱା"ର ଅର୍ଥ ଏହି ଯେ, ଗୋପୀମାନେ ନିଜର ପତି ପୁତ୍ର ଓ ଲୌକିକ ବିଧି ଅନୁମୋଦିତ ଧର୍ମ ପରିତ୍ୟାଗ କରି କୃଷ୍ଣଚନ୍ଦ୍ରଙ୍କୁ ଭଜିଥିଲେ । ଗୋପୀମାନଙ୍କ ମଧ୍ୟରେ ନିଜ ନିଜର କୃଷ୍ଣଚନ୍ଦ୍ରଙ୍କ ସହ ରମଣର ବର୍ଣ୍ଣନାରେ ବା କାହିଁ ଲଜ୍ଜା ସଂକୋଚ ରହିବ ? କୃଷ୍ଣଚନ୍ଦ୍ରଙ୍କ ସହ ରମଣ କାଳରେ ସେମାନଙ୍କ ମଧ୍ୟରେ ଅହଙ୍କାର ଜନ୍ମିଥିଲା, ନିଜ ନିଜକୁ ପରସ୍ପରଠାରୁ ଭାଗ୍ୟବତୀ ମଣିଥିଲେ । ସେହି ଭାବ ଦୂରକରିବା ନିମିତ୍ତ କୃଷ୍ଣଚନ୍ଦ୍ର ଅନ୍ତର୍ହିତ ହୋଇ ଗୋପୀମାନଙ୍କୁ, ପରେ ବୃନ୍ଦାବତୀଙ୍କୁ ବିଶୁଦ୍ଧ ଭାବ ପ୍ରଦାନ କରିଥିଲେ । ପୂର୍ବୋକ୍ତ "ପ୍ରଶମାୟ ପ୍ରସାଦାୟ" ଓ "ହୁରାମ୍ବତା"ର ମଧ୍ୟ ଏହି ଅର୍ଥ । ତତ୍ପରେ ଅହଙ୍କାର-ବର୍ଜିତ ଗୋପୀମାନଙ୍କର-ସହ ରାସ ଲୀଳା । ମଥୁରା ପ୍ରୟାଣ ପରେ ସେହି ଶୁଦ୍ଧ ସ୍ୱରୂପା ଗୋପୀମାନଙ୍କର କୃଷ୍ଣଙ୍କ ଅଭାବ ହେତୁ ବିଳାପ ମଧ୍ୟରେ କୃଷ୍ଣଚନ୍ଦ୍ରଙ୍କ ଗୁଣ ଓ କ୍ରିୟା କଳାପ ବର୍ଣ୍ଣନାରେ କାହିଁ ବା ଲଜ୍ଜା ସମ୍ଭବ ? ବିଷୟ ସଂସୃଷ୍ଟ ଥାଇ ଲୋକେ ଲୌକିକ ମର୍ଯ୍ୟାଦାନୁରୋଧରେ ଲଜ୍ଜା ଅନୁଭବ କରନ୍ତି । ଯେତେବେଳେ ଜୀବ ସଂସାରର ବିଷୟ ପ୍ରପଞ୍ଚ ଦ୍ୱାରା ଅସ୍ପୃଷ୍ଟ ଓ ନିର୍ଗୁଣ ଭାବ ପ୍ରାପ୍ତ ହୋଇ ଭଗବତ୍ ଲୀଳା ଓ ମାଧୁରୀ ଆସ୍ୱାଦ କରେ, ସେତେବେଳେ ବା କାହିଁ ଲଜ୍ଜା ସମ୍ଭବ ? ସେ ତ ନିର୍ଲ୍ଲଜ, ତାର ଲଜ୍ଜା କାହିଁ? ସେ ତ ମଧୁର ଉନ୍ମାଦନାରେ ଉନ୍ମତ୍ତ, ମହାଭାବରେ ବିଭୋର, ଧର୍ମାଧର୍ମର ବହୁ ଊର୍ଦ୍ଧ୍ୱରେ ଆସୀନ, ମାୟାରୁ ନିର୍ମୁକ୍ତ; ତାକୁ କାହିଁ ମାୟା ଲାଗିବ ଯେ ସେ ଆତ୍ମଭାବ ପ୍ରକାଶରେ ସଂକୋଚ ଅନୁଭବ କରିବ ? ସେ ଯେଉଁ ମଧୁର ରସ ଆସ୍ୱାଦନ କରିଛି, ତାହା ସମସ୍ତ ଜଗତରେ, ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ ସମସ୍ତ ସୃଷ୍ଟ ପଦାର୍ଥରେ ତାହାକୁ ଆସ୍ୱାଦିତ କରାଇବାରେ ଉନ୍ମନା । ଧନ୍ୟ ସେହି ଜୀବ!! ତାହାହିଁ ଜୀବର ଚରମାବସ୍ଥା ।

ଓଡ଼ିଆ ସାହିତ୍ୟ ରାଜ୍ୟରେ ଗୋପୀଭାଷାର ଆସନ ଅତୁଳନୀୟ । ଉତ୍କଳର ସାଧାରଣ ଜୀବନ ଉପରେ କାବ୍ୟଟିର ପ୍ରଭାବ ଏତେ ଅଧିକ ଯେ, ତାହାର ତୁଳନା ଏକାବେଳକେ ଅସମ୍ଭବ । କାବ୍ୟ ହିସାବରେ ଗୋପୀଭାଷାର ଉପାଦେୟତା ଅତି ମହତ୍ । ବିପ୍ରଲମ୍ଭ ଶୃଙ୍ଗାରର ବର୍ଣ୍ଣନାରେ କରୁଣରସର ଲାବଣ୍ୟ ଛଳଛଳ ମୂର୍ଚ୍ଛନା କାବ୍ୟଟିର ସର୍ବତ୍ର ଲକ୍ଷିତ ହୁଏ । ତାହା ପାଠ କଲେ ପାଠକର ହୃଦୟରେ ଠିକ୍ ଗୋପୀ ହୃଦୟ ପରି କି ଏକ ବିରହ-ଆକୁଳତାର ସ୍ପନ୍ଦନ ଖେଳିଯାଏ । ଯେଉଁ ଭାଷାରେ କବି ଗୋପକାମିନୀମାନଙ୍କର ବିରହ-ବେଦନାର ଚିତ୍ର ଅଙ୍କନ କରିଅଛନ୍ତି, ତାହା ଯେପରି ସରଳ, ସେହିପରି ସହଜ; ଯେପରି ମଧୁର, ସେହିପରି ମଧ ହୃଦୟସ୍ପର୍ଶୀ । ସେଥିରେ କୌଣସି କ୍ଲିଷ୍ଟ କଳ୍ପନା ବା ଶବ୍ଦାଳଙ୍କାର-ଜନିତ ଅପ୍ରାକୃତିକତା ଦେଖିବାକୁ ମିଳେ ନାହିଁ । ତେଣୁ ଆପାମରପଣ୍ଡିତ ପର୍ଯ୍ୟନ୍ତ ସକଳ ଶ୍ରେଣୀର ପାଠକ କାବ୍ୟଟିର ସମାଦର କରିଥାନ୍ତି । ବିରହିଣୀ ଗୋପକାମିନୀମାନଙ୍କ କରୁଣ ବିଳାପକୁ ପରିସ୍ଫୁଟ କରିବା ପାଇଁ କବି ଯେଉଁ ଉପମା ଓ ଦୃଷ୍ଟାନ୍ତମାନ ସ୍ଥଳ ବିଶେଷରେ ଖଞ୍ଜି ଦେଇଛନ୍ତି, ତାହା ପାଠ କଲେ ଉତ୍କଳର ସହଜ ପ୍ରାଣ ଉଲ୍ଲସି ଉଠେ । ଭାଷାର ସରଳ ତରଳ ମନ୍ଦାକିନୀ ଧାରରେ ମଧୁର ଭାବାବଳୀର ଉତ୍ତରଳ ଲାବଣ୍ୟ ଉତ୍କଳ-ଭାରତୀ କୁଞ୍ଜର ଶୋଭାସଂପଦ ବର୍ଦ୍ଧନପୂର୍ବକ ଏକ ସୁଖାନନ୍ଦମୟ ଅନନ୍ତ ଲକ୍ଷ୍ୟରେ ଯେପରି କି ପରିଚାଳିତ, ଏହାହିଁ ବୋଧହୁଏ ।

ପ୍ରଥମ ଛାନ୍ଦରେ କବି ଗୋପୀମାନଙ୍କ ମୁଖରେ ଅକ୍ରୂର ଓ କଂସ ପ୍ରତି ଅଭିଯୋଗ ଆଣି ସେମାନଙ୍କ ହୃଦୟର ସରଳତାକୁ ଯେପରି ଭାବରେ ଫୁଟାଇ ଅଛନ୍ତି, ତାହା ବଡ଼ ଚିତ୍ତାକର୍ଷକ । ଯଥାଃ—

ରଥ ବେଢ଼ିଣ ସକଳ ତରୁଣୀ । ମାର ମାରନ୍ତି ଅକ୍ରୂରକୁ ପୁଣି
କଂସ ଯାହାକୁ ପଠେଇ କରନ୍ତା । ଗୋପପୁର ଯାକୁ ପଠେଇ ମାରନ୍ତା
ତହିଁ ମଲେ ସେ ହୁଅନ୍ତା କାରଣ । ଯାହା ଉପେକ୍ଷି ଗଲେ ନାରାୟଣ
ଯେବେ ଶ୍ରୀକୃଷ୍ଣ ଗୋପରେ ଥାଆନ୍ତେ । ଲକ୍ଷେ କଂସ ଆସି କିସ କରନ୍ତେ
କେତେ ଅସୁର ଗୋପକୁ ଅଇଲେ । ମନ୍ଦ ବୁଦ୍ଧିର ସବେ ନାଶ ଗଲେ
ସେବେ ସେହିରୂପେ କଂସ ମରନ୍ତା । କୃଷ୍ଣ ଅମ୍ଭ ସଙ୍ଗ କିମ୍ପା ଛାଡ଼ନ୍ତା ।

ଦ୍ୱିତୀୟ ଛାନ୍ଦରେ କୃଷ୍ଣଙ୍କ ନିର୍ଦ୍ଦୟତା ଓ ମଥୁରା ଅବସ୍ଥାନ ବିଷୟ ଚିନ୍ତାକରି କବି ଗୋପୀ ହୃଦୟର ଆକୁଳତାକୁ କିପରି ଘରୋଇ କଥାର ଉଦାହରଣରେ ବ୍ୟକ୍ତ କରିଅଛନ୍ତି, ତାହା ନିମ୍ନରେ ଉଦ୍ଧୃତ ହେଲା:—

ଯାକୁ ନାନା ରସପଣା ମିଳିବ । ସେ ଗୋ ଗୁଡ଼ପଣା କିସ କରିବ
ଯାକୁ ମିଳିବ ହବ୍ୟ ଶାଳିଅନ୍ନ । ତାର ନଗଡ଼ା ଭକ୍ଷେ ନାହିଁ ମନ

ଯାକୁ ମିଳେ ପଲଙ୍କ ସୁପାଟ । ତାର ଭୂମି ଶଯ୍ୟାରେ କାହିଁ ମତି
ଯାକୁ ମିଳେ ସୁବାସ ଚନ୍ଦନ । ତାର ନିମ୍ବକାଠରେ କାହିଁ ମନ
ଯେହୁ ଗଙ୍ଗାରେ କରେ ସ୍ନାନ । ତାର କୂପଜଳରେ କାହିଁ ମନ
ଯାକୁ ମିଳେ ଅମୂଲ୍ୟରତନ । ତାର ସଞ୍ଚିକରେ ନାହିଁ ଯତନ
ଯାକୁ ମିଳେ ପାଟ ଯେ ପଣତ । ଆନ ବସନ କି ରୁଚଇ ପୁଣି ।'

ଏହି ଦ୍ୱିତୀୟ ଛାନ୍ଦର ଅନ୍ୟତ୍ର କବି ଥରେ କୃଷ୍ଣଙ୍କୁ ଚୋରରୂପରେ ବାନ୍ଧିଥିବା କଥା ଜଣେ ଗୋପୀର ମନେ ପକାଇ ଦେଇ ଯେଉଁ ସରଳ ସହଜ ଚିତ୍ତାକର୍ଷକ ଭାଷାରେ ତାହା ବର୍ଣ୍ଣନା କରି ଅଛନ୍ତି, ତାହା କେଡ଼େ ହୃଦୟଗ୍ରାହୀ—ତଳେ ତାହାର ଦୃଷ୍ଟାନ୍ତ ପ୍ରଦତ୍ତ ହେଲା :—

'ଏକ ଗୋପୀଏ ବୋଇଲା ମିତଣି । ସେ ଗୋ ବଡ଼ ମାୟାବୀ ଚକ୍ରପାଣି
ଦିନେ ଗୋଗୋଷ୍ଠେ ରହିଲେ ଗୋପାଳ । ଚୋର ରୂପ ଧଇଲେ ନନ୍ଦବାଳ
ଜଣାକାଳେ ମୋ ଘରକୁ ଆଇଲେ । ଦହି ଦୁଧ ସର ସବୁ ଖାଇଲେ
ଶାଶୁ ପଣତ ଧରି ଓଟାରଇ । ବୋହୂ ଚୋର ବୋଲି ରଡ଼ି ଛାଡ଼ଇ
ଦୀପ ବହନ କରିଣ ଧରି ଗୋ । ଆମ୍ଭ ଘରେ ପଶିଅଛି ଚୋର ଗୋ ।'

ତୃତୀୟ ଛାନ୍ଦରେ ଗୋପକାମିନୀମାନଙ୍କର ଉଚ୍ଛନ୍ନ ଦଶା ପ୍ରଦର୍ଶନ କରିବା ଅଭିପ୍ରାୟରେ କବି କୃଷ୍ଣଙ୍କ ଉଦ୍ଦେଶ୍ୟରେ ଯେଉଁ ଅପ୍ରିୟ ଉକ୍ତିମାନ ସେମାନଙ୍କ ମୁଖରେ ପ୍ରକାଶ କରାଇ ଅଛନ୍ତି, ତାହା କେଡ଼େ ମର୍ମନ୍ତୁଦ ବିରହବ୍ୟଞ୍ଜକ ତଥା ଉନ୍ମାଦନା ସୂଚକ, ନିମ୍ନରେ ତାହାର ନିଦର୍ଶନ ଉଦ୍ଧୃତ ହେଲା :—

'ଯାହା ସଙ୍ଗେ କଲେ ଯଉଁପୀରତି । ନଷ୍ଟେ କାଳ ହୋଇଲା ସେହିମତି
ସେ ଗୋ ମରିଥିଲେ ଭଲ ହୁଅନ୍ତା । ଏତେ ଦୁଃଖ କିମ୍ପା ଦେହ ସହନ୍ତା
ଗଛ ଭାଙ୍ଗିଲା ମାତ ନ ପଡ଼ିଲା । ପୋଡ଼ୁ ଶଗଡ଼ହିଁ ମାତ ନ ଗଲା ।
ଭୃତ ଉଡାଇ ନେଇ ନ ଗିଳିଲା । ଅଜଗର ପେଟରୁ ମୁକୁଳିଲା
କାଳୀ ଚାପିଲେ ଯାଇଥାନ୍ତା ସରି । ଅମ୍ଭେ ମରନ୍ତୁ ଏତେ କିମ୍ପା ଝରି ।'

ପୁନଶ୍ଚ ସେହି ଛାନ୍ଦର ଅନ୍ୟତ୍ର କବି ଗୋପୀହୃଦୟର ନୈରାଶ୍ୟ କେଡ଼େ ଚିତ୍ରିତ କରି ଅଛନ୍ତି, ଦେଖନ୍ତୁ—

'ତାଙ୍କୁ କେମନ୍ତ କରି ମୂରୁଛିବା । ଅଗ୍ନି କୁଣ୍ଡାଇ ଭିତରେ ପଶିବା
ପୋଡ଼ୁ ପୋଡ଼ୁ ଏ କଳେବର ଲେଉଟିବା । ତେଣୁ ଯମୁନା ଜଳରେ ଝାସିବା
ତାର ଉପରେ ପଛେ କଥା ଥାଉ । ପରମାନନ୍ଦ ଲାଗି ଦେହ ଯାଉ ।'

ଅନ୍ୟତ୍ର ସେହି ଛାନ୍ଦରେ ଅନ୍ୟ ଏକ ଗୋପୀ ମୁଖରେ ଅଭିମାନମୂଳକ କ୍ରୋଧ ଓ କୃଷ୍ଣଙ୍କୁ ପୁଣି ଫେରି ପାଇବାର ଉପାୟ କବି କେଡ଼େ ପ୍ରକାଶ କରିଅଛନ୍ତି, ତାହାର ଉଦାହରଣ ତଳେ ଉଦ୍ଧୃତ ହେଲା—

'ଏକ ଗୋପୀ ବୋଇଲା ନୋହେ କଷ୍ଟ । ମୋତେ ଭଲ ବୁଦ୍ଧି ଏ ଦିଶୁଅଛି
ଗୋପପୁରଯାକ ଲୁଣ୍ଠ ହୋଇବା । କରେ କାଉଁସ ନଉଡ଼ ଧରିବା
ମଥୁରାକୁ ବୋଲି ଯିବା ଯାଇ । ଯାଇଁ କଂସକୁ ପଶିବା ଧାଇଁ
ତାଙ୍କ ସନ୍ନିଧେ ହୋଇବା ପ୍ରବେଶ । ତାଙ୍କୁ ବୋଲିବା କୃଷ୍ଣ ଗୋପେ ଅଛି
ଯେବେ ନ ଯାନ୍ତିବେ ମଥୁପୁରୀ । ଗୋଳ କରି ଅଣିମା କିଳାପରି
ସବୁ କଲେ ଲୋକେ ନ ବୋଲିବେ କି । ଗୋପୀମାନଙ୍କୁ ଗୋପୀ କ ନେବେ କି ?'

ଚତୁର୍ଥ ଛାନ୍ଦରେ କବି କୁବୁଜା ପ୍ରତି ଗୋପୀମାନଙ୍କର ଈର୍ଷ୍ୟା ଦେଖାଇ ଜଣେ ଗୋପୀ ମୁଖରେ ସେମାନଙ୍କର ଦୀନତା ଓ ହୀନତା ନିମ୍ନଲିଖିତ ପ୍ରକାରେ ପ୍ରଦର୍ଶନ କରିଅଛନ୍ତି—

'ମଥୁରାପୁର ଲୋକ ଧନେ ଭଲେ । କୁବୁଜା ସୁନ୍ଦର ହେବାରୁ ଭଲେ
ଲକ୍ଷ୍ମୀ ବକ୍ଷ ହେଲେ ଗୋପ ତରୁଣୀ । ନନ୍ଦଯଶୋଦା ଗୋ କୋଡ଼ର ପାଣି
ଗୋଧନ ବାଛୁରୀ ବଉରୀ ହେଲେ । ଦୁଧ ଲବଣୀ ଲୁଣି ପାଣି ହେଲେ
ବଉଳ ଅପୈଳା ସେ ନାଗେଶ୍ୱର । ଫୁଟୁଣ ତଳେ ପଡ଼ିଲେ ସକଳ
ଯମୁନା ଅରେ ଯିବାକୁ ନୋହିଲା । ଝୁରନ୍ତେ ଦେହରୁ ରକତ ଗଲା
ହସ୍ତରୁ କଙ୍କଣ ପଡ଼ିଲା ଗଳି । ଗୋଡ଼ ପାହୁଡ଼ ଶବଦ ନ କରି
ଦେହରେ ଲୁଗା ସେ ଗରୁ ହୋଇଲା । ତରୁ ଉପୁଡ଼ି ଯେସନେ ପଡ଼ିଲା
ସେହିରୂପେ ହେଲୁ ଗୋପ ସୁନ୍ଦରୀ । ଆନନ୍ଦ ବନେ ନ ସରଇ ଝୁରି ।
କେବେଣ ଗଲେ କାହିଁ ପୁଣି ଦେଖିବା । ଯୁବା ସମ୍ଭୁ କେମନ୍ତେ ଧରିବା
ତାହା ଶୁଣି ଏକ ଗୋପୀ ଏ କହି । ଅରତ ଦେଲେ କି ହୋଇବ ସହି
କ୍ଷୀର ଅଉଟଣ ଦଧି ବିସ୍ୱାଦ । ବିଷ ଅମ୍ଳିକ ରସ ତହିଁ ଦେଇ
ଶୁଣ ଦଶ ଯେନ ମହିଲେ ପୁଣ । ଲବଣୀ ଯେସନେ ଉପୁଜେ ଜାଣ
ସେହିରୂପେ କଥା ହୋଇଲା ଅସି । ବାନ୍ଧି ନେଲେ ମଥୁରାବାସୀ
ତାହା ଶୁଣି ଏକ ଗୋପୀ ବୋଇଲା । କଂସ ମାରି ମଥୁରା ରଜା ହେଲା
ଯେସନେ ଶବରୁଣୀ ହାଥେ ମାଣିକ । ତାହା ଚଖି ଫେଇଗଲା ଗୁଣିକ
ଯେସନେ ଶାମୁକୁ ବାହାର ମୁକୁତା । କାଳେ ଭେଶ କଲେ ତାହା ଦେବତା ।'

ଷଷ୍ଠ ଛାନ୍ଦର ସ୍ଥଳ ବିଶେଷରେ କବି କୃଷ୍ଣଙ୍କ ବିରହରେ ଗୋପୀମାନଙ୍କର ଯେଉଁ ସାକ୍ଷେପ ଖେଦୋକ୍ତି ବର୍ଣ୍ଣନ କରିଅଛନ୍ତି, ତାହା ଯେପରି ମର୍ମନ୍ତୁଦ ସେହିପରି ପ୍ରାଣସ୍ପର୍ଶୀ । ଯଥା:—

'କାଳସର୍ପ ସଙ୍ଗେ ବିଶ୍ୱାସ ହେଲେ । ସେ କି ଖାଇଲେ ନ ମରିବା ଭଲେ
ଦୁଧ ଗୁଡ଼ ନେଇ ନିମ୍ବ ମୂଳରେ । ଯେତେ ଦେଲେ ପିତା ଯିବ କି ତାରେ
କୁଜନ ଲୋକର ଏମନ୍ତ ସ୍ୱଭାବ । ସୁଜନ ଲୋକର ଶୁଣ ଯେଗୋ ମତ
ଅଯୋଧ୍ୟାଦେଶେ ଭଗୀରଥ ରଜା । ତପସ୍ୟା କରି କୁହାଇଲା ଗଙ୍ଗା
ବଳୀ ଯେ ସତ୍ୟ କରି ଦାନ ଦେଲା । ପାତାଳପୁରେ ଯାଇଣ ରହିଲା

ଯେଣୁ ରାଜା ପାଳିବ ଧର୍ମରେ ପୃଥ୍ୱୀ । ମନ୍ତ୍ରୀ ଯାଇଣ ସ୍ୱର୍ଗରେ ଥିବ
ପ୍ରହ୍ଲାଦ ମନ ଜାଣିଣ ହରି । ସ୍ୱର୍ଗପୁରରେ ଇନ୍ଦ୍ର କେଳି କରି
ଅମ୍ଭେ ଗୋପଗୋପୀ କି ଦୋଷ କଲୁ । ସେବା କରି କିମ୍ପା ନିର୍ଗୁଣ ହେଲୁ ।'

୭ମ ଛାନ୍ଦରେ ଗୋପୀମାନଙ୍କର ଏହି ଆକୁଳତା ଅନ୍ତର ସ୍ପୃଷ୍ଟ—ଅନ୍ତର ପ୍ରାଣସ୍ପର୍ଶୀ ହୋଇ କବିଙ୍କ ଅସାଧାରଣ ଚିତ୍ରଣ-ଚାତୁରୀର ପରିଚୟ ଦେଉଅଛି । ଯଥା :—

'ଅମ୍ଭ ବିକଳ କି ଜାଣିମେ ସେହି । ଚନ୍ଦ୍ରକୁ ଯେସନେ ଚକୋର ଚାହିଁ
ସୂର୍ଯ୍ୟ କୁମୁଦକୁ ଦେଖି ନିରଖ । ଭ୍ରମର ନ ଯାଏ କେତକୀ ପାଶ
କାଳସର୍ପ ଭୟେ ମଣ୍ଡୂକୀ ପୁଣ । ଦିବସେ ବାହାର ନୋହିଲ ଜାଣ
ଗଙ୍ଗାଜଳ ମାତ୍ର କଳଶ କେଳି । ସୁବର୍ଣ୍ଣ ଝରିରେ ପୂରେଇ ପିଇ
ସେହି ପୁଣି ହୋଏ ଯେତେକ ଦୂର । କେହି ହେବ ମାତ୍ର କଳସେ ତୋଷ
ଅଳି ହସ୍ତେ ବସ୍ତ୍ର ମୁହଁ ଥୋଇଲେ । ତାହାକୁ ଲାଗଇ ଚରଣ ଧୂଳେ
ସୁବର୍ଣ୍ଣ ପଞ୍ଜରି ଭିତରେ ପେଣ୍ଡୁ । ରହିଲେ କୋରଡ଼ ମନରେ ଏକା
ସେହିରୂପେ ଅମ୍ଭେ ଗୋପଯୁବତୀ । ଅମ୍ଭଙ୍କୁ ବନ୍ଦିଲେ ମଥୁରା ସତୀ ।'

ଷୋଡ଼ଶ ଛାନ୍ଦର ସ୍ଥଳ ବିଶେଷରେ କବି ଗୋପୀମାନଙ୍କର ହୃଦୟକୁ କୃଷ୍ଣ-ପ୍ରେମର ଅକୂଳ ପାରାବାରରେ ଭସାଇ ସେମାନଙ୍କ ମୁଖରୁ ଯେଉଁ ବାତ୍ସଲ୍ୟମୟ ଉକ୍ତି ପ୍ରକାଶ କରାଇଅଛନ୍ତି, ତାହା ପାଠ କଲେ ପାଠକମାନଙ୍କର ପ୍ରାଣ ମଧ୍ୟ ସେହି ପ୍ରୀତିରସରେ ଭରପୂର ହୋଇଯାଏ । ଯଥା :—

'ତାହା ଶୁଣି ଏକ ଗୋପୀ ବୋଇଲା । ହୃଦୟ ସେ କଥାମାନ ଦହିଲା
ନ ଯାଇ କିମ୍ପା ରହିଛି ଜୀବନ । ଯେବେ ଛାଡି ଗଲେ ପରାଣଧନ ।'

× × ×

ମୟୂର ପ୍ରାୟେ କେ ନାଚିବ ପୁଣି । କୋକିଳ ପ୍ରାୟେ କେ କହିବ ବାଣୀ
ବେଶ ଭୂଷଣ କେ ଅମ୍ଭଙ୍କୁ ଦେବ । ବାଳକ ରୂପ କେ ଯୁବା ହୋଇବ
ଖେଳଣି ଛନ୍ଦେ କେ ବାନ୍ଧିବ ଚୂଳ । ଢଳ କେ ନାଚିବ ଅମ୍ଭ ସଙ୍ଗର
ମାନ କଲେ କେହୁ ଧରିବ ହସ୍ତ । ବେଣି କେ କରିବ ଗଲେଣି ସେ ତ

ଊନବିଂଶ ଛାନ୍ଦରେ କବି ବିରହ-ପାଗଳିନୀ ବ୍ରଜାଙ୍ଗନାଗଣଙ୍କ ହୃଦୟରେ ଅଦୂର ଭବିଷ୍ୟତରେ କୃଷ୍ଣଙ୍କୁ ଫେରି ପାଇବାର ଆଶା ଜାଗରିତ କରି ଏବଂ ବୃନ୍ଦାବିପିନରେ ଇତସ୍ତତଃ ବୁଲାଇ ସେମାନଙ୍କୁ ଯେଉଁ ଫୁଲର ଭୂଷଣରେ ସଜାଇ ଦେଇଅଛନ୍ତି, ତାହା ତାଙ୍କ ପ୍ରତିଭାର ସୁମହତ୍ ନିଦର୍ଶନ । ଯଥା :—

'ସମସ୍ତେ ମିଳି ଫୁଲବେଶ କଲେ । ପଞ୍ଚବର୍ଣ୍ଣ ବେଶ ତହିଁ ହୋଇଲେ
ଫୁଲର ପାଣ୍ଡୋଳି ଫୁଲ ନେପୁର । ଫୁଲ ଝୁମ୍ପିଆ ଲଗାଏ ଗୋଡ଼ର

ଫୁଲର ମୁଦ୍ରି ଅଙ୍ଗୁଳିରେ ଶୋଭା । ଫୁଲ ଶାଢ଼ୀ ଗୋଟି ପିନ୍ଧିଲେ ରାଧା
ଫୁଲ କାଞ୍ଚୁଲା ଶରୀରେଣ କଷା । ଫୁଲ ମାଳୀମାନ ଗଳାରେ ପଡ଼ା
ଫୁଲର ଚୂଳ ଫୁଲ ଝାଡ଼ି ବନ୍ଧ । ଫୁଲର କମଣୀ କୋଥ ସପାତ
ଫୁଲର ଗୁଣା ନାସେ ଶୋହେ ପୁଣି । କାତ ମକରଟୀ ଫୁଲରେ ଜାଣି
ଚନ୍ଦ୍ରପାଶିଅ ଫୁଲରେ କବାଡ଼ି । ଫୁଲ ଝରକାଠି କୁଞ୍ଚା ଉପର
ଫୁଲର ଅଳକା ଫୁଲର ଗଦା । ଫୁଲରେ ଭୂଷଣ ହୋଇଲେ ରାଧା
ଫୁଲରେ ଛତ୍ର ଗୋଟି ସଜ କରି । ଫୁଲରେ ଭୂଷଣ ପନ୍ତ କାହାର
ଫୁଲର ଅଲଟ ଫୁଲ ବଇଣୀ । ଏମନ୍ତ ବେଶ କରି ତାକୁ ପୁଣି
ଫୁଲବନରୁ ହୋଇଲେ ବାହାର । ବୃନ୍ଦାବନେ ଯାଇ ମିଳିଲେ ସତ୍ୱର ।'

ବିଂଶ ଛାନ୍ଦରେ କବି ରାଧାରାଣୀଙ୍କ ଆଦେଶରେ ମଥୁମଙ୍ଗଳାଦିଙ୍କୁ ଦୂତ ରୂପେ ମଥୁରା ଅଭିମୁଖରେ ପଠାଇ ସେମାନଙ୍କର ଯେଉଁ ବେଶ ବର୍ଣ୍ଣନା କରିଅଛନ୍ତି, ସେ ବେଶ ଉତ୍କଳୀୟମାନଙ୍କର ସୁପରିଚିତ । ନିମ୍ନରେ ତାହା ଉଦ୍ଧୃତ ହେଲା:—

'ଶୁଣି ତିନିଜଣ ମଥୁରା ଗଲେ । ଉତ୍ତମ ବେଶ ତିନିଜଣ ହେଲେ ।
ବଉଦିଅ ଛତା କକ୍ଷରେ ଅଛି । ଶଙ୍ଖ କୋଡ଼ି ହସ୍ତେ ଶୋଭା ପାଉଛି
ଲୁଗ୍ରନ ଛନ୍ଦେ ବାନ୍ଧିଛନ୍ତି ବାଳ । ବେକରେ ପଡ଼ିଛି ରଦ୍ରୁର ହାର
ଅଙ୍ଗୁଳିରେ ପୁଣି ସୁବର୍ଣ୍ଣ ମୁଦି । ପଇତା ଉତ୍ତରୀ ସ୍କନ୍ଧରେ ଭେଦ
ପାନଖିଲି ମାନ ତୁଣ୍ଡରେ ଅଛି । ପାନ ବଟୁଆ ହସ୍ତେ ଧରିଛନ୍ତି
ବେକ ଗୋଡ଼େ ମଖମଲ ପାଗୋଇ । ଛୀରେତ୍ର ପେଟା ଦୋସତା ପିନ୍ଧାଇ
ସଜ ହୋଇଣ ହୋଇଲେ ବାହାର । ମଥୁରା ପୁରରେ ମିଳି ସତ୍ୱର ।

ପ୍ରକୃତ ବର୍ଣ୍ଣନାରେ, ପ୍ରାକୃତିକ ଦୃଶ୍ୟାବଳୀର ଚିତ୍ରଣରେ କବିଙ୍କର ସିଦ୍ଧହସ୍ତତା କାବ୍ୟର ଅନେକତ୍ର ଲକ୍ଷିତ ହୁଏ । ପାଠକମାନଙ୍କର କୌତୂହଳ ଚରିତାର୍ଥ କରିବା ନିମିତ୍ତ ନିମ୍ନରେ ଚତୁର୍ବିଂଶ ଛାନ୍ଦ ବର୍ଣ୍ଣିତ ପ୍ରଭାତ ଚିତ୍ର ଉଦ୍ଧୃତ ହେଲା । ତାହା ଯେପରି ସରଳ ସହଜ—ସେହିପରି ମଧ୍ୟ ହୃଦୟସ୍ପର୍ଶୀ !!

'ରଜନୀ ଶେଷେ କୃଷ୍ଣ ଗୁଣ ଗୁଣି । ଦୂତୀ ବୃନ୍ଦାବତୀ ମିଳିଲେ ପୁଣି
ଦ୍ୱାରେ ଡାକ ଦେଲେ ଉଠିବା ହୋଇ । ରାତ ପାହିଲା ଗୋ ସୁନ୍ଦରୀ ବୋଲି
ଦେବଅଲେ ଶଙ୍ଖ ଶବଦ ହେଲା । କାକପକ୍ଷୀ ଯେ ଦ୍ୱାରେ ରଡ଼ ଦେଲା
କୁଳବଧୂଙ୍କର ଭାଙ୍ଗିଲା ନିଦ । ବାସି ଅଡ଼ନ୍ତ କଲେ ଉଦବେଗ
ପଲଙ୍କ ଶଯ୍ୟା ଗୋ ବାସି ହୋଇଲା । ବେଶ ଭୂଷଣ ମଳିନ ଦିଶିଲା
ଗୋପ ନଗରେ ହୋଇଲା ଚହଳ । ଦଧି ମନ୍ଥନ ଯେମନେ ଗଳଳ
ଗୋଗୋଠୁଁ ଗୋପାଳମାନେ ଆଇଲେ । ଦୁଧ ଦୁହି ଦେଇ ଘରେ ମିଳିଲେ

ସଜଳ ଜୀବଙ୍କ ଅଭମ୍ବ ଗନ୍ଧ । ପୂର୍ବଦଗରେ ରଙ୍ଗବର୍ଣ୍ଣ ଦେଖ
ଶୁଆସାରି ରାମ ଗୋବିନ୍ଦ ବୋଲି । 'ସୁଜ୍ଞଜନ ଲୋକେ ଗୋବିନ୍ଦ ଭଜ
ବୃନ୍ଦାବନରେ କୋକିଳ ଶବଦ । ପକ୍ଷୀ ଜୀବମାନେ ମନେ ଆନନ୍ଦ
ମଞ୍ଜାରୀ ଉଠି ଘରେ ଘରେ ପଶେ । ଉନ୍ଦୁର ଲୁଚିଲେ ଦେଖିଣ ତ୍ରାସେ
ପେଚ୍ଚା ଚଢ଼ାଇ କୋରଡେ ରହିଲେ । ସର୍ପ ଭୟରେ ମଣ୍ଡୂକା ଲୁଚିଲେ
ଯମୁନା ଜଳ ଗୋ ଦିଶେ ନିର୍ମଳ । ସ୍ନାନକୁ ଯିବା ଉଠ ଗଉଡ଼ବାଳ ।'

କବି ଦିନାଇ ଦାସ ଉତ୍କଳ ଭାରତୀଙ୍କ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଏହି ଯେଉଁ ସରଳ ସହଜ ସୁନ୍ଦର ସାହିତ୍ୟ-ସୌଧଟି ନିର୍ମାଣ କରିଅଛନ୍ତି, ତାହା ନିତ୍ୟ ନୂତନରୂପେ ଚିରଦିନ ବିରାଜମାନ ହୋଇ ଭକ୍ତ, ରସିକ, ଭାବୁକ, ଓ ସୌନ୍ଦର୍ଯ୍ୟ ପିପାସୁ ଗ୍ରାହକମାନଙ୍କ ଚିତ୍ତ ବିନୋଦନ କରିବ—ଏଥିରେ କୌଣସି ସନ୍ଦେହ ନାହିଁ ।



# ଭ୍ରମ-ସଂଶୋଧନ

| ପୃଷ୍ଠା | ପଦ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୮ | ୯୮ ପଦ ପରେ ନିମ୍ନଲିଖିତ ପଦ ଦଉଣ୍ଟ ସ୍ଥାନ ପାଇବ :— ଯାକୁ ମିଳିବ ସୁବାସ ଚନ୍ଦନ । ତାର ନିମ୍ବ କାଠରେ କାହିଁ ମନ । ୯୯ । ଯେଣୁ ଗଙ୍ଗାରେ କରିବ ସ୍ନାହାନ । ତାର କୂପ ଜଳରେ କାହିଁ ମନ । ୧୦୦ । | | |
| ୧୧ | ୬୧-୨ | ଅଣି ଅଣି ଦେଲୁ | ଅଣି ଦେଲୁ |
| ୧୫ | ୭୫-୧ | ଜାଣେ | ଜାଣ |
| ୧୬ | ୯୨-୨ | ଅମ୍ଭଙ୍କ | ଅମ୍ଭଙ୍କୁ |
| ୧୯ | ୭୩-୨ | ମଥୁର୍‌-ଦେବ | ମଥୁର୍‌ ଦେବ |
| ୧୯ | ୭୫-୧ | ବନମାଳୀ | ଦନ ମାଳୀ |
| ୧୯ | ୭୫-୨ | କର | କରେ |
| ୩୭ | ୨-୧ | ଶୁଣ | ପୁଣ |
| ୫୦ | ୩୪-୧ | କପୋଲ | କପାଳ |
| ୫୦ | ୪୨-୧ | ନେରପୁ | ନେପୁର |
| ୬୨ | ୩୧-୧ | ମନ | ମାନ |
| ୬୯ | ୧୧୭-୧ | ଶନ୍ୟ | ଶୂନ୍ୟ |
| ୬୯-୯୧ | ୧୧୯-୨, ୫୧-୧ | ଶ୍ରୀପତି | ଶ୍ରୀମତୀ |
| ୯୮ | ୮୯-୧ | ଦୂତ | ଦୂତୀ |
| ୧୦୮ | ୯୦-୧ | ବ୍ରହ୍ମାବେତ୍ତା | ବ୍ରହ୍ମବେତ୍ତା |
| ,, | ୧୦୨-୨ | ମୋହଦ | ମୋହନ |
| ୧୦୯ | ୧୦୬-୧ | ମୂଳ | ମୂନ |
| ୧୧୦ | ୧୧-୧ | ମୁଣ୍ଡମାଳା | ମୁକ୍ତାମାଳା |
| ୧୧୫ | ୨-୧ | ବାଶ୍ର | ବାର |
| ୧୨୧ | ୩୮-୨ | ବନ୍ଧାଇଲେ | ବନାଇଲେ |
| ୧୨୩ | ୮୯-୧ | ଶଙ୍ଖା ବସ୍ତ୍ରମାଳା | ଶଙ୍ଖ ସ୍ୱର୍ଣ୍ଣମାଳା |
| ୧୨୬ | ୩୯-୨ | ସଙ୍ଗେତା | ସହିତା |
| ୧୩୧ | ୨୬-୧ | ଉଦ୍ଦେକ | ଉଦ୍ଦକ |
| ୬୫, ୬୯, ୭୯, ୮୯, ୯୨, ୯୫, ୯୯, ୧୦୪, ୧୦୬, ୧୦୮ | | ଚନ୍ଦ୍ରଶାଳା | ଚନ୍ଦ୍ରସେଣୀ |

# ଗୋପୀଭାଷା

## ପ୍ରଥମ ଛାନ୍ଦ

ଶ୍ରୀରାଧା-କୃଷ୍ଣାଭ୍ୟାମ୍ ନମୋନମଃ

ଜୟ ଜୟ ଜଗତ-ନାଥ ହରି ।
ତୋତେ ଚିନ୍ତିଣ ଭକ୍ତମାନେ ତରି ।
ମୁଁ ଯେ ସେ ପାଦରେ ମନ ନିବେଶି ।
ଗୋପୀ-ଭାଷା କହିବାକୁ ଉରସି ।
ଦିନେ କପିଳାସପୁରେ ପାର୍ବତୀ ।
ଗୋପୀମାନଙ୍କ କଥା ମନେ ଚିନ୍ତି ।
ଈଶ୍ୱରଙ୍କୁ ବୋଇଲେ ଶୁଣ ତୁମ୍ଭେ ।
ଗୋପପୁର କଥା କହ ମୋ ଆଗେ ।
କୃଷ୍ଣ ତହିଁରେ ରହି ବିହରିଲେ ।
ଗୋପୀମାନଙ୍କୁ ମାୟାରେ ମୋହିଲେ ।
ପୁଣି ମଥୁରା କିମ୍ପା ଗଲେ ହରି ।
ଗୋପୀମାନଙ୍କ ଭାବ ତେଜି କରି ।
ତହୁଁ ଗୋପୀମାନେ ପୁଣ କି କଲେ ।
ଯେହା କହ ହେ ପ୍ରାଣନାଥ ! ମୋରେ ।
ତାହା ଶୁଣିଣ ଈଶ୍ୱର କହିଲେ ।
କଂସ ମାରିବା ପାଇଁ ଜାତ ହେଲେ ।
ନନ୍ଦଘରେ ରହିଲେ ବେଣୁପାଣି ।
ପୂର୍ବଭାଗ୍ୟରେ ଗୋପୀମାନେ ପୁଣି ।
ତୁମ୍ଭେ ଶୁଣ ଗୋ ଭଗବତି ! ପୁଣ ।
ମୋତେ ପୂଜନ୍ତି ନିତ୍ୟେ ଗୋପୀଗଣ ।
ନିତ୍ୟେ ଯମୁନା-ତଟେ ସ୍ନାନ କରି ।
ତହିଁ ପୂଜନ୍ତି ବାଲୁକା ଗଉରୀ ।
ଫୁଲ ଚନ୍ଦନ ସିନ୍ଦୂର ଦେଇଣ ।
ବର ମାଗନ୍ତି ନାରାୟଣ ପୁଣ ।
ଦିନେ ପ୍ରସନ୍ନ ହେଲି ମୁଁ ତାହାଙ୍କୁ ।
ତୁମ୍ଭେ ପାଇବଟି ନନ୍ଦ ପୁଅଙ୍କୁ ।
ସ୍ୱୟଂ ନାରାୟଣୀ ଜାତ ହୋଇବେ ।
ତୁମ୍ଭମାନଙ୍କୁ ଯେନ ବିହରିବେ ।
ତୁମ୍ଭେ ତାଙ୍କରେ ଭଗତି ହୋଇବ ।
ସେ ଯେ ତୁମ୍ଭଙ୍କୁ ରମିବେ ମାଧବ ।
ତାହା ଶୁଣି ସର୍ବ ଗୋପୀ ଚଳିଲେ ।
ଯାଇଁ ଯେ ଯାହା ମନ୍ଦିରେ ମିଳିଲେ ।
କୃଷ୍ଣ ବସୁଦେବ ଘରେ ଜନମ ।
ଡର କଂସଙ୍କୁ ଗୋପେ ଗଲେ ପୁଣ ।
ନନ୍ଦଘରେ ବଢ଼ିଲେ ଦେବ ହରି ।
ଦେଖି ସନ୍ତୋଷ ହେଲେ ଗୋପନାରୀ ।
କଂସ ଶୁଣିଲା ଗୋପପୁରେ ହରି ।
ମୋତେ ମାରିବେ ବୋଲି ଅବତରି ।
ଗୋପପୁରକୁ ଡରଣ ନ ଯାଏ ।
ଶାପ ପାଇଛି ଗଲେ ହେବ ଯମ୍ଭେ ।

୧୪-୧—ସ୍ୱପ୍ନେ (ଖ,ଗ,ଡ) । ୧୮-୧—ନନ୍ଦପୁରେ (ଘ,ଛ)।

ସେ ଯେ ବଗୃର କରଣ ମନରେ ।
ଯେତେ ଅସୁର ଥିଲେ ତା ସଙ୍ଗରେ ।
ରାମ ଗୋବିନ୍ଦ ମାରବେ ବୋଇଲା ।
ଶୁଣି ପୂତନା ଅସୁରୀ ଧାଇଁଲା ।
ଗୋପେ ପ୍ରବେଶ ହୋଇଲା ଅସୁରୀ ।
କ୍ଷୀର ଦଅନ୍ତେ ମଲା ରାବ କରି ।
ତହୁଁ ଶକଟା ପ୍ରବେଶ ହୋଇଲା ।
ପାଦ ବାଜନ୍ତେ ସେହୁ ନାଶ ଗଲା ।
ଯେତେ ଅସୁର ଅଇଲେ ଗୋପକୁ ।
କୃଷ୍ଣ ନାଶ କଲେ ସର୍ବ ରିପୁକୁ ।
ବତ୍ସ ବାଳକ ଘେନ କରେ ଲୀଳା ।
ବୃନ୍ଦାବନରେ କରେ ନାନା ଖେଳା ।
ଏହିରୂପେ ଗୋପେ ଅଷ୍ଟ ବରଷ ।
ଗୋପୀମାନଙ୍କୁ ଘେନ ନନ୍ଦଶିଷ ।
ରାତ୍ର ଦିବସେ ବିହାର କରନ୍ତି ।
କୃଷ୍ଣ ବିନୁ ସେ ଅନ୍ୟ ନ ଜାଣନ୍ତି ।
କଂସ ମାରବ ବୋଲି ବିଗୃରଲା ।
ଛନ୍ଦ କରଣ କଥା ଭିଆଇଲା ।
ଧନୂଯାତ୍ରାଧ୍ୟେ ଉଚ୍ଛବ କରଣ ।
ବେଶ କରି ଶରାସନ ରଖିଣ ।
ସର୍ବ ପୁରେ ଘୋଷଣ ଦିଆଇଲା ।
ରାଜାମାନଙ୍କୁ ଡକାଇ ଆଣିଲା ।
ଦ୍ୱାରେ କୁବଳୟା ଗଜ ଜଗାଇ ।
ମାଲ ରଙ୍ଗ-ସଭାତଳେ ରଖାଇ ।
ଛୟାଣୋଇ ସତ୍ର ମଞ୍ଚା ସଜାଡ଼ି ।
ରାଜାମାନେ ବସିଲେ ଆସି କରି ।
ବସୁଦେବ ଦେବକୀ ବସାଇଲା ।
ନନ୍ଦ ଆସିବାକୁ ଲେଖା ଲେଖିଲା ।
ଛେନା ଦଧି ଲବଣୀ ସର ଘେନ ।
ଭେଟ ମୋ ଆଗେ ହେବ ଆସି ପୁଣି ।
ଯେତେ ବଗୃର ଲେଖାଧ୍ୟେ ଲେଖିଲା ।
ଦିବ୍ୟ ରଥ ଗୋଟିଏ ସଜ କଲା ।
ବେଗେ ଡକାଇ ଆଣିଲା ଅକ୍ରୂର ।
ତାକୁ ବୋଇଲା ଯାଅ ଗୋପପୁର ।
ନନ୍ଦ ଉପନନ୍ଦ ଚନ୍ଦ୍ରସେଣାଙ୍କୁ ।
ଧନୁ ଉଚ୍ଛବ କହିବ ତାହାଙ୍କୁ ।
ଛେନା ଗୋଷ୍ଠିକା ଲବଣୀ ଗୋରସ ।
ଲକ୍ଷେ ଭାର ଘେନାଇଁ ବେଗେ ଆସ ।
ନନ୍ଦ ଯଶୋଦା ରାମ କୃଷ୍ଣ ଦୁଇ ।
ରଥେ ବସାଇ ଘେନ ଆସ ଯାଇଁ ।
ଆଜ୍ଞା ପାଇ ଅକ୍ରୂର ଚଳ ଗଲା ।
ରଥ ଚଢିଣ ଗୋପରେ ମିଳଲା ।
ନନ୍ଦି ସିଂହ ଦ୍ୱାରେ ହେଲା ପ୍ରବେଶ ।
ରଥୁଁ ଓହ୍ଲାଇ ସଫଳାର ଶିଷ ।
ଆଜ ନେତ୍ର ମୋ ସୁଫଳ ହୋଇବ ।
ରାମ କୃଷ୍ଣଙ୍କୁ ଦେଖି ଦୁଃଖ ଯିବ ।
ଦୂତ ଆସିବା ନନ୍ଦ ଯେ ଜାଣିଲେ ।
ତାଙ୍କୁ ଗଉରବରେ ଘେନ ଗଲେ ।
ଦିବ୍ୟ ଆସନ ବସିବାକୁ ଦେଲେ ।
କଂସ କହିବା କଥା ଯେ ଶୁଣିଲେ ।
ଗୋପୁଁ ସମସ୍ତ ଗୋପାଳ ଡକାଇ ।
ରାଜା କହିବା ଲେଖିବା ଶୁଣାଇ ।
ଶୁଣି ସକଳ ଗୋପାଳ ଚଳଲେ ।
ସନ୍ଦେଶ୍ରେକ ଭାର ଯେ ସଜ କଲେ ।

୩୫-୨—ଭେଟି କରି (ଜ) । ୩୭-୨—ଗୋଷ୍ଠାଧ୍ୟେ (ଗ) । ୪୨-୨—ମୂଢ (ବ ଠାରୁ ଜ) ।

ଭାର ଚୋନ ମମସ୍ତେ ଚଳଗଲେ ।
ଦେଖି ଅକ୍ରୂର ନନ୍ଦଙ୍କୁ କହିଲେ ।
ଶୁଣି ନନ୍ଦ ଯଶୋଦା ବେନି ଜନ ।
ରାମକୃଷ୍ଣ ଘେନିଣ ସଙ୍ଗେ ପୁଣ ।
ରଥେ ଯାଇଁ ଗୃହଜଣ ବସିଲେ ।
ଦେଖି ଗୋପୀ ରୋଦନ ତହିଁ କଲେ ॥
ଶତେପୁର କର ରଥ ବେଢ଼ିଲେ ।
କୃଷ୍ଣ ସମସ୍ତଙ୍କୁ ତହିଁ ବୋଧିଲେ ।
ଗୃହବଦନଙ୍କୁ କଣ୍ଠ କର ଗଲେ ।
ରଥ ଅକ୍ରୂର ବାହି ତହୁଁ ନେଲେ ।
ରଥ ମଧୁପୁରରେ ପରବେଶ ।
ମଧୁବନରେ ରହେ ରାମକୃଷ୍ଣ ।
ଯାଇଁ ଅକ୍ରୂର ରାଜାଙ୍କୁ କହିଲେ ।
ନନ୍ଦ ଯଶୋଦା ଗୋରସ ଅଇଲେ ।
ରାମକୃଷ୍ଣହିଁ ଅଇଲେ ରଥରେ ।
କାଲି ଦର୍ଶନ ହେବ ପ୍ରଭାତରେ ।
କହି ଅକ୍ରୂର ଚଳିଲେ ଘରକୁ ।
କୃଷ୍ଣ ବିଜୟ କଲେ ନଗରକୁ ।
ବାଟେ ରଜକାରିଙ୍କ ନାଶ କଲେ ।
କୁବୁଜୀଙ୍କ ସୁନ୍ଦର ରୂପ ଦେଲେ ।
ଧନୁ-ଘରେ ପଶି ଧନୁ ଭାଙ୍ଗିଲେ ।
ମାଲ କୁବଳୟଙ୍କୁ ନାଶ କଲେ ।
ରଙ୍ଗ-ସଭାରେ ହୋଇଲେ ପ୍ରବେଶ ।
ମଞ୍ଚା ଉପରୁ କଂସ କଲେ ନାଶ ।
ଉଗ୍ରସେନଙ୍କୁ ତହିଁ ରାଜା କଲେ ।
ନନ୍ଦ ଯଶୋଦାଙ୍କୁ ଗୋପେ ଗୃହିଲେ ॥
ମଧୁପୁରେ ସୁଖ ପାଇ ରହିଲେ ।

ଗୋପସୁନ୍ଦରୀ ମନୁ ପାସୋରିଲେ ।
ଷୋଳ ସହସ୍ର ଦେବକନ୍ୟା ପୁଣ ।
ଇନ୍ଦ୍ର ସମର୍ପି ଦେଲେ ଅଣି ଜାଣ ।
ଗୋପୀ ଗୋପରେ ରହିଣ ଭାଳିଲେ ।
ରାମକୃଷ୍ଣଙ୍କ କଥା ବିଚାରିଲେ ।
ମେଳ ହୋଇଣ ସହସ୍ରେ ଗୁଆଳୀ ।
ମଧ୍ୟେ ନାୟିକା ଲଳିତା ସୁନ୍ଦରୀ ।
କୃଷ୍ଣ କଥା ପାଡ଼ି ଗୋପୀ ସକଳ ।
ଗୁଣି ସୁମରି ହୁଅନ୍ତି ବିକଳ ।
କାହୁଁ ଦାରୁଣ ଅକ୍ରୂର ଅଇଲା ।
କଂସ ଆଜ୍ଞା ବୋଲି ଗୋପେ କହିଲା ।
କୃଷ୍ଣ ଆସିବେ ବୋଲି ଗଲେ ଭଣ୍ଡି ।
ତାହା ଜାଣିଲେ କପାଁ ଦେନ୍ତୁ ଛାଡ଼ି ।
ରଥ ବେଢିଣ ସକଳ ତରୁଣୀ ।
ମାର ମରନ୍ତୁ ଅକ୍ରୂରଙ୍କୁ ପୁଣି ।
କଂସ ଯାହା କରୁ ପଛେ କରନ୍ତା ।
ଗୋପପୁର ଯାକ ପଛେ ମାରନ୍ତା ।
ତହିଁ ମଲେ ସେ ହୁଅନ୍ତା କାରଣ ।
ଯାହା ଉପେକ୍ଷି ଗଲେ ନାରାୟଣ ।
ଯେବେ ଶ୍ରୀକୃଷ୍ଣ ଗୋପରେ ଥାଆନ୍ତେ ।
ଲକ୍ଷେ କଂସ ଆସି କସ କରନ୍ତେ ।
କେତେ ଅସୁର ଗୋପକୁ ଅଇଲେ ।
ମନ୍ଦ ବିଗ୍ରହ ସବେଁ ନାଶ ଗଲେ ।
ଯେବେ ସେହିରୂପେ କଂସ ମରନ୍ତା ।
କୃଷ୍ଣ ଆମ୍ଭ ସଙ୍ଗ କିମ୍ପା ଛାଡ଼ନ୍ତା ।
ଯେକ ଗୋପୀଏ ବୋଇଲେ ଥାଇଣ ।
ଆମ୍ଭେ ବେଳହିଁ ହୁଡ଼ିଗଲୁ ପୁଣ ।

୫୧-୨—କହି ବୋଧିଲେ (ଙ, ଛ) । ୫୨-୨ ତହିଁ (ଖ,ଝ) । ୬୭-୧—କୃଷ୍ଣ କଥା ଚିନ୍ତ (ଖ) ।
୭୦-୨—ନାରାୟେଣ (ଗ,ଚ,ଛ) ।

ଗୋଳ କରି ନ ଛାଡ଼ିଲେ ମାଧୋଇ ।
କସ କରନ୍ତା କଂସ ଛାର ହୋଇ । ୭୫
ଯେବେ ଅକ୍ରୂର ବାହୁଡ଼ି ଯାଆନ୍ତା ।
କୃଷ୍ଣ ଗୋପପୁରେ ରହି ଥାଆନ୍ତା ।
ଯାଇଁ କହନ୍ତା ଅକ୍ରୂର ରାଜାକୁ ।
କଂସ ଡରେ କି ଆସନ୍ତା ଗୋପକୁ ।
ସେ କି ଶୁଣିଣ ନାହିଁ କୃଷ୍ଣ କଥା ।
ସେ କି ଇନ୍ଦ୍ରହୁଁ ବଡ଼ ସାମରଥା ।
ଇନ୍ଦ୍ର ସପତ ଦିନ ବୃଷ୍ଟି କଲା ।
ବଜ୍ରଘାତେ ପଥର ବରଷିଲା ।
ଛତ୍ର ଆକାରେ ଗିରିବର ଧରି ।
ଗୋଧନ ସମ୍ପଦ ରଖିଲେ ମୁରାରି । ୮୦ ।
ଇନ୍ଦ୍ର ହାରିଣ ଶରଣ ପଶିଲା ।
ଗୋପେ ଗୋବିନ୍ଦ ନାମ ଦେଇ ଗଲା ।
ସେ କି ଶୁଣିଣ ନାହିଁ କଣ୍ଠି ଧେନ ।
ଗୋପେ ଯେତେକ କଲେ ଭାଇ ବେନି ।
କେତେ କେତେ ବିପତ୍ତି ନ ପଡ଼ିଲା ।
କୃଷ୍ଣ ଶ୍ରୀଅଙ୍ଗକୁ କିଛି ନ ଲାଗିଲା ।
ଯେବେ କେ ଅବା ଆମ୍ଭଙ୍କୁ ରଖିବ ।
ଆମ୍ଭ ବିରହ ଦୁଃଖ ଉପେକ୍ଷିବ ।
ଯେତେ ବୋଲିଣ ଗୋପୀ ସର୍ବ ଦୁଖୀ ।
ଯେକ ଗୋପୀ ବୋଇଲା ଶୁଣ ସଖି ॥
ସେ ଗୋ ଦାରୁଣ ଅଟଇ କହ୍ନାଇଁ ।
ଯେତେ ନିର୍ଦ୍ଦୟ୍ଯ ବୋଲି ଜାଣୁ ନାହିଁ ।
ଯେବେ ଜାଣିଥାନ୍ତୁ ବୋଲେ କଠୋର ।
ଆମ୍ଭ ହୃଦେ କି ନିଦନ୍ତେ ପଥର ।
ନିଶି ଦିବସେ ଦେନି ବୁଲୁଥିଲା ।
ଏବେ ନିର୍ଗୁଣ କରି ଛାଡ଼ିଗଲା ।
ଯାହା ଘରେ ଯେଉଁ ଦ୍ରବ୍ୟ ଅପୂର୍ବ ।
ତାଙ୍କୁ ଲୁଚାଇ ଥୋଇଥାଉଁ ସର୍ବ ।
ଆମ୍ଭେ ପଞ୍ଚ ତନଯ୍ଯ ଗୋ ନ ଜାଣୁ ।
ଗୁରୁ ଗଉରବ ଲାଜ ନ ମଣୁ । ୯୦ ।
ଆମ୍ଭ ପଞ୍ଚ ତନଯ୍ଯ ସବୁ ସେହି ।
ତାଙ୍କୁ ନ ଦେଖି ଯାଉଅଛି ଦେହୀ ।
ତାର ମତ୍ତସାରଙ୍ଗଗାମୀ ଗତି ।
ଦେଖି ଦେହ ଧରେ କଉଁ ଯୁବତୀ ।
ସେ ଗୋ ବନରୁ ଆସୁ ଥାଇ ଚାଲି ।
ଶିରେ ବରହି-ପୁଚ୍ଛ ଶୋହେ ଝାଲି ।
ନାସେ ବର୍ତ୍ତୁଳ ମୁକୁତା ଲୁଳଇ ।
କର୍ଣ୍ଣେ କୁଣ୍ଡଳ ବେନି ବିରାଜଇ ।
ଚନ୍ଦ୍ର ଫାସିଆ ଶୋହେ କଣ୍ଠି ମଣି ।
ଯେସନେ ରବିରେ ଚନ୍ଦ୍ରମା ବିରାଜି । ୯୫ ।
ଗୋରଚନା ଚିତା ଶୋହେ କପାଳେ ।
ତହିଁ ଉପରେ ଗୁଞ୍ଜ ଗୁଞ୍ଜମାଳେ ।
ଉରେ ଶାର୍ଦ୍ଦୂଳନଖ କଣ୍ଠିମାଳୀ ।
ଅଙ୍ଗେ ପଡ଼ିଣ ଥାଇ ଗୋରୁଧୂଳି ।
ହସ୍ତେ ମୁରଲୀ ଗୋଷ୍ଟ ଥାଇ ବେନି ।
ଇଚ୍ଛା ହୋଇଲେ କରୁଥାଇ ଧ୍ୱନି ।
କରେ ବଳୟ ବାହୁଟି କଙ୍କଣ ।
କଟିତଟେ ଶୋହେ ପୀତବସନ ।
କଟିସୂତ୍ର ମେଖଳା ଓଡ଼ିଆଣୀ ।
ଚାରୁ ଚରଣେ ନେପୁର ବାଜେଣୀ ॥
ରତ୍ନ କଠାଉ ଶୋହେ ପଦୁପାଯ୍ଯେ ।
ଦାସ ଦିନାଇଁ ସେବା ସେହିଠାଯ୍ଯେ । ୧୦୧

୮୨-୨—ଯେତେ ନେତେକ (ଘ, ଙ) । ୮୪-୨—ନିରହ ଜ୍ୱର (କ) । ୮୭-୨—ଏଡ଼େ ଦାରୁଣ (କ) ।
୯୨-୧—ହିଙ୍ଗୁଳ (ଗ, ଘ) । ୯୭-୨—ଝାଲେ ... ଧୂଳି (ଙ) ।

# ଦ୍ୱିତୀୟ ଛାନ୍ଦ

ସେହିଠାରୁ ଅନନ୍ତରେ କଥା ପଚାରି ।
କ୍ଷମା କଲେ ସେ ବରଜ-ସୁନ୍ଦରୀ ।
ପୁଣି କଉଁ ରୂପେ ଦିନ ବଞ୍ଚିଲେ ।
ରାମକୃଷ୍ଣହିଁ ଛାଡ଼ି କରି ଗଲେ ।
ମୋତେ କହି ଦେ ବିଶ୍ୱନାଥ ପୁଣ ।
ଗୋପଲୀଳା ଶୁଣି ତ ମୋର ମନ ।
ପ୍ରିୟା ବଚନେ କହେ ତ୍ରିପୁରାରି ।
ତୁମ୍ଭେ ଶୁଣ ହିମବନ୍ତ ଦୁଲାଳୀ ।
କୃଷ୍ଣ ମଥୁରା ଯାଇଣ ରହିଲେ ।
ଗୋପୀ ସମସ୍ତେ ମନରେ ଭାଳିଲେ ।
ତହିଁ ସହସ୍ରେ ଗୋପୀରେ ନାୟିକା ।
ବନସୁନ୍ଦରୀ ଅଟଇ ବିଶାଖା ।
ସେହିଁ ଗୋପୀଙ୍କି ବଚନ କହିଲେ ।
କୃଷ୍ଣ ବହୁତ ଲୀଳା ସେହିଠି କଲେ ।
ଦାମ ସୁଦାମ ସଙ୍ଗତରେ ଘେନି ।
ମଧୁମଙ୍ଗଳ ସୁବଳ ସେ ପୁଣି ।
ଚୂଳ ଝୋଟଣି ଛନ୍ଦେଣ ବାନ୍ଧିଛି ।
ଗଳେ ବନମାଳା ମାନ ଲମ୍ବିଛି ।
କରେ ମୁରଲୀ ଧରି ନନ୍ଦବଳା ।
ଯହିଁ ଗୋପୀମାନଙ୍କ ଚିତ୍ତଚୋରା ।
ଧୀର ଧୀର କରି ବେଣୁ ବାଉଛି ।
ସର୍ବନାରୀ ମନ ମାନ ମୋହୁଛି ।
କର୍ଣ୍ଣେ କୁଣ୍ଡଳ କଣ୍ଠେ ଲମ୍ବେ ମାଳ ।
ବନୁଁ ଆସଇ ଶ୍ରୀନନ୍ଦବାଳ ।
ସର୍ବ ବାଳପୋଏ ଥାନ୍ତି ସଙ୍ଗରେ ।
କହେ କୋମଳ ଗମ୍ଭୀର ସ୍ୱରରେ ।
ମଧ୍ୟେ ବ୍ରଜସ୍ତ୍ରୀ କରି ଦେବ ଦିଶ ।
ଶ୍ରୀହରି ପାଶେଣ ବଛା ଯେଉଁ ପୁରି ।
ଖେଳ ଅଛୁଥାନ୍ତି ନାନା ରଙ୍ଗେଣ ।
ଗୋପସୁତ ବେଢ଼ିଥାନ୍ତି ସଙ୍ଗେଣ ।
ନୀଳମଣିଙ୍କି ବେଢି ହେମମାଳୀ ।
ତହିଁ ମଧ୍ୟେ ସୁନ୍ଦର ବନମାଳୀ ।
ତାହା ଦେଖି ହରଥାଉଁ ଭୃଷିତ ।
ମତି ଗରବେ ହୋଉଥାଉଁ ମତ୍ତ ।
ତାଙ୍କୁ ପାଇବା ଅମ୍ଭେ ଆଉ କାହିଁ ।
ଭଲ ମରିବା ସିନା ଦେହ ଦେଇ ।
ଆଉ ଲୋଡ଼ିଲେ କାହିଁଛି ସେ କଥା ।
ପିଠି ଘେନଇଁ କାହିଁ ପେଟବ୍ୟଥା ।
ଏକ ଗୋପୀସ୍ତ୍ରୀ ବୋଇଲା ସଖୀ ତ ।
ଦିନେ କୃଷ୍ଣ କଲେ ମୋତେ ଯେମନ୍ତ ॥
ଲାଜ କହିବାକୁ ବଡ ମାଡଇ ।
ତାର କଥା ମନରୁ ନ ଛାଡଇ ।
ଦିନେ ଦେଖିଲି ପଥୁଁ ଆସୁ ବେଳେ ।
ରହ ବୋଲି ଧଇଲା ଯାଇଁ ବଳେ ।
ମୁଁ ଗୋ ଭୂମିରେ ପଡ଼ିଲଇଁ ଶୋଇ ।
ମୋତେ କାଖେ କରି ନେଲେ ମାଧୋଇ ।
ନେଇ ନିକୁଞ୍ଜବନର ଭିତର ।
ଯେତେ ସୁରତ କଲେ ଅଗୋଚର ।

୯-୨—କର୍ଣ୍ଣେ ···ମାଳା । ବନୁଁ···ନନ୍ଦବଳା (ଖ) । ୧୫-୨—ଗୋପପୁତ୍ରେ (କ,ଗ,ଜ,ଚ,ଛ) ।
୧୯-୨—ଘେନଇ ମେତେହ (କ, ଗ,) ପ୍ରଭୃତି ।

କାହ୍ନୁଁ ଶିଖିଲେ କାହ୍ନୁ ଏତେ ରଙ୍ଗ ।
ମୋର ଗ୍ୟାନ ହର ନେଲେ ଶ୍ରୀରଙ୍ଗ ॥
ସେହୁ ଦିନୁ କାହ୍ନୁ ମୋର ଜୀବନ ।
ମୋର ବନରୁ ଆସୁ ନାହିଁ ମନ ।
ଏମନ୍ତ ଗୋପୀଏ ବୋଇଲେ ମିଳଣି ।
ଦିନେ ଗଲି ମୁଁ ଘାଟେ ନୀର ଆଣି ।
ମୋର ମନ୍ଦିରେ ପଶିଲେ ମାଧୋଇ ।
ଘରେ ଦେଖିଲେ ନାହିଁ ଦୁଧ ଦହି ।
ଶିକା ଉପରେ କଉଡ଼ି ଦେଖିଲେ ।
ହସ୍ତ ନ ପାଇଲାକୁ ବୁଦ୍ଧି କଲେ ।
ପୀଢ଼ା ଉପରେ ପୀଢ଼ାମାନ ଦେଇ ।
ତହିଁ ଉପରେ ଉଠିଲେ ମାଧୋଇ ।
ଯଷ୍ଟି ଯେନ ଫୋଡ଼ିଲେ ଦଧିଭାଣ୍ଡ ।
ଜଳା ସଳଖେ ପାତିଅଛି ତୁଣ୍ଡ ।
ମୁଁ ଗୋ ଏମନ୍ତ ସମୟେ ଅଇଲି ।
ଖୀରଭାଣ୍ଡ ତଳେ ଥୋଇ ଗୃହିଲି ।
ଦୁଧ ପିଉଛି ହାଣ୍ଡି କଣା କରି ।
ମୁଁ ଗୋ ବସିଲି ଦୁଆର ଆବୋରି ।
ଆଜ ଜାଣିମା ଯିବୁ କଉଁ କତି ।
ମିଛ ପ୍ରାୟେ ମଣେ ନନ୍ଦଯୁବତୀ ।
ନିତପ୍ରତି ମୋ ଘରୁ ସବୁ ଖାଉ ।
ଆଜ ଜାଣିମା କଉଁ କତି ଯାଉ ।
ମୋତେ ତରକ ବାକ୍ୟେ ଅନାଇଲା ।
ଦୁଧ ଗଣ୍ଡୂଷ ଲୋଚନେ ମାଇଲା ।
ବେନି ହସ୍ତେ ବୁଜିଲି ବେନି ଡୋଳା ।
ପେଲି ପକାଇ ଦେଲା ନନ୍ଦବଳା ।
ମୁଁ ଯେ ପଡ଼ିଲି ତଳେ ମୁହଁମାଡ଼ି ।
ଘରୁ ପଳାଇ ଗଲେ ନରହରି ।

ଏମନ୍ତ ଗୋପୀଏ ବୋଇଲେ ମିଳଣି ।
ସେ ଗୋ ବଡ଼ ମାୟାବୀ ଚକ୍ରପାଣି ।
ଦିନେ ଗୋଗୋଷ୍ଠେ ଚହିଲେ ଗୋପାଳ ।
ଚୋରରୂପ ଧଇଲେ ନନ୍ଦବାଳ ।
ନିଶାକାଳେ ମୋ ପୁରକୁ ଅଇଲେ ।
ଦହି ଦୁଧ ସର ସବୁ ଖାଇଲେ ।
ଶାଶୁ ପଣନ୍ତ ଧରି ଓଠାଇଲ ।
ବୋହୂ ଚୋର ବୋଲି ରଡ଼ି ଛାଡ଼ଇ ।
ଦୀପ ବହନ କରିଣ ଧର ଗୋ ।
ଆମ୍ଭ ଘରେ ପଶିଅଛି ଚୋର ଗୋ ।
ଦୀପ ଲଗାଇ କୃଷ୍ଣଙ୍କୁ ଧଇଲୁଁ ।
ବାନ୍ଧି ଯଶୋଦା ଆଗରେ କହିଲୁ ।
ବେଗେ ଘରୁ ଗୋ ଆସ ନନ୍ଦରାଣି ।
ଯାଇଁ ଦେଖ ତୋ ପୁଅର ବାଖଣି ।
କଂସ ନୃପତି ମଲା କି ଶୁଣିଲୁ ।
ଛନ୍ଦି ତୋହୋରି ଆଡ଼କୁ ଆଣିଲୁ ।
ପୁଅ ଗୋପପୁରେ ଷଣ୍ଢ ହୋଇଲା ।
ନାନା ଅନ୍ୟାୟମାନ ପାର ଗଲା ।
ଶଏ ବେଳ କହିଲେ ନ ଡଅରୁ ।
ଆଜ ଜାଣିମା କେହ୍ନେ ରଖା କରୁ ।
ତୋର ପୁଅ-ପଦଇ ସରଯିବ ।
ଆମ୍ଭ ଘର ପଛେ ଗୋପେ ନୋହିବ ।
କେତେ ତନୟ ଗୋପପୁରେ ନାହିଁ ।
ଏଡ଼େ ଉଚ୍ଛୁଳ ପୁଅ ଅଛି କାହିଁ ।
ମୋର ପ୍ରଂଦଲୀ ଶୁଣି ନନ୍ଦରାଣି ।
ଘରଭିତରୁ ବାହାର ତରୁଣୀ ।
କୃଷ୍ଣ ଧରିଅଛନ୍ତି ବାମକର ।
କାମପାଳହିଁ ଅଛନ୍ତି ସଙ୍ଗର ।

୩୫-୨—ଅଜ ଜାଣିମା ତୋତେ କହିଁ ନେଉ (ଚ,ଜ) । ୪୦-୧—ଗୁଆଳ, (ଘ) । ୪୨-୨—ବୋଦ ପାଗଳ (ଖ) । ୪୭-୨—ପାରକଲ (ଚ,ଜ) ।

ବେନି ଭାଇ ବେନିପାଖେ ଅଛନ୍ତି ।
ଘର ଭିତରୁ ବାହାର ଯୁବତୀ ।
କାହିଁ କି ତେଜି କାହ୍ନୁକୁ ଗୁଆଳ ।
ତୋତେ କି କଲା ମୋର ବନମାଳୀ ।
ମୋର ବାଳୁତ ପୁଅ ଲୋ କହାଇ ।
ହସି ଖେଳ ଲୋ ଅନ୍ୟ ଜାଣି ନାହିଁ ।୬୬।
ଆଜ ଘରୁ ଲୋ ନୋହୁଛି ବାହାର ।
କାହିଁ ବାଟେ ଲୋ ଗଲା ତୋର ପୁର ।
ମୋର ସହିବା ସତ ପ୍ରାୟେ ମଣୁ ।
ଦୋଷ ଦିଅ ଲୋ କାହିଁ ବଡ଼ପଣୁ ।
ଶୁଣି ଭୁରୁଣୁ ନ ଆସଇ ବଚନ ।
ମତେ ନନ୍ଦରାଣୀ ପଦ ତେସନ ।
ତହିଁ ଲାଜେ ମୁଁ ବାହୁଡ଼ି ଆଇଲି ।
କୃଷ୍ଣ ବାନ୍ଧିବା ଠାବରେ ହୋଇଲି ।
ମୋର ତନୟ ବନ୍ଧା ହୋଇଅଛି ।
ତାହା ଦେଖି ମୋ ନ ସ୍ଫୁରଇ କଣ୍ଠ ॥
ଫେଡ଼ି ଦେଇ କାହାକୁ ନ କହିଲି ।
ଲାଜେ ମୋହୋ ମୁଖେ ତୁନି ହୋଇଲି ।
ସାନବେଳହୁଁ ମାୟା ଅଗୋଚର ।
ତେଣୁ ନାମ ଅଟଇ ମାୟାଧର ।
ଯେକ ଗୋପୀୟେ ବୋଇଲା ବିଚାର ।
ତାର ସାନବେଳ କଥା ପଚାର ।
ଦିନେ ଯଶୋଦା କୋଳେ ଖେଳୁଥିଲା ।
ତାକୁ ଦେଖି ମୋ ଶରଧା ବଳିଲା ।
ମନେ ବିଚାର କଲି ତହିଁ ପୁଣି ।
ଧୂଳି ହୋଇଣଛନ୍ତି ଚକ୍ରପାଣି ।୭୬।
କାଖ କର ମୋ ଶରଧା ବଳିଲା ।
ମୋର କୁଚରେ ହସ୍ତ ପକାଇଲା ।

ମୃରଦଗକୁ ଶୃଙ୍ଖି ଅନୁସର ।
ମୁଖେ ଚୁମ୍ବନ ଦେଲା ଅଧର କରୁ ।
ମୋର ଅଙ୍ଗେ ପୀଡ଼ିଲା ପଞ୍ଚଶର ।
ଦେହ ହୋଇଲା ସାଭୁକ୍ୟ ବିକାର ।
ମୋତେ ଅନଙ୍ଗ ଜ୍ୱର କଲା ପୀଡ଼ା ।
ଛୋଟାବେଳହୁଁ କାହ୍ନୁ ଘରବୁଡ଼ା ।
ଯେକ ଗୋପୀୟେ ବୋଇଲା ସପାଛ ।
ମୋତେ ସବୁହୁଁ କଲା ବିପରୀତ ।୭୦।
ଦିନେ ଦେଖିଲି ଖେଳୁଛି ଦାଣ୍ଡର ।
ଧୂଳି ଝାଡ଼ି ମୁଁ ଧଇଲି କୋଳର ।
ଦିଗାମ୍ବର ସ୍ୱରୂପେ ବହେ ନାଳ ।
ହେମ କଣ୍ଠୀ ମଧ୍ୟେ ନଖଶାର୍ଦ୍ଦୂଳ ।
ବେଣୀ ଲମ୍ବଇ ହେଲେ ଜର ଜର ।
ନୀଳମଣି ଅଙ୍ଗେ ଧୂଳି ଧୂସର ।
କାଖ କରି ଘରକୁ ଘେନିଗଲି ।
ଘରେ ଲବଣୀ ସର ଭୁଞ୍ଜାଇଲି ।
ଭୁଞ୍ଜୁ ଭୁଞ୍ଜୁଣ ନିଦ୍ରାଗଲେ ଯହୁଁ ।
ନେଇ ପଲଙ୍କେ ଶୁଆଇଲି ତହୁଁ ।୭୫।
ମୁଁ ଗୋ କୋଳରେ ଘେନିଣ ଶୋଇଲି
ନିଦ୍ରାଗଲେ ଛାଡ଼ିଯିବ ବୋଇଲି ।
କୋଟି କନ୍ଦର୍ପ ମୂରତି ଧଇଲା ।
ବାଳ କୁମର ତରୁଣ ହୋଇଲା ।
ମୁଁ ଗୋ ହୋଇଲି ତାହାର ଅୟତ୍ତ ।
ମୋର ଅଙ୍ଗରୁ ହରିନେଲା ଚିତ୍ତ ।
ଚଉଷଠୀ ବନ୍ଧରେ ବିପରୀତ ।
ଯାହା ଶୁଣିଲା ନାହିଁ କର୍ଣ୍ଣ ପଥ ।
ତେତେ ପରିବନ୍ଧ କେହୁ ଜାଣିମ ।
କାମଦେବହିଁ ଜାଣି ନ ଜାଣିମ ।୮୦।

୮୯-୧—ଦିନନେ (ଢ,ଖ,ଘ) ।

ରତ୍ନ ସାର ମୁ ପିନ୍ଧଇ ବସନ ।
ଦେଖ ସେହି ବାଲସୂଅ ତେସନ ।
ଦେଖୁଥାଇଁ ମୁ ଗବଦବା ବସି ।
ସେତ କହଇ ଯେତେ କାଲେ ଅସି ।
ତାର ବାଲକାଳରୁ ଯେତେ ଭାବ ।
ଦେଖ ଥିଲେ କ ତାହା ପାସୋରିବ ।
ତାହା ଶୁଣି ଯେକ ଗୋପୀ ବୋଇଲା ।
ଆମ୍ଭ କଥା ତା ମନେ ନ ପଡ଼ଇ ।
ଆମ୍ଭ ମନ ଅନୁକ୍ଷଣେ ବଳଇ ।
ଯେ ତ ସବୁର ଧନ ଆଦିମୂଳ । ୮୫ ।
ଜଗନ୍ନାଥେ ତାହାଙ୍କୁ ବଡ କଲେ ।
ପ୍ରଭୁପଣହିଁ ତାଙ୍କ ହସ୍ତେ ଦେଲେ ।
ଏବେ ହୋଇଛି ତହୁଁ ପୂର୍ବକାର ।
ତାଙ୍କୁ ଯୁବତୀ ମିଳଛି ଅପାର ।
ରାଜା ମାତ୍ର ହୋଇଛି ବଡପଣ ।
ଆଉ ଅଛି କି ତାର ବ୍ରଜଗୁଣ ।
ତୁମ୍ଭେ କି ଯେମ୍ନ ମନରେ ପଡ଼ିବ ।
ତାଙ୍କୁ ନ ମିଳିଲେ ସିନା ଲୋଡ଼ିବ ।
ଏବେ ବେଭାରେ ଚତୁର ହୋଇଲା ।
ତହିଁ ଚତୁରୀ ନାରୀଙ୍କି ମୋହିଲା ।୯୦।
ଏବେ ନାଗର ଅଟଇ ଶ୍ରୀରଙ୍ଗ ।
ହୁଜେ ପଡ଼ିଲା ନାଗରୀଙ୍କ ସଙ୍ଗ ।

ତହିଁ ରସିକ ଯୁବତୀ ଅପାର ।
ରତ ଜାଣନ୍ତି ବିବିଧ ପ୍ରକାର ।
ତାଙ୍କୁ ନାନା ରସରେ ରସାଇଲେ ।
ଗୋପପୁର କଥା ପାସୋରାଇଲେ ।
ରାଜ ନାଏକ କନ୍ୟା ତହିଁ ପୁଣ ।
ନାନା ବେଶରେ ମୋହିଲେ ମୋହନ ।
ଅମ୍ଭେ ଯେତେ ହୋଇଲେ ଗଉଡୁଣୀ ।
ତାଙ୍କ ଭାବ ଜାଣିମା କାହିଁ ପୁଣି ।୯୫।
ତାଙ୍କ ସଙ୍ଗରେ ଅପୂର୍ବ ସୁନ୍ଦରୀ ।
ଖେଳ କଉତୁକରେ ମନହାରୀ ।
ଯାଙ୍କୁ ନାନା ରସପଣ ମିଳିବ ।
ସେ ଗୋ ଗୁଡପଣା କିସ କରିବ ।
ଯାଙ୍କୁ ମିଳିବ ଦ୍ରବ୍ୟ ଶାଳିଅନ୍ନ ।
ତାର ବଗଡ଼ା ଭାତେ ନାହିଁ ମନ ।
ଯାଙ୍କୁ ମିଳିବ ପଲଙ୍କ ସୁପାତ ।
ତାର ଭୂମି ଶଯ୍ୟାରେ କାହିଁ ମତ ।
ଯାଙ୍କୁ ମିଳିବ ଅମୂଲ୍ୟ ରତନ ।
ତାର ସଞ୍ଜୁକରେ ନାହିଁ ଯତନ ।୧୦୦।
ଯାଙ୍କୁ ମିଳିବ ପାଟ ଯେ ପତନୀ ।
ଆନ ବସନ ନ ରୁଚଇ ପୁଣି ।
ତାଙ୍କୁ ଅପୂର୍ବ କିସ ଦ୍ରବ୍ୟ ଅବା ।
ଦାସ ଦନାଇଁ ନିରନ୍ତରେ ସେବା ।୧୦୨।



# ତୃତୀୟ ଛାନ୍ଦ



ଯେଉଁ ଅନନ୍ତରେ ଗୋପୀଙ୍କ କଥା ।
ପାର୍ବତୀ ଆଗେ କହେ ପଶୁପଥା ।
ମଲ୍ଲିକା ସଙ୍ଗତେ ସହସ୍ରେ ଗୋଈ ।
ମେଳ ହୋଇଣ କୃଷ୍ଣଗୁଣ କହି ।
ତାଙ୍କ ମଧ୍ୟରେ ସୁନ୍ଦରୀ ମଲ୍ଲିକା ।
ସହସ୍ରେ ଗୋପୀରେ ଅଟେ ନାୟିକା ।
ବୋଲନ୍ତି ଶୁଣ ଗୋ ସମସ୍ତ ସଖି ।
ଛାଡ଼ିଣ ଗଲେ ବୃନ୍ଦାବନବାସୀ ।
ମଥୁରାପୁରେ କଂସ ନାଶ କଲେ ।
ଗୋପପୁର ଆମ୍ଭମାନ ତେଜିଲେ । ୫ ।
ସ୍ୱର୍ଗ ଦେବତାମାନଙ୍କ ଦୁହିତା ।
ତାହାଙ୍କୁ ଦେଖିଣ ହେଲେ ମୋହିତା ।
ଏମନ୍ତ ବୋଲିଣ ମଲ୍ଲିକା କହି ।
ଆମ୍ଭଙ୍କୁ ଛାଡ଼ି ରହିଲେ କହ୍ନାଇ ।
କେତେ ଆଶା ଥିଲା ନନ୍ଦପୁଅଙ୍କୁ ।
ପ୍ରୀତି କରିଥିଲେ ଦୁଃଖ ଦେବାକୁ ।
ମଥୁରାକୁ ଯାଇଁ ତେଣେ ରହିଲେ ।
ଦେଖା ନ ଦେଇ ଚିନ୍ତାରେ ମାଇଲେ ।
ତାହା ଶୁଣି ସଙ୍ଗ ଗୋପିକା କହି ।
କେତେ ସୁଖ କରିଥିଲେ ମାଧୋଇ ।୧୦।
ଅଷ୍ଟବରଷ ଏଥି ଲୀଳା କଲା ।
ପନ୍ଦରଦିନେ ଯୁଗ ଶଏ ଗଲା ।
ନ ଚଳଇ ଦେହ ଚରଣ ପୁଣି ।
ଭାଳିଣ ମରିବୁ ଗୋପ-ତରୁଣୀ ।

ହା ହା କୃଷ୍ଣ ବୋଲି କରେ ରୋଦନ ।
ଆର ଗୋପୀ ଉଠି ପ୍ରବୋଧେ ପୁଣ ।
ଜଣ ଜଣକରେ ରୋଦନ୍ତି ପୁଣି ।
ବାଠ ଘାଠକୁ ବାଉନ ତରୁଣୀ ।
ମଲ୍ଲିକା ବୋଲନ୍ତି ଶୁଣ ସମସ୍ତେ ।
ମାଧୋଇ ଚିନ୍ତାରେ ମରିବା ନିଶ୍ଚେ ।୧୫।
ସଙ୍ଗ କରିଣ ପଥେ ଛାଡ଼ିଗଲେ ।
ଦିନ ଗୋଟିକ ଯୁଗ ପ୍ରାୟେ କଲେ ।
ଯେତେ ବୋଲି ମଲ୍ଲିକା ଭୂମି ହେଲା ।
କଣ୍ଠାଇଁ ନିରାଶ କଲି ବୋଇଲା ।
ବେନି ନେତ୍ରରୁ ଅଶ୍ରୁଜଳ ବହି ।
ସଙ୍ଗ ଗୋପୀମାନେ ତାଙ୍କୁ ବୁଝାଇ ।
ଯେକ ଗୋପୀଏ ବୋଲେ ଶୁଣ ସଖି ।
ଭାଳି ମରିବା ସିନା ହୋଇ ଦୁଖୀ ।
ସେ ଗୋ ପୁରୁଷ ଜାତି ଦୁଃସଙ୍ଗମତି ।
ପୁଷ୍ପ ଚୁମ୍ବିବା ଯାଏ ଭଣ୍ଡୁଥାନ୍ତି । ୨୦ ।
ହଠ ପୁରୁଷମାନେ ସେହିମତି ।
କାର୍ଯ୍ୟ ପାଇବାଯାଏ କହୁଥାନ୍ତି ।
କାର୍ଯ୍ୟ ପାଇଲେ ନ ଦିଅନ୍ତି ଉତ୍ତର ।
କୃଷ୍ଣ ସେହିରୂପେ ହେଲେ ଅନ୍ତର ।
ଯେକ ଗୋପୀ କଥା ଶୁଣି ଆରେକ ।
ଆଗସର କହିଲା କଥାଯେକ ।
ତୁମ୍ଭେ ସପତଣୀ କଥା ନ ପାଡ଼ ।
ନିଶ୍ଚେ ମରିବା ଯେବେ ଅନ୍ନ ଛାଡ଼ ।

୨-୨—କୃଷ୍ଣ କଥା (ଘ) ୮-୯—କେତେ ଆଶା (ଙ) । ୧୧-୨—ପନ୍ଦରଦିନ ଯୁଗ ଶତ ହେବ (ଚ) ।
୨ ଗୋପୀକଥା

ଗୃହଅଡ଼େ ଶୁଭୁ ଅପକୀରତ ।
କୃଷ୍ଣ ଅଂଶ ମଲେ ଗୋପଯୁବତୀ ।୨୫।
ରାଜା ପରଜା ସକଳେ ଜାଣନ୍ତୁ ।
ମଧୁପୁର ନାରୀ ଚିନ୍ତା କରନ୍ତୁ ।
ସ୍ତ୍ରୀରି ହତ୍ୟା ପାତକ କୃଷ୍ଣ ପାଉ ।
ତାର ପୁଣ୍ୟ ଯେତେକ କ୍ଷୟ ଯାଉ ।
ଆଗେ ପ୍ରୀତି କରଣ ସୁଖ ହେଲା ।
ପଛେ ତାଙ୍କ ସକାଶେ ପ୍ରାଣ ଗଲା ।
ତହୁଁ ରାଗେଣ ଗୋପୀଏ ବୋଇଲା ।
ସେ ଗୋ ନ ପୋଷି ଅମ୍ଭଙ୍କୁ ନାଶିଲା ।
ଜଗତରେ ଯେଣୁରୁ ଫେରଅଛୁ ।
ଗୋପୀ କୃଷ୍ଣଙ୍କୁ ଯେନ ମାଉଛନ୍ତି ।୩୦।
ମୁଁ ଗୋ କଥାଏ କହିବ ପରାଣ ।
ତୁମ୍ଭେ ଶ୍ରୀକୃଷ୍ଣ କଥା ଗୋ ନ ଜାଣ ।
କ୍ଷୀର ଦେବାକୁ ପୂତନା ଅଇଲା ।
ବାଳ କୁମରକୁ କୋଳେ ଧଇଲା ।
ଶ୍ରଦ୍ଧା କରି ଦେଉଛି କ୍ଷୀର ପାନ ।
ଦୁଧ ସଙ୍ଗତେ ଶୋଷିଲା ପରାଣ ।
ତାକୁ ସ୍ତ୍ରୀରିହତ୍ୟାହିଁ ନ ଲାଗିଲା ।
ଆଉ ସମସ୍ତେ ବୋଲେ ଭଲ କଲା ।
ପୁଣି କରିଡ଼ିଲା ଷଣ୍ଢ ଗୋଷ୍ଠାଏ ।
ଗୋରୁ ବଧ ଲାଗିଲା କଉଁଠାଏ ।୩୫।
ସାନବେଳହୁଁ ମାରି ଅହାଙ୍କୁଛି । ୯
ତାର ପାପକୁ କାହିଁ ଭୟେ ଅଛୁ ।
ଜୀଉଁ ଜୀଉଁ ସେ ଅମ୍ଭଙ୍କୁ ଲେଛିଲା ।
ଅମ୍ଭେ ମଲେହେଁ ତାର କିସ ଗଲା ।
ଏକ ଗୋପୀଏ ବୋଲେ ଆଗସର ।
ବୁଦ୍ଧି ହରାଇ ମରୁଥାଇଁ ଝୁର ।

ଅମ୍ଭେ ପୂର୍ବରେ କରିଛୁଁ ପାତକ ।
ଗୋରୁ ବ୍ରାହ୍ମଣ ମାରିଛୁଁ ଅନେକ ।
କାହା ଲୁଥା ଛଡ଼ାଇ ଦୂର କଲୁଁ ।
ଭୋକୀ ଭୁଞ୍ଜିବା ଅନ୍ନ ଫିଙ୍ଗିଦେଲୁ ।୪୦।
ଶିବ ଥାଳରେ ଗରଳ ଭରିଲୁଁ ।
ବିଷ୍ଣୁ ପ୍ରତିମା ଅନଳେ ଦହିଲୁ ।
ଅମ୍ଭେ ବଡ଼ ଅଭାଗୀ ଗୋପନାରୀ ।
ତେଣୁ ଉପେକ୍ଷି ଗଲେ ନରହରି ।
ସଖି ଅଛୁଟି କି ତୁମ୍ଭ ମନର ।
ଦିନେ ଯାହା କଲେ କୁଞ୍ଜବନର ।
ନିଶାକାଳେ ମୁରଲୀ ବଜାଇଲେ ।
ସବୁ ଗୋପୀଙ୍କି ବାଇ କରାଇଲେ ।
ଯେତେ ରଙ୍ଗ କଲେ କୁଞ୍ଜବନର ।
ବୃନ୍ଦାବତୀ ଯେନ ହେଲେ ଅନ୍ତର ।୪୫।
ପାଦପଦ୍ମ ଚିତ୍ତ ଭେଟ ପାଇଲୁଁ ।
ତାଙ୍କ ଅଧରୁ ଅମୃତ ଖାଇଲୁଁ ।
ଛାଡ଼ ନ ଯାଏ ମନରୁ ସେ କଥା ।
କୁନ୍ତ ମାଇଲେ ଯେସନେ କରେ ବ୍ୟଥା ।
ଏକ ଗୋପୀଏ ବୋଇଲା ବଚର ।
ଅମ୍ଭ ହୃଦୟ ବ୍ୟଥା ଗୋ ଅପାର ।
ତହୁଁ ରାଗେଣ ଗୋପୀଏ ବୋଇଲା ।
ପଦ୍ମ ଭ୍ରମର ପ୍ରୀତି ପ୍ରାୟେ ହେଲା ।
ଯାହା ସଙ୍ଗେ କଲୁଁ ଯଉଁ ପୀରତି ।
ନଷ୍ଟେ କାଳ ହୋଇଲା ସେହିମତି ॥
ସେ ଗୋ ମରଥିଲେ ଭଲ ହୁଅନ୍ତା ।
ଏତେ ଦୁଖ କିମ୍ପା ଦେହ ସହନ୍ତା ।
ଗଛ ଭାଜିଲା ମାଡ଼ ନ ପଡ଼ିଲା ।
ପୋଡ଼ୁ ଶଗଡ଼ହିଁ ମାଡ଼ ନ ଗଲା ।

୩୩-୨—କ୍ଷୀର ସଙ୍ଗତେ (ଢ,କ,) । ୪୧—ମଲେ ବରିଚ ଗୋପୀଏ ବୋଇଲ । ସେ ଗୋ ନ ପୋଷି ଅମ୍ଭଙ୍କୁ ନାଶିଲା ।

ତୃଣ ଉଡ଼ାଇ ନେଇ ନ ଗଲେ ।
ଅନଗଳ ସେଥିରୁ ମୁକୁଳିଲେ ।
କାଳୀ ଦଂସିଲେ ଯାଇଥାନ୍ତା ସର ।
ଆମ୍ଭେ ମରନ୍ତୁ ସେତେ କଷ୍ଟ ଭାର ।
ଏମନ୍ତ ଗୋପୀଏ ବୋଇଲେ ଭରତ ।
ତାଙ୍କ କଷ୍ଟ ଗାଳଦଅ ସଙ୍ଗାତ ।
କେତେଠାରୁ ରକ୍ଷି ନାହିଁ ଆମ୍ଭନ୍ତୁ ।
ତାର ଅରଣ୍ଟି ପଡ଼ୁ ଆମ୍ଭ ମାଥ ।
ତାର ପାସୋରିବା ଗୁଣ ସେତେକ ।
ଗୋପପୁରେ କରଅଛୁ ତେତେକ ।
ସର୍ପ ଗିଳନ୍ତେ ପୁଅଙ୍କୁ ରଖିଲା ।
ଆଉ କେତେ ସଙ୍କଟୁ ନ ରଖିଲା ।
ଇନ୍ଦ୍ର ବରଷାହୁଁ ରଖିଲେ ଯେମନ୍ତ ।
କାହା ବେଳେ କର ନୋହେ ତେମନ୍ତ ।
ବନ ପୋଡ଼ିଲେ ସମସ୍ତେ ମରନ୍ତୁ ।
ନିଆଁ ଗିଳି ରଖିଲେ ସର୍ବ ଜନ୍ତୁ ।
ନନ୍ଦ ଯମୁନା ଜଳେ ବୁଡ଼ି ମଲା ।
ମଲା ଜୀଅଇ ପୁଣି ଆଣି ଆଣି ଦେଲା ।
ଆଉ କରଛି ସେତେ ଉପକାର ।
ଗୋପପୁର ଯାକ ତାର କୋଯୁର ।
ତାଙ୍କୁ କେମନ୍ତ କରି ମୁକୁଳିବା ।
ଅଗ୍ନି ଲୁହାଇ ଉଦରେ ପଶିବା ।
ପୋଡ଼ୁ ପୋଡ଼ୁ ଏ ଜୀବନ ଲେଉଟିବା ।
ଡେଇଁ ଯମୁନା ଜଳରେ ଝାସିବା ।
ତାର ଉପରେ ପଛେ କଥା ଥାଉ ।
ପରମାନନ୍ଦ ଲାଗି ଦେହ ଯାଉ ।
ଯେତେ କହିଲେ ସଖି ଲୋ ଉତ୍ତର ।
ଯାନେ ପଡ଼ିଛୁ ସଖି ପାରି କର ।
ଏମନ୍ତ ଗୋପୀ ବୋଇଲା ବୁଦ୍ଧି ଏକ ।
ଲହ କୃଷ୍ଣଙ୍କୁ ଗୃହ ଦେବା ଲେଖ ।

ଆମ୍ଭେ ସତେ ଯେବେ ତାଙ୍କ ସେବକ ।
ଆସି ଦେଖନ୍ତି ହୋଇଯିବେ ବାରେକ ।
ଆମ୍ଭେ ଆଶା କରିଅଛୁଁ ଅନେକ ।
ଯେସନ୍ତେ ଗଗନ ନୀରକୁ ଚାତକ ।
ତୁମ୍ଭ ଅଧରୁ ଅମୃତ ପିଅଅ ।
ମରୁଅଛୁଁ ସର୍ବ ଗୋପୀ ଜୀଅଅ ।
ତୁମ୍ଭ ଲାବଣ୍ୟ କନ୍ଦର୍ପ ମୂରତି ।
ବାରେ ଦେଖିଲେ ହୋଇବୁ ମୁକତି ।
ତୁମ୍ଭେ ଦୀନ ଜନ ଆଶା ବିଶ୍ରାମ ।
ଜୀବ ଧରି ରଖିଛୁଁ ତୁମ୍ଭ ନାମ ।
ତୁମ୍ଭେ ବାରେ ନଇଲେ ନନ୍ଦବଛ ।
ନିଶ୍ଚେ ମଲୁଣି ଆମ୍ଭଙ୍କୁ ମୁରୁଛି ।
ନାମ ନ ବୋଲାଇବ ଗୋପୀନାଥ ।
ଯେତେ ବୋଲିବ ସାଉରି ମନ୍ମଥ ।
ତୁମ୍ଭେ ମଥୁରାନାଥ ବୋଲାଇବ ।
ଆମ୍ଭ ନାମ ଯେଲେ ଭଲ ନୋହିବ ॥
ଏମନ୍ତ ଗୋପୀ ବୋଇଲା ନୋହେ ବଛି ।
ମୋତେ ଭଲ ବୁଦ୍ଧିଏ ଦିଶୁଅଛି ।
ଗୋପପୁର ଯାକ ଭୁଣ୍ଡ ହୋଇବା ।
କରେ କାଉଁରୀ ନଉଡ଼ି ଧରିବା ।
ମଥୁରାକୁ ବୋଲି ଯିବା ଯାଇଁ ।
ଯାଇଁ କଂସକେ ପଶିବା ଧଂସାଇ ।
ତାଙ୍କ ସନ୍ନିଧେ ହୋଇବା ପ୍ରବେଶ ।
ତାଙ୍କୁ ବୋଲିବା କୃଷ୍ଣ ଗୋପେ ଆସ ।
ଯେବେ ନ ଛାଡ଼ିବେ ମଥୁରାବତୀ ।
ଗୋଳ କରି ଆଣିମା ଶିଖିପତି ।
ସତ୍ୟ କଲେ ଲୋକେ ନ ବୋଲିବେ କି ।
ଗୋପୀନାଥଙ୍କୁ ଗୋପୀ ନ ନେବେକି ।
ମୋତେ ଏହି ଭଲ ବୁଦ୍ଧି ଦିଶୁଛି ।
ଏମନ୍ତ ଗୋପୀଏ ବୋଲେ ନୋହେ କଛି

୬୯-୨—ବାରେ ଦେଖିଲେ ହେବୁ ମୋକ୍ଷଗତି (ବ,ତ) ।

ତାଙ୍କୁ ସେ ବେଲ ପ୍ରାଏ ମଣିଛୁ କ ।
ଗୋପପୁରେ ଯେ ଥିଲେ ବଛା ରଖି ।
ସେ ଥି ହୋଇଥିଲେ ନନ୍ଦକୁମର ।
ଯାହା କର ସେ ଅଯୁତ୍ର ଅମର ।
ସେବେ ହୋଇଛୁ ରାଜାଧିରାଜନ ।
ତାଙ୍କୁ ଦେଖିବାକୁ କାହିଁ ଭାଜନ ।୮୫।
ଜଗନ୍ନାଥେ ଏମନ୍ତ କରବେନ ।
ତାହା ଦେଖିବା ବେନ ଚକ୍ଷୁ ଯେନ ।
ଆଜ ଯିବନ ମଥୁରା ନବର ।
କୃଷ୍ଣ ସଙ୍ଗେ ଅସିବେ ଗୋପପୁର ।
ତାକୁ ରୁକ୍ମିଣି କଥା ନ କହିବା ।
ଯେବେ ସେ କହିଲେ ନ ଶୁଣିମା ।
ଗୋପୀ ସେସନ ବୋଲି ସଙ୍ଗଜନ ।
ତହିଁ ଶୁଭିଲା କୋକିଲର ସ୍ୱନ ।
ସେହିଁ ବୋଲନ୍ତ ବରଜ ସୁନ୍ଦରୀ ।
ଧିକ ନୋହୁଁ ଅମ୍ଭେ ତୋର ଭଗାରୀ ॥
ଅମ୍ଭେ ବଡ ଅଭାଗୀ ଗୋପନାରୀ !
ତେଣୁ ଉପେକ୍ଷି ଗଲେ ନରହରି ।
ସେବେ ଚଳ ଯା ମଥୁରା ନବର ।
କୃଷ୍ଣ ଅଗେ କର ଧ୍ୱନି ସୁସ୍ୱର ।

ତାଙ୍କୁ କନ୍ଦର୍ପ ବାଧା ଲଗାଇବୁ ।
ଆଣି ପାରିଲେ ତୋତେ ସେବିଥିବୁ ।
ଖାଇବାକୁ ଘୀରରେ ଖଣ୍ଡ ଦେବୁଁ ।
ଯେବେ କୃଷ୍ଣଙ୍କୁ ଆଣି ଦେଖାଇବୁ ।
ଶୁଣି ମଉନ ହୋଇଲା କୋକିଳ ।
ଚନ୍ଦ୍ର ଉଦୟେ ଦେଖିଣ ବିକଳ ।୯୫।
ତାଙ୍କୁ ଗୋପୀଏ କରନ୍ତି ଦଇନ ।
ତୋତେ ଦେଖିଲେ ଦୁଃଖ ହୋଏ ହାଣି ।
ପୂର୍ବ ଗଲା କଥା ମନେ ପଡଇ ।
ଅମ୍ଭ ହାଡ଼ରୁ ମାଉଁସ ଝଡ଼ଇ ।
ଆଜ ସେତେ ହୋଇ ଉଦେ ନୋହିବୁ ।
ଅମ୍ଭେ ମଲେ ଭୁ କି ସୁଖ ପାଇବୁ ।
ମନେ ବିଚାର ଗୋପୀଏ ବୋଇଲା ।
କୃଷ୍ଣ ଏଥୁ ଗଲା ଭଲ ହୋଇଲା ।
ଥାନ ବିଶେଷେ ଦ୍ରବ୍ୟ ପୂଜା ପାଇ ।
ଯଉଁ ଥାନେ ଯଉଁ ଦ୍ରବ୍ୟ ବିକାଇ ॥
ଏଥି ଥିଲେ ଦୁଅନ୍ତା ମହାଖୁଡ଼ି ।
ଏବେ ହୋଇଲେ ସବୁର ଠାକୁର ।
ତାଙ୍କ ପଦ୍ମ ପାଦରେ ଦେଇ ଚିତ୍ତ ।
ଦାସ ହନାଇ ସେବେ ଗୋପୀନାଥ ।୧୦୨।



୯୪-୨—ଷୋହାରି (କ) । ୧୦୦-୨—ନିକଟ (ଖ,ଗ,ଘ,ଚ,ଛ,ଜ,ଝ,) ।

# ଚତୁର୍ଥ ଛାନ୍ଦ

ଏଥୁଁ ଅନନ୍ତରେ ଗୋପୀଏ ପୁଣି ।
କ୍ଷପ କଲେ ହେ କହ୍ନ ଶୂଳପାଣି ।
ଗଉରୀ ବଚନ ଶୁଣିଣ ହର ।
ଗୋପୀମାନଙ୍କର ଯେତେ ବିସ୍ତର ।
ମାଳତୀ ସଙ୍ଗରେ ସହସ୍ରେ ଗୋଈ ।
ସମସ୍ତ କଳାବନ୍ତି ଅଟେ ଦେଖି ।
ମାଳତୀ ନାୟିକା ବ୍ରଜସୁନ୍ଦରୀ ।
ସମସ୍ତଙ୍କୁ ଘେନ ଭୁଲେଣି କରି ।
ବୋଲନ୍ତି ଛାଡ଼ିଣ ଗଲେ ମାଧୋଇ ।
ଗୋପପୁରରୁ ଶିରୀ ଘେନ ଯାଇ । ୫ ।
ମଥୁରାପୁର ଶୋଭା ଦିଶେ ଭଲେ ।
କୁବୁଜା ସୁନ୍ଦର ହେବାରୁ ଭଲେ ।
ଲମ୍ବ ବୃକ୍ଷ ହେଲେ ଗୋପ ତରୁଣୀ ।
ନନ୍ଦ ଯଶୋଦା ଗୋ କୋଠଲା ପାଣି ।
ଗୋଧନ ବାଛୁରୀ ବରେନ୍ଧା ହେଲେ ।
ଦୁଧ ଲବଣୀ ଲୁଣି ପାଣି ଭୁଲେ ।
ବଉଳ ଅଯୈଁଲା ସେ ନାଗେଶ୍ୱର ।
ଫୁଟିଣ ତଳେ ପଡ଼ିଲେ ସକଳ ।
ଯମୁନା ଥରେ ଯିବାକୁ ନୋହିଲା ।
ଝୁରନ୍ତେ ଦେହରୁ ରକତ ଗଲା ।୧୦।
ହସ୍ତରୁ କଙ୍କଣ ପଡ଼ିଲା ଗଳ ।
ଗୋଡ଼ ପାହୁଡ଼ ଶବଦ ନ କର ।
ଦେହରେ ଲୁଗା ସେ ଗରୁ ହୋଇଲା ।
ତରୁ ଉପୁଡ଼ି ଯେସନେ ପଡ଼ିଲା ।
ସେହି ରୂପେ ହେଲୁଁ ଗୋପସୁନ୍ଦରୀ ।
ରାତ୍ର ଦିବସ ନ ସରଇ ଝୁରି ।
କେଣେ ଗଲେ ପୁଣି କାହିଁ ଦେଖିବା ।
ଯୁବା ସମୟ କେମନ୍ତେ ଧରିବା ।
ତାହା ଶୁଣି ଏକ ଗୋପୀଏ କହି ।
ଅରତ ହେଲେ କ ହୋଇବ ସହି ॥
କ୍ଷୀର ଆଉଟିଣ ଦଧି ବସାଇ ।
ବିଷ ଅମ୍ଳିଲ ରସ ତହିଁ ଦେଇ ।
ଖୁଆଦଣ୍ଡ ଘେନ ମନ୍ଥିଲେ ପୁଣ ।
ଲବଣୀ ଯେସନେ ଉପୁଜେ ଜାଣ ।
ସେହି ରୂପେ କଥା ହୋଇଲା ଆସି ।
ବାଛି ଘେନ ଗଲେ ମଥୁରାବାସୀ ।
ତାହା ଶୁଣି ଏକ ଗୋପୀ ବୋଇଲା ।
କଂସ ମାରି ମଥୁରା ରାଜା ହେଲା ।
ଥିଲା ଶବରଣୀ ହାତେ ମାଣିକ୍ୟ ।
ତାହା ଚାହିଁ ଘେନଗଲା ଗୁଣିକ । ୨୦ ।
ଯେତେ ଷାମୁକୁଁ ବାହାର ମୁକୁତା ।
କାଳେ ଭୋଗ କଲେ ତାହା ଦେବତା ।
ଗୁଣ ଘୋଷିଲେ ଗ୍ୟାନ ନ ସରିବ ।
ଜୀବ ଥିଲେ କ ଯାସୋବ ହୋଇବ ।
ଗୁଣ ଘୋଷୁ ଘୋଷୁ ଗ୍ୟାନ ହୋଇଲା ।
ଏକ ଗୋପୀଏ ଥାଇଣ ବୋଇଲା ।
ଯାହା ମହିମା ଦେବେ ଅଗୋଚର ।
ତାଙ୍କୁ ବିସ୍ତର କେମନ୍ତ ପ୍ରକାର ।
ଯାର ମହିମା ଦେବରେ ଦୁର୍ଲ୍ଲଭ ।
କାହିଁ ପ୍ରାପତ ଆମ୍ଭଙ୍କୁ ସୁଲଭ । ୨୫ ।

ଭାବ ଭୁଞ୍ଜିବା ପାଇଁ ଜନମ ।
କାହାବେଳେ କର ହୋ ଏ ପ୍ରେମ କର୍ମ ।
ଭାଗ୍ୟ ଯେତେ ଧନ ଥିଲା ଆମ୍ଭର ।
କୃଷ୍ଣ ଯେବେ ବୁଲୁଥିଲୁ ସଙ୍ଗର ।
ଯେବେ କେ ଅବା ଆମ୍ଭଙ୍କୁ ରଖିବ ।
ଆମ୍ଭ ବିରହ ଦୁଃଖ ଉପେକ୍ଷିବ ।
ଏତେ ବୋଲିଣ କରନ୍ତି ବିଚାର ।
ପୁଣି ମାଲତୀ ମଣ୍ଡନ ପ୍ରକାର ।
ହୃଦ-ପଦ୍ମରେ ଚନ୍ଦ୍ର ନାରାୟଣ ।
ପ୍ରଭୁ ଏ ଜନ୍ମକୁ କର କାରଣ ।
ମୁଖ ଦର୍ଶନ ପାଇ ପ୍ରାଣ ଯାଉ ।
ଗୋପ-ନାରୀଙ୍କଠାରେ ଦୟା ହୋଉ ।
ଯେତେ ବୋଲି କରନ୍ତି ମନେ ଧ୍ୟାନ ।
ଯହୁଁ ସବୁଙ୍କର ମନ ପ୍ରସନ୍ନ ।
ଏକ ଗୋପୀ ବୋଇଲା ଶୁଣ ସଖି ।
ଦିନେ ମୋ ପୁରେ ବିଜେ ଦାଶରଥି ।
ମୁଁ ଯେ ଭୋଜନେ ବସିଅଛି ପୁଣ ।
ମୋତେ ଦେଖିଣ ବୋଇଲେ ବଚନ ।
କିସ ଖାଉଛ ଗୋ ପ୍ରାଣସଜନ ।
ଆମ୍ଭେ କାଲିହୁଁ ଉପବାସେ ପୁଣି ।
କାଲି ଜନନୀ ମ.ଇଲେ ଆମ୍ଭଙ୍କୁ ।
ଆମ୍ଭେ ରୁଷି ଗଲୁ କୁଞ୍ଜବନକୁ ।
ତହିଁ କାହାକୁ ନ ଦେଖି ରାତ୍ରରେ ।
ଆମ୍ଭେ ଶୋଇଲୁ ବଜନ୍ତ ତଳରେ ।
ହେଣୁ କ୍ଷୁଧା କରୁଛି ଆମ୍ଭ ଅଙ୍ଗ ।
ସର ଲବଣୀ ଆଣି ଦିଅ ବେଗ ।
ଶୁଣି ବଚନ କରି ମୁଁ ଉଠିଲି ।
ଛେନା ଲବଣୀ ସର ଆଣି ଦେଲି ।
ବେଗେ ଭୋଜନ ସାରି ନନ୍ଦସୁତ ।
ମୋତେ ବୋଇଲେ ଶୁଣ ରେ ସଙ୍ଗାତ ॥
ଆମ୍ଭ ଶୟନ ଆଜ ତୁମ୍ଭ ପୁରେ ।
ଯେତେ ବୋଲିଣ ପଲଙ୍କ ଉପରେ ।
ଯାଇଁ ବଜସ୍ତେ କଲେ ଦେବହର ।
ମୋତେ ବୋଇଲେ ଆସ ବେଗ କରି ।
ତୁ ଗୋ ସୁରଭି ରସ ଦିଅ ବେଗେ ।
ଏତେ ବୋଲି ଧଇଲେ ମୋତେ ବେଗେ ।
ମୁଁ ଯେ ହୋଇଲି ତାଙ୍କଠାରେ ମୋହି ।
ନାନା ପ୍ରବନ୍ଧେ କଲେ ରତି ସେହି ।
ତହୁଁ ବେଗେଣ ଚଳି କେଣେ ଗଲେ ।
ଦେଖିବାକୁ ସ୍ୱପନ ସେହି ହେଲେ ।
ଏକ ଜଣ ଗୋପୀ ଶୁଣି ବୋଇଲା ।
ବଡ ତରକ ଜାଣେ ନନ୍ଦବଳା ।
ଦିନେ ମୋର ପୁରେ ବିଜେ ଶ୍ରୀରଙ୍ଗ ।
ବେଗେ ଧରିଣ କଲେ ରତିରଙ୍ଗ ।
ରତି ସରନ୍ତେ ପିନ୍ଧିଲି ବସନ ।
ମୋର ପୁରକୁ ଚଳିଲେ ମୋହନ ।
ତାହା ଶୁଣି ଏକ ଗୋପୀ ବୋଇଲା ।
ତାଙ୍କ କଥା ମୋ ମନରେ ପଡିଲା ।
ଦିନେ ଯମୁନା ଗଲି ମୁଁ ଗାଧୋଇ ।
ମୋତେ ବାଟରେ ଦେଖିଲେ ମାଧୋଇ ॥
କି ଗୋ ସୁନ୍ଦରୀ କେଣିକି ଯାଉଛ ।
ଆମ୍ଭଠାରେ କିମ୍ପା ଦୁଃଖ କରୁଛ ।
ଆସ ଆସ ଗୋ ଯିବା କୁଞ୍ଜବନ ।
ଆଜ ଭେଟ ପଡ଼ିଛି ଅଯୋଗେଣ ।
ମାୟା ମୋହନୀ ଜାଣେ ନନ୍ଦବଳା ।
ମୋର ଚିତ୍ତ ଛଳିଣ ମନ ହୋରି ।
ମୋର ହସ୍ତ ଧରିଣ ଗୋପୀନାଥ ।
କୁଞ୍ଜବନେ ଯାଇଁ ହେଲେ ପ୍ରବେଶ ।

ନାନା ବନ୍ଧେ କଲେ ଅତି ସୁରତ ।
ତାର ପାସୋର ନୁହଇ ପୀରତି ।
କୁଞ୍ଜବନରୁ ମୁଁ ଅଇଲି ଖରେ ।
କୃଷ୍ଣ ଯେବେ ମିଳିଲେ ଯାଇଁ ଘରେ।
ତାହା ଶୁଣି ବୋଇଲା ଯେକ ଗୋପୀ ।
ଏବେ ଘରେ ମୁଁ ପଲଙ୍କେ ଶୋଇଛି ।
ଯାଇଁ ମିଳିଲେ ନନ୍ଦବର କାହ୍ନୁ ।
ମୋର ପଲଙ୍କେ ବସି ଧରେ ବେଣୁ ।
ବେନି ଭୁଜ ଧରିଲେ ବେନି ହସ୍ତେ ।
ମୋତେ ବିବସନ କଲେ ତୁରିତେ ।
ରତି କଲନ୍ତେ ମୋତେ ନନ୍ଦନାନ ।
ନିଦ୍ରା ଭେଙ୍ଗ ଉଠିଲି ମୁଁ ବହନ ।
ମୋତେ କୋଳେ ବସାଇ ଚୁମ୍ବ ଦେଲେ
ମନ ସନ୍ତୋଷେ ରତିରସ କଲେ ।
ତାଙ୍କ ସଙ୍ଗେ ମୋର ଭାବ ପୀରତି ।
ମୋତେ ମୁକ୍ତାମାଳ ଦେଲେ ଯାଚି ।
ସେହିଦିନୁ ମୁଁ ସନ୍ତୋଷ ହୋଇଲି ।
ତାଙ୍କ ସଙ୍ଗତେ ସେ ରାତ୍ର ବଞ୍ଚିଲି ।
ସେ ଯେ ସେହିଦିନୁ ମୋତେ ସପନ ।
ମୁଁ ଯେ ଦାଣ୍ଡ ହାଟରେ ପ୍ରତିଦିନ ।
ତାଙ୍କୁ ଖୋଜିଲେ ନ ପାଇଲି ଅଜୁ ।
ସେ ଯେ ପ୍ରେମନ୍ତ ରୂପ ମହାବାହୁ ।
ତାହା ଶୁଣି ଯେକ ଗୋପୀ ବୋଇଲା।
ସେ ଯେ ଦାରୁଣ ଦୁଃଖ ଦେଇଗଲା ।
ଅମ୍ଭଠାରେ ତାର ଯେତେ ସେନେହ ।
ତେଜି ମଥୁରା ଗଲେ ଦେବରାଜ ।
ସେ ଗୋ ବୋଲାନ୍ତି ଦେବଙ୍କ ଠାକୁର
ଥୋଇ ଅମ୍ଭଙ୍କୁ ଗଲେ ଗୋପପୁର ।
ଯେତେ ପୀରତି କଲେ ତେତେ ଦୂର ।
ଯେମନ୍ତେ ପଦ୍ମରେ ମରଇ ଭ୍ରମର ।
ଯେମନ୍ତେ ତୃଷିତ ଆଶ କରେ ଗାଈ ।
ଧନ କୃପଣ ଯେସନେ ସଞ୍ଚଇ ।
ମୀତ ସ୍ନେହରେ ଯେମନ୍ତେ ବଢ଼ପଣ ।
ପିତୃ ସନ୍ତୋଷେ ଯେସନେ ତର୍ପଣ ।
କୁଳ ସ୍ତ୍ରୀଙ୍କୁ ଯେସନେ କରେ ଲଜ୍ୟା
ଅନ୍ୟ ପୁରୁଷେ ନୁହଇ ଭାଜନା ।
ଯୁବା ସ୍ତ୍ରୀଙ୍କ ଖଡ଼ୁକର ପୁଣ ।
ଯେମନ୍ତେ ପୁରୁଷ ବିଦେଶେ ଗମନ ।
କ୍ଷୀର ନୀର ପୀରତି ଜାଣେ ଯେକ ।
ପୁଣି ଉଭୁର ଅଗ୍ନିରେ ସମ୍ଭୂତ ।
ନୀର ଥୋଇଣ କ୍ଷୀର ନାଶ ଯାଇ ।
ପୁଣି ତେସନ ପ୍ରାଏ ମୁଁ ମଣଇ ।
ସେହିରୂପେ ହରି ହେଲେ ଅନ୍ତର ।
ଅମ୍ଭ ମନ ଯେ ହଉଛି ବିକଳ ।
ତାହା ଶୁଣି ବୋଲଇ ଏକ ଗୋପୀ ।
ସେ ଗୋ ମଥୁରା ନାରୀ ବଡ଼ ତପୀ ।
ଗନ୍ଧ ଚନ୍ଦନ ଦେଇଣ କୁବୁଜୀ ।
ଭେଟି ହୋଇଣ ସେ ପାଦରେ ଭଜି ।
ଅମ୍ଭ ଅଭାଗ୍ୟବନ୍ତ ଯେତେ ନାରୀ ।
ତେଣୁ ଉପେଖି ଗଲେ ଦଇତାରି ।
ଏବେ ଏମନ୍ତ କଲେ ବନମାଳୀ ।
ନିଶାଖଣ୍ଡରେ ମୋର ପୁରେ ମିଳି ।
ମୁଁ ଗୋ ବାହାରେ କରଇ ଶୟନ ।
ଯାଇଁ ମିଳିଲେ ମୋର ପାଶେ ପୁଣ ।
ମୋତେ ବୋଲନ୍ତି ମଧୁର ବଚନ ।
କ ଗୋ ଭୂମିରେ କଷ୍ଟାଇ ଶୟନ ।

୫୫-୧—ରତ ସୁରତ (ଖ,ଗ,ଛ,ଜ,)।

ତୁମ୍ଭେ ବଡ ଦୟାଳୁ ବୋଲି ଜାଣି ।
ଅମ୍ଭେ ଆସିଛୁ କିଛି ମାଗି ପୁଣି ।
ତୁମ୍ଭେ ଦେବ କି ନ ଦେବ ଆମ୍ଭରେ ।
ଅମ୍ଭେ ଆଶା କରିଅଛୁ ତୁମ୍ଭରେ । ୮୫ ।
ଏତେ କହି ମୋତେ ଯାଇଁ ଧଇଲେ ।
ଭାବ ପୁରିତ ରତ୍ନ ବନ୍ଦେ କଲେ ।
ମୋର ମନ ମୋହିଲେ ବେନିପ୍ରାଣି ।
ନିଶି ରଜନୀ ବକ୍ଷେ ମୋତେ ଘେନ ।
ନିଶି ପାଇଲି ମୋ ପାଶୁଁ ଅଇଲେ ।
ଏବେ ସେ କଥାମାନ ପାସୋରିଲେ ।
ତାଙ୍କୁ ଦେଖିବା ଆଉ କିସ ବେଳେ ।
ସତେ ଗୋପକୁ ଆସିବେ କି ଥରେ ।
ତାଙ୍କୁ ଦେଖିଲେ କି ଆଉ ଛାଡ଼ିବା ।
ଯେବେ ନ ନେବେ ସଙ୍ଗେ ଗୋଡ଼ାଇବା ॥
ଏକ ଗୋପୀଏ ବୋଇଲି ସଙ୍ଘାତ ।
ସେ ଗୋ ନିଦାରୁଣନ୍ତ ନନ୍ଦସୁତ ।
ଯେବେ ମଥୁରା ରହିଲେ ଶ୍ରୀହରି ।
ନିଷ୍ଟେ ଆମ୍ଭଙ୍କ ଗଲେ ଦୂର କରି ।

ପୁଣି ମାତା ପିତାଙ୍କୁ ମୁକୁଳିଲେ ।
କଂସ ବିନାଶି ମଥୁରା ରହିଲେ ।
ନାନା ବିନୋଦେ ଲୀଳା କଲେ ତହିଁ ।
ଗ୍ୱାଳାମାନଙ୍କ ସଙ୍ଗେ ମେଳ ହୋଇ ।
ବଡ଼ ସୁଭାଗ୍ୟ ଦେବକୀର ପୁଣ ।
କୋଳେ ବସାଏ ପ୍ରଭୁ ଭଗବାନ । ୯୫ ।
ବସୁଦେବହିଁ ଭାଗ୍ୟ କରିଥିଲା ।
ରାମକୃଷ୍ଣଙ୍କୁ କୋଳେ ବସାଇଲା ।
ରାଜା ଉଗ୍ରସେନଇ ବଡ଼ ସୁଖୀ ।
ରାମ ଗୋବିନ୍ଦ ନିତଦନ ଦେଖି ।
ଏତେ ବିଚାରି ଶତେ ଗୋପୀ ଜାଣ ।
କୃଷ୍ଣ କରୁଣଛନ୍ତି ଯେତେ ଗୁଣ ।
ଏତେ କହି ସର୍ବଗୋପୀ ଶୋକରେ ।
ଦଇବଙ୍କୁ ସୁମରଣା ଯେ କରେ ।
ହା ହା ପରାଣ ଧନ ହେ ମାଯୋଇ ।
ତୁମ୍ଭ ବିନୁଁ ଅନ୍ୟ ଆଶ୍ରେ ନାହିଁ ।
ଏତେ କହି ଗୋପୀମାନେ ନିରାଶେ ।
ଦାସ ଦନାଇଁ ସେବେ ଗୋପୀନାଥେ ॥



# ପଞ୍ଚମ ଛାନ୍ଦ

ଏଥୁ ଅନନ୍ତରେ ଗୋପୀଙ୍କ ବାଣୀ ।
ପାଙ୍ଗଣ ଆଗେ ଈଶ୍ୱର ଯେ ଭଣି ।
କୃଷ୍ଣ ମଥୁରାକୁ ଯିବାରୁ ପୁଣି ।
ରାଧିକା ମନରେ କଲେ ଭାଳେଣି ।
ସହସ୍ରେ ଗୋପୀ ସଙ୍ଗତରେ ଘେନ ।
ଶ୍ରୀକୃଷ୍ଣ କଥା ଯେ କହନ୍ତି ପୁଣି ।
ବୋଲନ୍ତି ଶୁଣ ଗୋ ବ୍ରଜସୁନ୍ଦର ।
କୃଷ୍ଣ ନଇଲେ ମଥୁରାରୁ ଫେର ।
କହି କରି ଗଲେ ଗୃହଦନକୁ ।
ଫାଙ୍ଗେ ହୋଇଲା ନଇଲେ *ଗୋପକୁ ।
ଯେବେ ଖଡବାର ମନରେ ଥିଲା ।
ବାଳ ଖେଡ଼େ କ୍ଷମା ବଭ୍ର ହୋଇଲା ।
ଜନମ ତନ ଦନଠାରୁ ପୁଣି ।
ମୋର ସଙ୍ଗେ ରତ ସୁରତ ଜାଣି ।
ସେହିଦନୁ ଅଷ୍ଟ ବରଷ ହେଲା ।
ମୋର ସଙ୍ଗରେ ଲୀଲା ନନ୍ଦବଳା ।
ଯଉଁଦନ ନେହେ ନ ଦେଖେ ମୁହିଁ ।
କଦମ୍ବ ମୂଳକୁ ଏକାରେ ଯାଇଁ ।
ମୁରଲୀଧରକୁ ଦେଖିଲେ ପୁଣ ।
ମୋ ଚତ୍ତ ସୁଖ ହୋଏ ସଖି ଜାଣ ।
ମୋ ମନ ଜାଣେ ମଦନମୋହନ ।
ରତ ସୁରତରେ ମିଳନ୍ତି ପୁଣ ।
ଦନେ ମଥୁରା ଗଲୁଁ ସର୍ବ ଗୋଈ ।
ଦୁଧ ଦହି ଛେନା ବକବା ପାଇଁ ।
ମୁହିଁ ପଛେ ସକ ହୋଇଣ ଗଲି ।
ଯମୁନାକୂଳରେ ଯାଇଁ ମିଳଲି ।
ଦେଖିଲି ଯମୁନା ବଢିଛନ୍ତି ତହିଁ ।
ସବୁ ଗୋପୀମାନେ କୂଳରେ ରହି ।
ବଚାର କରନ୍ତି ସର୍ବ ସୁନ୍ଦରୀ ।
ଯମୁନା ଖରାକାଳେ କ୍ଷମା ବଢ଼ି ।
ମେଘବରଷା ନ କଲା ତ ପୁଣ ।
ନୋହଇ ଅଷାଢ ଭାଦ୍ରବ ଜାଣ ।
ପୂର ଯମୁନା ସୁଅ ବଡ ଜାଣ ।
ପୁଞ୍ଜି ପୁଞ୍ଜି ହୋଇ ପଡୁଛି ଫେଣ ।
ସମସ୍ତେ ଦେଖିଣ ହେଲୁଁ କାତର ।
ଏହି ସମୟରେ ନନ୍ଦକୁମର ।
ଦଦରା ନାବ ଖଣ୍ଡେ ଘେନ ଅସି ।
କେରୁଆଳ ଧରି ମଙ୍ଗରେ ବସି ।
ମାୟାରୂପ ଗୋଟି ହୋଇଛି ପୁଣ ।
ନେଙ୍କଡା ବୁଢା ବାଳ ପାଚେ ଜାଣ ॥
ଘାଟ ଭୁଠରେ ନାବ ଆଣି କଲା ।
ଦେଖିଣ ଅମ୍ଭେମାନେ ହେଲୁଁ ତୋଷ ।
ବୋଇଲୁଁ ଅମ୍ଭେ ମଥୁରାକୁ ଯିବୁଁ ।
ହାଟ କରିଣ ଗୋରସ ବକବୁଁ ।
ଅମ୍ଭମାନଙ୍କର ବଚନ ଶୁଣି ।
ବୋଇଲେ ନାବରେ ବସ ତରୁଣୀ ।
ତାଙ୍କଠାରୁ ପୁଣି ଏସନ ଶୁଣି ।
ଶତେ ତରୁଣୀ ନାବେ ବସେ ପୁଣି ।

୧୬-୨—ସୁକ୍ଷ୍ମା ସୁକ୍ଷ୍ମା ହୋଇ (ଖ, ଗ, ଚ, ଜ.) ।

* ଗୋପୀବେଷ

ଶୃହିଁବା ଛନ୍ଦକେ ସେ ପାର କଲେ ।
ସବୁ ସୁନ୍ଦରୀ ଦେଖୁଁ ଦେଖୁଁ ଗଲେ । ୨୫ ।
ମୁହିଁ କୂଳେ ଅଛୁ ସଙ୍ଗରେ ଦୂତୀ ।
ବେଲ ବେନ ଯନ୍ତ ହୋଇଲ୍ଲ ଅସି ।
ନାବ ଘେନ ଯହୁଁ ଅଇଲେ ବେଗେ ।
ବୋଇଲେ ବସ ଦୁଇଜଣ ଏବେ ।
ଦୂତୀକ ଘେନଣ ନାବେ ବସିଲ୍ଲ ।
ଦଧି ପସରୀ ନାବରେ ଥୋଇଲ୍ଲ ।
ବାହି ଦେଲେ ନାବ ମଝି ନଈକ ।
ଲୁହୁଡ ମାଡ ଅଇଲ୍ଲ ତହିଁକ ।
ବୋଇଲେ ଶୁଣ ଗୋ ରାଧା ସୁନ୍ଦରୀ ।
ତୁମ୍ଭ ସକାଶେ ଆଜ ନାବକେଳ । ୩୦ ।
ଅମ୍ଭେହ୍ଟ ନନ୍ଦନନ୍ଦନ ଶ୍ରୀହରି ।
ଆଜ ନାବରେ କରିବାକ କେଳ ।
ମୁଁ ତାଙ୍କୁ ବୋଇଲ୍ଲ ଦିବସ ବେଳ ।
ଦଧି ବିକଯିବ ଉଛୁର ବେଳ ।
ସଙ୍ଗରେ ଦୂତୀ ଅଛୁ ସହଚରୀ ।
ରାତ୍ର ହେଲେ ପଛେ ଯିବ ଶ୍ରୀହରି ।
ତୁମ୍ଭେ ତ ହୋଇଛ ବୁଢା କେଉଟ ।
ଅଛ ଅପ୍ରଛନ୍ନ ଲେଙ୍କଡା ବେଶ ।
ମୁହିଁ ତ ଗୋପରେ ଅତି ସୁନ୍ଦରୀ ।
ମୋର ମନ ଏକା ଜାଣନ୍ତ ହରି । ୩୫ ।
ମୋରଠାରୁ ଏହୁ ବଚନ ଶୁଣି ।
ନଟବର ବେଶ ଧଇଲେ ପୁଣି ।
ମୋତେ ଧରଣ ନାବକେଳ କଲେ ।
ରତି ସୁରତିରେ ମନ ମୋହିଲେ ।
ନାବ କୂଳେ ଲଗେ ଗଲୁ ମଥୁରା ।
ଗୋରସ ବିକ ହାଟ ବାଟ ତୋରା ।
ଆଗେ ମୁଁ ଅସିଲ୍ଲ ପଛେ ସମସ୍ତେ ।
ସେ କାଳକଥା ଗୋ କହିବ କେତେ ।
ତାହା ଶୁଣି ଗୋପୀ ଆରେକ କହି ।
ମୋତେ ଯାହା କଲେ ନନ୍ଦ କହ୍ନାଇ ॥
କେହି ନାହାନ୍ତ ମିଳିଲେ ମୋ ଘରେ ।
ମୁହିଁ କରତ କରେ ହାଣ୍ଡିଶାଳେ ।
ମୋର ପାଶେ ଯାଇ ହେଲେ ପ୍ରବେଶ ।
ବୋଇଲେ ସୁରତି କରିବ ଆସ ।
କୋଳ କଲେ ମୋତେ ଦେବାଧିରାଜ ।
ତାଙ୍କ ଭାଷା ଶୁଣି ଛାଡ଼ିଲ୍ଲ ଲାଜ ।
ତା ଶୁଣି ରାଧିକା ବଚନ କହି ।
ଦିନେ ଯାହା କଲେ ମୋତେ ମାଧୋଇ ।
ଯମୁନା ଜଳକୁ ଗଲ୍ଲ ମୁଁ ଏକା ।
କଦମ୍ବ ମୂଳରେ କାହ୍ନୁକୁ ଦେଖା । ୪୫ ।
ମୋତେ ସୁରତି ମାଗିଲେ ସେ ପୁଣି ।
ମୁଁ ବୋଇଲ୍ଲ ତୁମ୍ଭେ ନିର୍ଲଜ୍ଜ ପୁଣି ।
ତୁମ୍ଭଙ୍କୁ ବୟସ ହେବ ଅଠାଇ ।
ସୁରତି ରତି ମାଗ କାହିଁପାଇ ।
ମୁଁ ତ ମଉଳାଣୀ ତୁମ୍ଭେ ଭଣଜା ।
ଅବାହୁତ କହ ନନ୍ଦତନୁଜା ।
ଏହି ସମୟରେ ଯଶୋଦା ମିଳି ।
ଦୂରରୁ ଦେଖିଣ ଦିଅନ୍ତ ଗାଳି ।
କି ଲୋ ରାଧା ତୋର ଏତେ ନିଦର ।
ଶ୍ରୀରଙ୍ଗ ପଛେ ଗୋଡ଼ାଇଛୁ ତୋର ॥
ମୁଁ ବୋଇଲ୍ଲ ଅପା ଜାଣ ନାହିଁ କ ।
ପୁଅ ପଛେ ଆସେ ଯହିଁ ପାଇଁକ ।
ଏକା ହୋଇ କରି କଦମ୍ବମୂଳେ ।
ମୁଁ ଯାଇଁ ତାହାକୁ ଦେଖିଲ୍ଲ ତୋଳେ ।

୩୨-୨—ଉତ୍ତର ଜାଳ (ଙ) । ୪୨-୨—କନ୍ଧିବା ଥାନ (ଗ) । ୪୪-୧—ବହନ କହ (ଖ, ଗ) ।

ବୋଇଲି ତୁମ୍ଭ ମାତାଙ୍କୁ କହିବ ।
ମାତ ମଟିଇ ଘରେ ରଖାଇବ ।
ତା ଶୁଣି ଚରଣେ ପଡ଼ିଲେ ମୋର ।
ବୋଇଲେ ନ କହ ମାତା ଆଗର ।
ତେଣୁ ମୋର ପଛେ ଅପଯନ୍ତ ହର ।
ତୁମ୍ଭେ ମୋତେ କିମ୍ପା ଦେଉଛ ଗାଳି ॥
ତାହା ଶୁଣି କର କହାଇ କହି ।
ନାଟ ଯୋଡ଼ି ମୋର ଅଣିଲେ ମାଇଁ ।
ସେଠାରୁ ମୁଁ ଯେ ପଛରେଣ ଆସି ।
ନାନା କଥା ପୁଣି ତୋ ଆଗେ ଭାଷି ।
ଶୁଣିଣ ଯଶୋଦା କ୍ରୋଧ ହୋଇଲେ ।
ଅଙ୍ଗରୁ ବସନ ମୋର କାଢିଲେ ।
ନାଟ ଯୋଡ଼ି ତଲେ ପଡ଼ିଲା ପୁଣ ।
ଦଉଡ଼ି ଖଣ୍ଡିଏ ଅଛି ସଙ୍ଗେଣ ।
ମନରେ ମୋହୋର ବିସ୍ମୟ ହେଲା ।
ମାୟାବୀ ପୁରୁଷ ମାୟା ରଚ୍ଚିଲା ।
ସଙ୍ଗେ ସଙ୍ଗେ ତାଙ୍କ ଘରକୁ ଗଲି ।
ଭୋଜନ ଶୟନ ସେଠାରେ କଲି ।
ମୋହୋର କୋଳେ ଶୋଇଲେ ମାଧୋଇ
ନାନା ବନ୍ଧରେ ରତିରସ ତହିଁ ।
ରୋହଣୀ ମୋ ପୁରେ ଛାଡ଼ିଣ ଦେଲେ ।
ନଣନ୍ଦ ଶାଶୁଙ୍କୁ କହି ଚଳିଲେ ।
ସେଦିନୁ ଜାଣଇ ସେ ମୋର ପ୍ରାଣ ।
ପ୍ରତିଦିନ ବିକେ ମୋ ପୁରେ ପୁଣ ।
ଏକଦିନ କରେ ଛଇଳବର ।
ଦୂତୀସଙ୍ଗରେ ଗଲେ ମୋର ପୁର ।
ତୁମ୍ଭେ ସବସଖୀ ସେଦିନ ଥିଲ ।
ମୋପୁରେ ପ୍ରବେଶ ହେଲେ ନାଗର ।
ମାଳ ଗୋଟିଏ ଗୁନ୍ଥି କରି ହର ।
ଚନ୍ଦ୍ରଶାଳା ପୁରେ ବିଜୟେ କର ।
ପଲଙ୍କ ଉପରେ ଅସି ବସିଲେ ।
ଜୁଡ଼ାପରେ ନେଇଁ ଫୁଲ ରଞ୍ଚିଲେ ।
ଚନ୍ଦନ କର୍ପୂର ବୋଳିଲେ ଅଙ୍ଗେ ।
ମୁଖେ ଚୁମ୍ବନ ଦେଲେ ଶିଖରଙ୍ଗେ ।
ବେନ କୁଚ ଧରି କରେ ମର୍ଦ୍ଦନ ।
ମୁଖରେ ମୁଖ ଲଗାଇ ଚୁମ୍ବନ ।
ରତି ସୁରତି ନାନା ବନ୍ଧେ କଲେ ।
ମୋତେ ଘେନିଣ ପଲଙ୍କେ ଶୋଇଲେ ।
ରଜନୀ ପାଇଲା ସମସ୍ତେ ଗଲି ।
ନାଗରବର ଚଳିଲେ ବନର ।
ସେଦିନ କଥା କି ମନେ ପଡ଼ିବ ।
ସବୁ ଭେଜି ଗଲେ ମଥୁରା-ଦେବ ।
ସେଦିନ କଥା କି ମନରେ ଅଛି ।
ଅମ୍ଭ ସଙ୍ଗତେ ଯେତେ ରଙ୍ଗେ ବସି ॥
କଉଁ ବନମାଳୀ କୁଅନ୍ତି ପୁଣି ।
କୁସୁମମାଳ ଧଣ୍ଡା କରି ଘେନି ।
ଫୁଲ ବିକ ଅସି ମୋପୁରେ ଠଣା ।
ପଗ୍ଭରିଲେ କହେ ମୁ ବାସୁ ରଣା ।
କଉଁଦିନ ହୋଏ କାଚରି ବେଶ ।
କାଚଭିଖା ବିକ ମନେ ହରଷ ।
ମୋର ପୁରେ ଡାକ ଅଣନ୍ତି ସଖୀ ।
ଦିବ୍ୟ କାଚବାହି ପିନ୍ଧାନ୍ତି ବସି ।
ନିଜ ସ୍ୱରୂପ ଧରି ନନ୍ଦସୁତ ।
ମୋ ପୁରେ ରହି ନାନା କଉତୁକ ।

୫୭-୧—ସେହିଠାରୁ ମୁଁ ଯେ ପଛରେ ଅସି (ଘ) । ୭୨-୧—ସେନକଇ (ଗ) । ୭୧-୨—ନାନାରଙ୍ଗେ (ଘ) ।
୭୫-୨—ଖଣ୍ଡା କରେ ଘେନ (ଘ), ଧଣ୍ଡାକର ପୁଣି (ଙ) । ୭୮-୨—ଦିବ୍ୟକାଚ ବାହି (ଚ) ।

କଉଁ ଦିନ ପୁଣି ବଣିଆ ହୋଇ ।
ଦିବ୍ୟ ଅଲଙ୍କାର ବସ୍ତ୍ର ଆସନ । ୮୦ ।
ସେ ଦିନ ବାଟରେ ଭେଟ ପଡ଼ିଲେ ।
ଗୋପୀମାନଙ୍କୁ ଅଲଙ୍କାର ଦେଲେ ।
ମୋତେ ପିନ୍ଧାଇଲେ ରତନ ଚୂଡ଼ି ।
ପାସୁକ କଣ୍ଠି ପଦକ ଘାଗୁଡ଼ି ।
କଉଡ଼ି ପାଇଁକି ଗୋପୀ ଅଇଲେ ।
ମୋତେ ଘେନିଣ କୁଞ୍ଜବନ ଗଲେ ।
ନାନା ବନ୍ଧରେ ରତିରସ କରି ।
ଅଇଲୁଁ ଆମ୍ଭେ ରହିଲେ ଶ୍ରୀଧର ।
ତା ଶୁଣି ଯେତିକ ଗୋପୀଏ ବୋଇଲେ ।
ଦିନେ ମୋ ପୁରେ ହରି ଯାହା କଲ ॥
ସ୍ନାନ କରି ମୁଁ ଘରରେ ମିଳି ।
ଶାଶୁ ନଣନ୍ଦ ନାହାନ୍ତି ମୋହୋର ।
ଏହି ସମୟରେ ମୁରଲୀଧର ।
ଗୁରସ୍ତ ପ୍ରାପ୍ତେହି ମୋହୋ ଆଗର ।
ଓଦାବସନରେ ଧଇଲେ ମୋତେ ।
ରତି ସୁରତ କଲେ ନାନାମତେ ।
ଲାଜ ଲାଜ ହୋଇ ଉଠିଲି ମୁହିଁ ।
ଦେଖିଲି କାହ୍ନୁ ଗଲେଣି ପଳାଇ ।
କ୍ଷୀନ ବସନ ପିନ୍ଧିଣ ମୁଁ ବେଗେ ।
ଶାଶୁ ନଣନ୍ଦ ମିଳିଲେ ମୋ ଆଗେ ॥
ସେଦିନ କଥା ଗୋ ପଡଇ ମନେ ।
ଛଡ଼ିଣ ମାଯୋଇ ଗଲେ ଗୋ କେଣେ ।
ରାଧିକା ବୋଇଲେ ଶୁଣ ସଙ୍ଗାତ ।
ମୋର ସଙ୍ଗେ ଯେତେ ସୁରତ ରତ ।
କେତେ ହୁଙ୍କାଦ ତୋ ଦଅନ୍ତି ପୁଣି ।
ଶାଶୁ ନଣନ୍ଦ ସାହି ପଡୁଶୁଣୀ ।
ଗୋପପୁରେ ହିଣ୍ଡା ସବୁଦିନରେ ।
ରାଧିକା ମାତିଲେ କୃଷ୍ଣ ସଙ୍ଗରେ ।
ମାଇଁ ଭଣୀଞ୍ଜାରେ ବଡ ପୀରତି ।
କୁଳକୁ ଲଜ୍ଜା ହଉନ୍ତି ଅକୀର୍ତ୍ତି । ୯୫ ।
କହିବା କଥା ଶୁଣିମାକୁ ବ୍ୟଥା ।
ବାଟ ନ ଚାଲଇ ଟେକିଣ ମଥା ।
ସେ ପୁଣି ମୋଠାରେ ଏମନ୍ତ କଲେ ।
ଟେକି ଧରଣ ଫୋପଡ଼ାଇ ଦେଲେ ।
ଧର୍ମ ଦେବତା ସତେ ଯେବେ ଥିବ ।
ମୋ ପୁରେ ନିଶ୍ଚେ ଆସିବେ ମାଧବ ।
ଏତେ ବୋଲି ରାଇ କଲେ ରୋଦନ ।
ଦୂତୀ ମିତଣୀ କହେ ବୁଝାଇଣ ।
ଏମନ୍ତ ମନରେ ହୋଇ ବିରସ ।
ଦାସ ଦିନାଇଁ ପଦ୍ମପାଦେ ଆଶ ।୧୦୦।



୮୯-୧—ବସିଲ ମୁହିଁ (ଘ) । ୯୮-୨—ମୋହ ପୁରକୁ ଆସିବେ (ଗ) ।

# ଷଷ୍ଠ ଛାନ୍ଦ

ଏଥୁ ଅନନ୍ତରେ ଗୋପୀଙ୍କ କଥା ।
ପାର୍ବତୀ ଅଗ୍ରେ କହେ ପଞ୍ଚମଥା । ୧ ।
ସହସ୍ରେକ ଗୋପୀ ଯେନ୍ତ ଦୂତିକା ।
କୃଷ୍ଣ ଥିବାରୁ ଯେତେ ଗୁପ୍ତ କଥା ।
ସହସ୍ରେ ଗୁଆଲୀ ମେଳରେ ପୁଣି ।
ନିବେଦନ କରି କହେ ପୂର୍ବବାଣୀ ।
ଦୂତିକା କହନ୍ତେ ଶୁଣନ୍ତୁ ଗୋଈ ।
ଦିନେ ଯାହା ମୋତେ କଲେ ମାଧୋଈ ।
ବହୁତ ବିରହ ସେଦିନ ପୁଣି ।
ନେଠ ନୋହିଲେ କେଉଁଣି କାମିନୀ ।।
ଯମୁନା ଜଳେ ଏକା ଗଲି ମୁହିଁ ।
କଦମ୍ବ ମୂଳେ ବିଜେ ଭାବଗ୍ରାହୀ ।
ମୋତେ ଦେଖି କରି ଛଇଲବର ।
ବୋଇଲେ ଦୂତୀ ଗୋ ଶୁଣ ଉତ୍ତର ।
ତୁମ୍ଭେ ସନ୍ଦରିତ୍ ଜାଣ ଗୋ ସବୁ ।
ଚନ୍ଦ୍ରାବଳୀକି ବଚନ କହିବୁ ।
ବୋଲିବ ଗୋବିନ୍ଦ ବଡ଼ ବିରହ ।
ତୋ ପୁରେ ଆସିବେ ନନ୍ଦଙ୍କ ପୁଅ ।
ଦୁଇ ଗୃହ ଦିନ ନୋହିଲା ପ୍ରୀତି ।
ନ ଦେଖି ମନ ବିକଳ କରନ୍ତି ।୧୦।
ବିଜୟେ କରିବେ ବ୍ରହ୍ମାଣ୍ଡସାଇଁ ।
ଏମନ୍ତ ବଚନ କହିବୁ ଯାଇଁ ।
ତାଙ୍କଠାରୁ ମୁହିଁ ବଚନ ଶୁଣି ।
ନୀର ଘେନ ପୁରେ ମିଳିଲି ପୁଣି ।
ବେଗ ହୋଇଣ ଚଳିଗଲି ପୁଣି ।
ଚନ୍ଦ୍ରାବଳୀ ପୁରେ ମିଳିଲି ଜାଣି ।
ମୋତେ ଦେଖିଣ ଚନ୍ଦ୍ରାବଳୀ ତୋଷ ।
ଶୀତଳ ବଚନ କଲେ ପ୍ରକାଶ ।
କି ଗୋ ସଙ୍ଗାତୁଣି କେଣେ ଅଇଲୁ ।
ବାରତା କଉଁ କଥା ନ କହିଲୁ ।୧୫।
ଏମନ୍ତ ବୋଲନ୍ତେ ବସିଲି ମୁହିଁ ।
କଥା ବଖାଣି ଛନ୍ଦ କରି କହି ।
ତୁମ୍ଭ ମନ ତ ହୋଇଛି ନିରାଶ ।
ତୁମ୍ଭ ପୁରେ ତ ନ ଆସିଲେ କୃଷ୍ଣ ।
ଶୁଣି କହେ ଚନ୍ଦ୍ରବଦନୀ ପୁଣି ।
କାହୁଁ ପାଇବି ଗୋପ-ଶିରୋମଣି ।
ଦିନାକେତେ ହେଲା ଦେଖିଲା ନାହିଁ
ନିରାଶ ମୋତେ ଗୋ କଲେ ମାଧୋଈ ।
ତାଙ୍କଠାରୁ ମୁଁ ଯେ ଏମନ୍ତ ଶୁଣି ।
ବୋଇଲି ଶୁଣ ଚନ୍ଦ୍ରାବଳୀ ପୁଣି ।୨୦।
ବିରହ ବଡ଼ ଗୋ ଦେବାଧିରାଜ ।
ଯେଣୁ ନୋହିଲା ତୁମ୍ଭ ସଙ୍ଗେ ସଜ ।
ଦେଖି କଷ୍ଟ ଆନ କହିଲେ ମୋତେ ।
ବୋଇଲେ ଦୂତି ଗୋ ଯିବ ତୁରିତେ ।
ଅମ୍ଭେ ତାଙ୍କ ପୁରେ କରିବୁ ବିଜେ ।
ତୁମ୍ଭେ ଜଣାଇଁ ଥିବ ତାଙ୍କ ଆଗେ ।
ତେଣୁ କରି ମୁଁ ଯେ କହି ଅଇଲି ।
ନିଶ୍ଚେ ବିଜୟ କରିବେ ଶୁଣିଲି ।
ଏମନ୍ତ ବଚନ କହନ୍ତେ ମୁହିଁ ।
ଗୋପ ଦାଣ୍ଡରେ ଚହଲ ଶୁଭଇ ।୨୫।

୨-୨—ଗୁଣ ଗାଥା (ଖ) । ୧୨-୧—ନୀରସ (ଚ ଛ) । ୨୧-୨—ସଙ୍ଗ (ଖ, ଛ) ।

କେ ବୋଲେ ବଣିଆ ଦଅ ସିନ୍ଦୂର ।
କେ ବୋଲେ ଦଅ ଚନ୍ଦନ କର୍ପୂର ।
ଚନ୍ଦ୍ରାବଳୀ ବୋଲେ ଦୂତିକା ଶୁଣ ।
କସ ପଦାର୍ଥ ବିକା ଆସେ ପୁଣ ।
ତା ଶୁଣି ବଚନ କହିଲ ମୁହିଁ ।
ଜୀବ ମତର ବଣିଆ ବିକଇ ।
କଥା ହୁଅନ୍ତେ ବଣିଆ ମିଳିଲା ।
ଶବଦ କରଣ ଉଚ୍ଛେ ଡ଼ାକିଲା ।
ତାହା ଶୁଣି ଚନ୍ଦ୍ରସେଣା ବୋଇଲା ।
ଆପୁ କଣ ଲୋ ମୋର ପ୍ରାଣ ଗଲା ॥
ଶୁଣି ଚନ୍ଦ୍ରାବଳୀ ଉଠିଲେ ବେଗେ ।
ବଣିଆ ଆଗରେ ମିଳିଲେ ଯୋଗେ ।
ଆପୁ କିଣି ନେଇ ଶାଶୁରେ ଦେଲେ ।
ନଣନ୍ଦ ଦେଖି ଗାଳି ମନ୍ଦ କଲେ ।
କଉଡ଼ି ମାଗନ୍ତେ ବଣିଆ ପୁଣ ।
ନଣନ୍ଦ ଶାଶୁ ନ ଶୁଣିଲେ ପୁଣ ।
ମନ ନୀରସ କରି ଚନ୍ଦ୍ରାବଳୀ ।
ବୋଇଲେ ରହିଲା କଉଡ଼ି କାଳି ।
ଦୂତୀ ଚନ୍ଦ୍ରାବଳୀ ଅଛନ୍ତି ଏକା ।
ଛଇଲ ନାଗର କହନ୍ତି କଥା । ୩୫ ।
ନିଜ ରୂପ ଧରି ସେ ବେଣୁପାଣି ।
ମୋହ ଚନ୍ଦ୍ରାବଳୀ ଦେଖିଣ ପୁଣି ।
ଦୂତୀ ବୋଇଲେ ବିଜେ କଲେ ହରି ।
ଦଅ ସୁରତି ତୋଷ ବେଗ କରି ।
ମୁଁ କହିବାରୁ ଚନ୍ଦ୍ରାବଳୀ ଗଲା ।
ଶ୍ରୀକୃଷ୍ଣ ସଙ୍ଗରେ ପୀରତି କଲା ।
ରତି ସୁରତି ସାରି ନନ୍ଦବଳା ।
ଅନ୍ତର୍ଦ୍ଧାନେ ଗଲେ ସେଠାରୁ ପରା ।

ଚନ୍ଦ୍ରାବଳୀ ମୋତେ ହସି କହିଲେ ।
ମନ ତୋଷ ହେଲା ଯାଅ ବୋଇଲେ ॥
ତାଙ୍କଠାରୁ ସୁଖବଚନ ଶୁଣି ।
ମୋର ଘରକୁ ଗୋ ଅଇଲ ପୁଣି ।
ଶୁଣି କରି କହେ ଏକ ଗୋପିକା ।
ତାଙ୍କ କଥା ମୋତେ ଲାଗେ ତାଠିକା ।
ମୋର ପୁଅକୁ ଗୋ ମାଇଲେ ହନେ ।
ଧୂଳ-ଧୂସର ହଣେ ନନ୍ଦନାନେ ।
ଝୀନ ବସନ ଯେନ ହନେ ଗଲ ।
ଶ୍ରୀଅଙ୍ଗ ଧୂଳ ପୋଛି ପକାଇଲ ।
ବୋଇଲେ ପୁଅ ଲଗାଇ ମାଇଲ ।
ଆଉ କମ୍ପା ମନେ ଶରଧା କଲ । ୪୯ ।
ଏତେ ବୋଲିଣ କୋଳ କଲେ ମୋତେ ।
ରତି ସୁରତି କଲେ ବଳକୃତେ ।
ମୋ ମନ ତୋଷିଣ କେଣିକି ଗଲେ ।
ତାହା ଶୁଣି ଏକ ଗୋପୀ ବୋଇଲେ ।
ହନେ ମୁଁ ବେଶ ହୋଇ ବସିଅଛୁ ।
ଜୂଡ଼ାପରୁ ଫୁଲବାସ କରଛୁ ।
ବଉଳ ଯୂଇ ଚମ୍ପା ମଲ୍ଲୀ ମିଶା ।
କେତକୀ ଦଳରେ ଚିଠାଉ ଭୂଷା ।
ନୟନେ ଅଞ୍ଜନ ମୁଣ୍ଡେ ସିନ୍ଦୂର ।
ଗଳାରେ ପଦକ ଲୁଳଇ ହାର । ୫୦ ।
ଝୀନ ବସନ ମୋ ଦେହରେ ପଡ଼ି ।
ନାସାରେ ବସଣି କର୍ଣ୍ଣେ ପଗଡ଼ି ।
ଭୂତ ଭୁଞ୍ଜିଣ ପଲଙ୍କ ଉପରେ ।
ପାନ ଝାଉଛୁ ମିଳିଲେ ନାଗରେ ।
ମୋହୋର ସଙ୍ଗରେ ବସିଲେ ଯାଇଁ ।
ଦେହକୁ ଦେହ ମୁଖକୁ ଲଗାଇ ।

୪୯-୨—ମୋତେ ଶରଧା କଲ (ପ, ଛ) ।

ଧରି ବିବସନ କଲେ ତୁରିତେ ।
ବେଶ ହୋଇଥିଲୁ ତାଙ୍କ ନିମିତ୍ତେ ।
କୋଳ କରିଣ ଘେନି ମୋତେ ଶୋଇ ।
ରଜନୀ ପାଇଲା କେଣିକି ଯାଇ ।
ତହୁଁ ବଉଳ ଗୋପାଙ୍ଗଣୀ କହି ।
ମୋରଠାରେ ସ୍ନେହ କରନ୍ତି ସେହି ।
ଦିନେ ଖରିବେଳେ ଯମୁନା ଗଲି ।
କଦମ୍ବମୂଳେ ଗୋ ତାଙ୍କୁ ଦେଖିଲି ।
ବାଳକ ସଙ୍ଗତେ ଭୁଞ୍ଜନ୍ତି ଅନ୍ନ ।
ମୋତେ ଦେଖିଣ ମନ ଛନ ଛନ ।
ମୋହୋର ସେଦିନ ଶୁଭ ବିଧାନ ।
ବାସି ପଦାର୍ଥ ଘେନିଅଛି ପୁଣ ।
ଯମୁନାକୂଳରେ ପଶନ୍ତେ ମୁହିଁ ।
ଭୋଜନସାରି ଉଠିଲେ ମାଧୋଇ ।
ହସ୍ତ ଧୋଇଣ ମୁଖ ପଖାଳିଲେ ।
ହସି କରି ମୋର ପାଶେ ମିଳିଲେ ।
ବୋଇଲେ ଭଲା ସମୟେ ଅଇଲୁ ।
ଆମ୍ଭେ ଆଜ ଯିବୁଁ ତୁମ୍ଭର ପୁର ।
ଶୁଣିଣ ମୁହିଁ ବୋଇଲି ତାହାଙ୍କୁ ।
ଭାଗ୍ୟ କରିଛି କି ତୁମ୍ଭ ସଙ୍ଗକୁ ।
ଏମନ୍ତ ବଚନ ଶୁଣି ଶ୍ରୀହରି ।
ପଞ୍ଚଶର ବାଣ ଅଙ୍ଗେ ପ୍ରହାରି ।
ଛନ ଛନ ହୋଇ ମୋହୋର ମନ ।
ଧୀର ଧୀର ହୋଇ କଲି ଗମନ ।
ଘରଠାରେ ଯାଇ ପ୍ରବେଶ ହେଲି ।
କଳସି ଥୋଇ ଚରଣ ଧୋଇଲି ।
ମୋହିନୀ ଛନ୍ଦେ ନାନାବେଶ ହୋଇ ।
ଝୀନ ପଠଣୀ ବାଛି ପିନ୍ଧିଲଇଁ ।
ଏମନ୍ତ ସମୟେ ରଜନୀ ହେଲା ।
ମୋ ପୁରେ ବିଜେ କଲେ ନନ୍ଦବାଳା ।
ମୋତେ ଘେନିଣ ପଲଙ୍କେ ଶୋଇଲେ ।
ରତି ସୁରତି ନାନାବନ୍ଧେ କଲେ ।
ପାହରେ ରଜନୀ ଥିଲା ସେ ଗଲେ ।
ପୁଣି କେତେ ଦିନ ସ୍ୱପନ ହେଲେ ।
ତାହା ଶୁଣିଣ ଗୋପୀଏ ବୋଇଲେ ।
ଗୋପପୁରେ କାହିଁ ଜନ୍ମ ହୋଇଲେ ।
ମୋହନୀ ଲଗାଇ ସେ ନନ୍ଦସୁତ ।
ମୁରଲୀସ୍ୱନରେ କଲେ ଉଚ୍ଚାଟ ।
ଶଯ୍ୟନ ଭୋଜନ ହୋଇଲା ବିଷ ।
ତେଜ୍ୟା କରିଣ ତାଙ୍କ ପାଦେ ଆଶ ।
କାଳସର୍ପ ସଙ୍ଗେ ବିଶ୍ୱାସ ହେଲେ ।
ସେ କି ଖାଇଲେ ନ ମରିବା ଭଲେ ।
ଦୁଧ ଗୁଡ଼ ନେଇ ନିମ୍ବ ମୂଳରେ ।
ସେତେ ଦେଲେ ପିତା ଯିବ କି ତାରେ ।
କୁଜନ ଲୋକର ଏମନ୍ତ ରୀତି ।
ସୁଜନ ଲୋକର ଶୁଣ ଗୋ ମତି ।
ଅଯୋଧ୍ୟା ଦେଶେ ଭଗୀରଥ ରାଜା
ତପସ୍ୟା କରି ବୁହାଇଲେ ଗଙ୍ଗା ।
ବଳୀ ଯେ ସତ୍ୟ କରି ଦାନ ଦେଲା ।
ପାତାଳ ପୁରେ ଯାଇଣ ରହିଲା ।
ଯେଣୁ ରାଜା ପାଳେ ଧର୍ମରେ ପୃଥୀ ।
ମର୍ତ୍ତ୍ୟରୁ ଯାଇଣ ସ୍ୱର୍ଗରେ ସ୍ଥିତି ।

୫୭-୧—କଦମ୍ବ ମୂଳରେ । ୬୫-୨—କରୁ ଗମନ (ଖ) ।
୭୧-୨—ଗୋପପୁରେ ଯାଇ ଜନ୍ମ ହୋଇଲ (ଜ), ଗୋପପୁରେ କାହୁଁ ଜନ୍ମ ହୋଇଲ (କ) ।
୭୪-୧—ବାହାର ହେଲେ ।

ପ୍ରହ୍ଲାଦ ମନ ଜାଣିଣ ହରି ।
ସ୍ୱର୍ଗ ପୁରରେ ଇନ୍ଦ୍ର ନେଇ କରି ।୮୦।
ଆମ୍ଭେ ଗୋପ ଗୋଈ କ ଦୋଷ କଲୁ ।
ସେବା କରି କଷ୍ଟା ନରଣ ହେଲୁ ।
ତାହା ଶୁଣି ଏକ ଗୋପୀ ବୋଇଲା ।
ମନ-ମୀନ ଚନ୍ଦ୍ରା ଜଳେ ବୁଡିଲା ।
ତାଙ୍କ ଗୁଣ ମନୁ ନୋହେ ପାସୋରି ।
କେମନ୍ତେ ବଞ୍ଚିବା ନ ଦେଖି ହରି ।
ବୃନ୍ଦାକ ବୋଇଲେ ଶୁଣ ସମ୍ବାଦ ।
ଦିନେ ଯାହା କଲେ ସେ ନନ୍ଦସୁତ ।
କହିବାକୁ ଲାଜ ମାଡଇ ମୋତେ ।
ଏତେ ହସୁଅ ଗୋ ଯଶୋଦା-ସୁତେ ॥
ଚନ୍ଦ୍ରାବଳୀ ପେଷେ ତାଙ୍କ ପାଶକୁ ।
ବେଶ ହୋଇଗଲି କୁଞ୍ଜ ବନକୁ ।
ଦେଖିଣ ମାଧୋଳି ଧଇଲେ ମୋତେ ।
ନାନା ବନ୍ଧରେ ପ୍ରୀତି ହୋଏ ଯେତେ ।
ସେ ଦିନ ଶୁଦ୍ଧ ସ୍ନାହାନ ମୋହୋର ।
ବ୍ରହ୍ମାଣ୍ଡ ଠାକୁର କଲେ ବିହାର ।
ଅକ୍ଷୟ ବୀଜ ସେ କ୍ଷୟ ନୋହିଲା ।
ଗର୍ଭରୁ ଦୁଇ ପୁତ୍ର ଜାତ ହେଲା ।
ତଳରେ ପଡନ୍ତେ ଉଠିଲେ ବେଗେ ।
ତାଙ୍କୁ ଆଜ୍ଞା ଦେଲେ ଦେବାଧିରାଜେ ॥
ଗୌର ରତିରେ ତୁମ୍ଭେ ଜାତ ହେଲ ।
ଗୌର ହୋଇ ରହ ଏହୁ ବନର ।
ଯେତେବେଳେ ଅମ୍ଭେ ପେଷିବୁ ଯେଣେ ।
ଅଦୃଶ୍ୟ ହୋଇ କାର୍ଯ୍ୟ କରି ତେଣେ ।
କୁଞ୍ଜବନରେ ତାଙ୍କୁ ରଖାଇଲେ ।
ମୋତେ ବୋଇଲେ ଯାଅ ନିଜପୁରେ ।
ଆଜଠାରୁ ନବଯୁବା ବୟସ ।
ଶୁଣିଣ ମୋ ମନ ହୋଇଲା ତୋଷ ।
ତତକ୍ଷଣେ ନବ ତରୁଣ ହେଲି ।
ଚନ୍ଦ୍ରାବଳୀ କଥା ତାଙ୍କୁ କହିଲି ।୯୦।
ବୋଇଲେ ଅମ୍ଭେ ଯିବୁ ନିଶାକାଳେ ।
ତୁମ୍ଭେ ଯାଇଁ କହ ତାଙ୍କ ଛାମୁରେ ।
ତହୁଁ ମୁଁ ବେଗେଣ ଫେରି ଆଇଲି ।
ଚନ୍ଦ୍ରାବଳୀ ପୁରେ ଖରେ ମିଳିଲି ।
ସକଳ କଥା ତାଙ୍କ ଆଗେ କହି ।
ଶୁଣିଣ ହସିଲେ ସେ ଚନ୍ଦ୍ରମୁହିଁ ।
ବେଶ ଭୂଷଣ ସେ ହୋଇଲେ ତୋରା ।
ଏହି ସମୟେ ମିଳେ ଶ୍ୟାମ ଗୋରା ।
ଦେଖି ଚନ୍ଦ୍ରାବଳୀ ମନେ ହରଷ ।
ଦାସ ହନାଇ ସେବେ ତାଙ୍କ ପାଶ ।୧୦୦।



# ସପ୍ତମ ଛାନ୍ଦ

ଗରୁଡ଼ ବୋଇଲେ ଶୁଣ ହେ ପ୍ରଭୁ ।
ଗୋପର ଗୋଈ କସ କଲେ ସବୁ ।
ତାଙ୍କ କଥା ମୋତେ କହ ହେ ପୁଣ ।
ଗୋପ ତେଜଣ ଗଲେ ନାରାୟଣ ।
କଉଁ କଥା ଗୋପୀ ଭାଷିଲେ ପୁଣ ।
ମୋ ଅଗେ କହ ହେ ପ୍ରଭୁ ଈଶାନ ।
କହନ୍ତ ଈଶ୍ୱର ଶୁଣ ଗରୁଡ଼ ।
ପୁଣି ଯାହା କଲେ ସେ ଗୋପନାରୀ ।
ସହସ୍ରେ ଗୋପୀଙ୍କ ମଧ୍ୟେ ନାୟିକା ।
ମରୁଅ ନାମେ ସୁନ୍ଦରୀ ଗୋପିକା ।
ସମସ୍ତଙ୍କ ମେଳେ ଯାଇଣ ବସି ।
କୃଷ୍ଣ ଗୁଣମାନ କହେ ପ୍ରଶଂସି ।
ଯେତେବେଳେ ଯାହା ମାଧୋଇ କଲେ ।
ସେ ଗୁଣମାନ ଗୋପୀ ଗାୟେ ଭଲେ ।
ମରୁଅ ବୋଲନ୍ତ ଶୁଣ ଗୋ ସଖି ।
ଏକ ଦିନକରେ ସକଳ ଗୋପୀ ।
ବୈଶାଖମାସ ଗ୍ରୀଷମର କାଳେ ।
ଯମୁନାକୁ ଗଲୁଁ ସନ୍ଧ୍ୟାବେଳରେ ।
ହଲଦ ଅଏଁଲା ସୁଗନ୍ଧ ଘେନି ।
ଘାଟରେ ପ୍ରବେଶ ହୋଇଲୁଁ ପୁଣି ।
ସ୍ନାହାନ ନିମନ୍ତେ ପଶିଲୁଁ ଜଳେ ।
ବସନମାନ ପାଲଟିଣ କୂଳେ ।
ଉଲଗ୍ନ ହୋଇ କରନ୍ତେଣ ସ୍ନାନ ।
ଛଇଲ ନାଗର ପ୍ରବେଶ ପୁଣ ।
ସମସ୍ତଙ୍କ ଶାଢୀ ଘେନିଣ ଯାଇଁ ।
କଦମ୍ବ ଡାଳରେ ବାନ୍ଧିଲେ ନେଇ ।
ମତ୍ତ ହୋଇ ଅମ୍ଭେ ଜଳରେ ଖେଳୁଁ ।
ଯେତେବେଳେହେଁ କୂଳକୁ ଉଠିଲୁଁ ।
ଦେଖିଲୁଁ ବସନ ନାହିଁ କାହାର ।
ଡାଟକା ହୋଇଲୁଁ ସକଳ ନାରୀ ।
ଏହି ସମୟରେ ମୁରଲୀଧର ।
ମୁରଲୀ ବାୟେ କଦମ୍ବମୂଳର ।
ଶୁଣି ସର୍ବ ସଖୀ ତାଙ୍କୁ କହିଲୁଁ ।
ବହୁତ ବିନତି ଚରଣେ ହେଲୁଁ ।
ଦନ୍ତରେ ତୃଣ ଧଇଲୁଁ ପୁଣ ।
ବୋଇଲୁଁ ରଖ ପ୍ରଭୁ ନାରାୟଣ ।
ଶୁଣିଣ ସୁଦୟା କଲେ ଶ୍ରୀହରି ।
ବୋଇଲେ ଶୁଣ ଗୋ ବ୍ରଜସୁନ୍ଦରି ।
ଯେ ଯାହା ବସନ ଫେଡ଼ିଣ ନିଅ ।
ଏତେ ଅରତ ଗୋ କାହିଁକି ହୁଅ ।
ଏହା ଶୁଣି ଅମ୍ଭେ ହରଷ ହେଲୁଁ ।
ଯେ ଯାହା ବସନ ନେଇ ପିନ୍ଧିଲୁଁ ।
ପୁଣି ମାୟା କଲେ ସେ ବନମାଳୀ ।
କାମ ଜାଳାରେ ଦେହ ହୋୟେ ଘାଳି ।
ଛନ ଛନ ହୋଇ ନ ରହେ ମନ ।
ଦେଖିଣ ଗୋବିନ୍ଦ ହେଲେ ପ୍ରସନ୍ନ ।
ସମସ୍ତଙ୍କ ସଙ୍ଗେ ବିହାର କଲେ ।
କୁଞ୍ଜବନରେ ଘେନିଣ ବୁଲିଲେ ।

୩-୨—ସେ କଥା ମୋ ଅଗେ କହ ଉମଣ (ଗ) । ୬-୨—ଗୋପୀ କହେ ଭଲେ (ଙ) ।
୧୦-୨—ଏତେ ଅରତ (ଛ) ।

ରଜନୀ ପାଇଲା ଅଗଲୁଁ ଘର ।
ତୁମ୍ଭେ ସମସ୍ତେ ଜାଣ ସେ ଦିନର ।୨୫।
ସଖୀ ଗୋଟିକେ ଗୋଟିଏ ନାଗର ।
କାହ୍ନୁଁ ଭିଆଇଲେ ନନ୍ଦକୁମର ।
ସେଦିନ କଥା ମୋ ମନେ ପଡ଼ିଲା ।
ସେ ସୁଖ ଛାଡ଼ି ନିଶି କେମନ୍ତେ ଗଲା ।
ତାହା ଶୁଣି ଏକ ଗୁଆଲୀ କହି ।
ଦିନେ ଯାହା କଲେ ନନ୍ଦକୁମାର ।
ରାଧା ମନ୍ଦିରେ ସେ ପ୍ରବେଶ ହେଲେ ।
ଇନ୍ଦୁର ରୂପ ଗୋଟିଏ ହୋଇଲେ ।
ନଣନ୍ଦ ଖୋସାକୁ କାଟିଣ ନେଇ ।
ନାଣ୍ଡି ମୁଣ୍ଡୀ କରିଦେଲେ ଗୋସାଇଁ ।୩୦।
ଶୁଆ ରୂପରେ ପ୍ରବେଶ ହୋଇଲେ ।
ରାଧା ସତୀ ବୋଲି ବୋଲିଣ ଗଲେ ।
ନଣନ୍ଦ ମୁଣ୍ଡ ଯେ ରାଧା କୁରିଲା ।
ଯଉଁ ରୂପେ ବାଳ ସେ ରୂପେ ହେଲା ।
ତାହା ଶୁଣି ଆର ଗୋପୀ ବୋଇଲା ।
ଦିନେ ଯାହା କଲେ ସେ ନନ୍ଦବଳା ।
ରଜନୀ ଶେଷ ହୋଇଅଛି ପୁଣି ।
ମୋ ପୁର ପ୍ରବେଶ ସେ କମ୍ବୁପାଣି ।
ଶୟନ ଠାବରେ ମିଳିଲେ ଯାଇଁ ।
ମୋତେ ବୋଇଲେ ଗୋ ସଙ୍ଘାତ ସହି ॥
ଆଜ ତୁମ୍ଭ ପୁରେ ହେବ ବିହାର ।
କେହି ନ ମିଳିଲେ ମୋର ସଙ୍ଗର ।
ଏତେ ବୋଲି ମୋର ସଙ୍ଗେ ପୀରତି ।
ନାନାବନ୍ଧରେ ଗୋ କଲେକ ରତି ।
ରତି ସୁରତି ସାରି ଗଲେ ବନ ।
ମୋ ମନ ତୋଷ ହେଲା ସେହୁ ଦିନ ।
ତାହା ଶୁଣି ରୂପବନ୍ତୀ ବୋଇଲା ।
ଛଇଲ ନାଗର କେଣିକି ଗଲା ।
ମୋତେ ସେ ଦେଖିଲେ ଏକଦିନରେ ।
ମୁହିଁ ଯାଇଥିଲି ମଥୁରାପୁରେ । ୪୦ ।
ଦଧି ଲହୁଣୀ ଛେନା ଦୁଧ ପୁଣି ।
ବିକା କଣା କରି ଆସିବା ଜାଣି ।
ବାଟରେ ଭେଟିଲେ ଇନ୍ଦ୍ରଗୋବିନ୍ଦ ।
ବୋଇଲେ ମୋତେ ଶୁଣ ଅଗୋ ଗୃନ୍ଦ ।
କସ ଆଣିଅଛ ମଥୁରା ହାଟୁଁ ।
ଦେଇଣ ବୋଧ କର ଗୋ ଆମ୍ଭଙ୍କୁ ।
ଏତେ ବୋଲି ବୋଝ ଦେଖିଲେ ଯାଇଁ ।
ପାଚିଲା କଦଳୀ ନବାତ ନେଇଁ ।
ମୁଣୋହି କରିଣ ସନ୍ତୋଷ ହେଲେ ।
ମୋତେ ଧରି କୁଞ୍ଜବନକୁ ନେଲେ ॥
କେତେ ପ୍ରବନ୍ଧରେ ରତି ସୁରତି ।
କଲେ ଗୋ ତୋଷହେଲା ମୋର ମତି ।
ନଉସ୍ଥଳ ଯିବ ତାଙ୍କ ଚରଣ ।
କଉଁ କଥା ଗୋ ନ ଜାଣନ୍ତି ପୁଣ ।
ତାଙ୍କଠାରୁ ଶୁଣି ସୁନ୍ଦରୀ କହେ ।
ଦିନେ ମୋ ପୁରେ ବିଜେ ନନ୍ଦ ପୋଷ୍ୟେ
ମୋତେ ବୋଇଲେ ଗୋ ମାଗିବି କସ ।
ନ ଦେଇ ମୋତେ ନ କର ନିରାଶ ।
ଶୁଣିଣ ଲବଣୀ ସର ମୁଁ ଦେଲି ।
ଗୋଟିକା ଛେନା ଆଣି ପରଶିଲି ।୫୦।
ଗଙ୍ଗାବାସ ବାଣ ପଇଡ଼ ଦେଇ ।
ବୋଇଲି ଭୋଜନ କର ମାଧୋଇ ।
ମୋତେ ବୋଇଲେ ଗୋ ବ୍ରଜସୁନ୍ଦରୀ ।
ତୁମ୍ଭଠାରେ ସୁଖ ବହୁତ ମୋର ।
ତୁମ୍ଭ ସଙ୍ଗତେ ଆଜ ଭାବ ହେବ ।
ସର୍ବଦିନେ ତୁମ୍ଭ ମନରେ ଥିବ ।

ମୁଁ ବୋଇଲି ନୋହେ ରଜନୀ କାଳ ।
ଏ କଥା କ୍ଷମା କର ନନ୍ଦବାଳ ।
ସବୁବେଳେ ଆମ୍ଭେ ତୁମ୍ଭର ସିନା ।
ଏ କଥା କ୍ଷମା କର ନନ୍ଦକାହ୍ନା । ୫୫ ।
ଶାଶୁ ନଣନ୍ଦ ମୋ ଘରେ ଅଛନ୍ତି ।
ଦେଖିଲେ ମୋତେ ବାଦ ଦେବେ ନିତି
ନ ଦେଖି କେତେ କଥା କହୁଥାନ୍ତି ।
ଛଇକ ଅନାଇ ହସ ମେଲନ୍ତି ।
ବେଶ ହୋଇଲେ ବୋଲନ୍ତି ନାଗରୀ ।
ଯମୁନା ଗଲେ ଜଗନ୍ତି ପାହାର ।
ଭୋଗ ନ କର ଏଥୁଁ ବେଗେ ଯାଅ ।
ଚରଣ ଧରୁଛି ହେ ନନ୍ଦପୁଅ ।
ଦନ୍ତରେ ତୃଣ ଧରି ଶୋଇଲି ।
ଷମା କର ଦୋଷ ବୋଲି ବୋଇଲି ॥
ମାୟା କଥା ପୁଣି କଲା ରଞ୍ଜନ ।
ଦିବସ ହୋଇଲା ରଜନୀ ପୁଣ ।
ଉଠିଣ ଦେଖିଲି ହୋଇଛି ନିଶି ।
ଅନ୍ଧାର କାଳ ନ ଦିଶଇ କିଛି ।
ବାସ ଫୁଲ ମୋର ବେଣୀରେ ଦେଇ ।
ଚନ୍ଦନ ଅଗର ଦେହେ ବୋଳଇ ।
ତା ଦେଖି ମୋହୋର ବଳିଲା ଚିତ୍ତ ।
ନାନା ଛନ୍ଦରେ କଲେ ବିପରୀତ ।
ଲୀଳା ସାରି ପୁଣି ଭୋଜନ କଲେ ।
ମୋର ପୁରରୁ ଅନ୍ତର ହୋଇଲେ ॥
ନିଶି କେଣେ ଗଲା ଦିନ ହୋଇଲା ।
ନଣନ୍ଦ ଆସି ମୋତେ ଗାଳି ଦେଲା ।
କିସ କରୁ ତୁ ଗୋ ସୁନ୍ଦରି ବସି ।
ଭୋଜନ ବେଳ ତ ହୋଇଲା ଆସି ।
ଶୁଣି କରି ଉଠି ଜଞ୍ଜାଳ ସାରୁ ।
ଅନ୍ନ ବ୍ୟଞ୍ଜନ ବେଗେଣ ତିଆରୁ ।
ଭୋଜନ କଲେ ଜଟିଳା ଯେ ମୋର ।
ସେ କୃଷ୍ଣ କଥା ଗୋ ଏହ୍ନ ପ୍ରକାର ।
ମରୁଥି ଗୋପିକା ତହୁଁ କହିଲେ ।
କେତେ ଲୀଳା କରି ମଥୁରା ଗଲେ ॥
ତାଙ୍କ ଆଶାରେ ଆମ୍ଭେ ସର୍ବନାଶୀ ।
ଗୁରୁସ୍ତ ପୁତ୍ର ଘର ଦୂର କରି ।
ଅନୁକ୍ଷଣେ ମନ ତାଙ୍କରି ଠାରେ ।
ଶୋଇବା ବସିବା ଖାଇବା ବେଳେ ।
ଆଉତ ଜଞ୍ଜାଳ ଦଧି ମନ୍ଥନ ।
ସବୁ ବେଳରେ ତାଙ୍କ କଥାମାନ ।
ଆମ୍ଭ ବିକଳ କି ଜାଣିମେ ସେହୁ ।
ଚନ୍ଦ୍ରକୁ ଯେସନେ ଘୋଟଇ ରାହୁ ।
ସୂର୍ଯ୍ୟ କୁମୁଦକୁ ଦେଖି ନିରାଶ ।
ଭ୍ରମର ନ ଯାଏ କେତକୀ ପାଶ । ୬୫ ।
କାଳ ସର୍ପ ଭୟେ ମଣ୍ଡୂକୀ ପୁଣ ।
ଦିବସେ ବାହାର ନୋହଇ ଜାଣ ।
ଗଙ୍ଗାଜଳ ମାଟି କଳସ ନେଇ ।
ସୁବର୍ଣ୍ଣ ଝାରୀରେ ପୂରେଇ ପିଇ ।
ସେହୁ ପୁଣି ହୋଏ ଯେତେକ ଦୃଶ ।
କେହୁ ହେବ ମାଟି କଳସେ ତୋଷ ।
ଅର୍ଦ୍ଧହସ୍ତେ ବସ୍ତ୍ର ମୁଦି ଥୋଇଲେ ।
ତାହାକୁ ଲାଗଇ ତୃଣ ତୁଲେ ।
ସୁବର୍ଣ୍ଣ ପଞ୍ଜୁରୀ ଭିତରେ ପେଶି ।
ରହିଲେ କୋରଡ଼ ପୁମରେ ଏକା
ସେହିରୂପେ ଆମ୍ଭେ ଗୋପ ଯୁବତୀ ।
ଆମ୍ଭଙ୍କୁ ବଳିଲେ ମଥୁରା ସତୀ ।

ଆମ୍ଭ ଗରବ ଭାଙ୍ଗିବାର ପାଇଁ ।
ମଥୁରାପୁରକୁ ଗଲେ ମାଧୋଇ ।
ରାଜା ମାରଣ ତହିଁ ପ୍ରଭୁ ହେଲେ ।
ଦେବ କନ୍ୟା ଭୋଗ କରି ରହିଲେ ।
ଏମନ୍ତ ବିଚାର କରନ୍ତେ ବସି ।
ଦକ୍ଷିଣ ପବନ ବହିଲା ଆସି ।
ଶୀତଳ ଲାଗିଲା ଗୋପୀଙ୍କ ଦେହ ।
ବୋଇଲେ ଆମ୍ଭରେ ବହୁତ ସ୍ନେହ ।
ଅଗ୍ନି ଲାଗିଲେ ପାଣି ଯେହ୍ନେ ପଡ଼େ ।
ଚନ୍ଦନ ସେ ଯେବେ ଗ୍ରୀଷମ କାଳେ ।
ଘୃତ ଯେସନେ ଅନ୍ନରେ ବାସଇ ।
ପ୍ରାସ ବେଳରେ ମକ୍ଷୀ ବେକେ ଥାଇ ।
ଶୁଦ୍ଧ ସନ୍ଧାନ ସ୍ତ୍ରିରି ମନ ତୋଷ ।
ପୁରୁଷ ଥିଲେ ହୋଇ ଦ୍ରବ୍ୟ ବେଶ ।
ଚୂଆ ଚନ୍ଦନ ନାନା ବାସ ଯେନ୍ନ ।
ପୁରୁଷ ସଙ୍ଗରେ ବିହାର ପୁଣି ।
ଉତ୍ତମ ମଣଇ ସେହିକ ସୁଖ ।
ନ ଥିଲେ ମନରେ ହୋଇ ବିମୁଖ ।
ସେହିରୂପେ ପୁଣି ସକଳ କଥା ।
ହରି ଗଲାରୁ ହେଲା ମନ ବ୍ୟଥା ।
ଅନ୍ନ ଜଳ ଯେ ନ ରୁଚଇ ପୁଣ ।
ଚନ୍ଦ୍ର ଚରଣ ହରାଇବା ପ୍ରାଣ ।
ତାହା ଶୁଣି ଏକ ଗୋପୀ ବୋଇଲା ।
ଗୁଣ ଶୁଣିଣ ହନ ନ ସରିଲା ।
ଆମ୍ଭଙ୍କୁ ଭଗାରି ଅକ୍ରୁର ହୋଇ ।
ସେହୁ ନ ମଲା ଗୋ ଅଛୁ କଣ୍ଠାଇ ।
ଆଉ ବେଳେ ଯେବେ ଗୋପେ ଆସନ୍ତା ।
ପରାଣ ଯେନ ଯମପୁରେ ଯାନ୍ତା ।
ଆମ୍ଭମାନଙ୍କର ଜାଣନ୍ତା ବଳ ।
ମୁଣ୍ଡ ଛେଦଣ ପୂରନ୍ତୁ ତା କାଳ ।
ଏବେ ହେଲୁଁ ଆମ୍ଭେ ବିଦେଶୀ ନାରୀ ।
ସ୍ୱାମୀକ ନ ଦେଖି ମରୁଛୁ ଝୁରି ।
ଏତେ ବୋଲି ଗୋପୀ ରୋଦନ କରି ।
ଯେସନେ ଶୁଭେ ସମୁଦ୍ର ଲହରୀ ।
କେହୁ ପଡ଼ିଯାଏ କେ ବସି ରୋବେ ।
କେହୁ ପ୍ରବୋଧ କରେ ନାନାଭାବେ ।
ସେଠାରୁ ଗୋପୀ ଯେଝା ଘରେ ଗଲେ ।
ଦାସ ବନାଇ ମାଧବେ ସେବିଲେ ।



# ଅଷ୍ଟମ ଛାନ୍ଦ

ଏଥୁ ଥନନ୍ତରେ ଗୋପୀଙ୍କ କଥା ।
ପାର୍ବତୀ ଅଗ୍ରେ କହେ ପଶୁପତି । ୧ ।
ଶୁଣ ଶାକମ୍ଭରୀ ଗୋପୀଙ୍କ ବାଣୀ ।
କୃଷ୍ଣ ଯିବାରୁ ଗୋପୀ ଦୁଃଖ ପୁଣି ।
ବିକଳ ହୋଇଣ ମନରେ ଜାଣ ।
କୃଷ୍ଣ କରିବା ଥିଲା ଯେତେ ଗୁଣ ।
ସହସ୍ରେ ଗୋପୀ ଗୋଟିଏ ନାୟିକା ।
ସମସ୍ତଙ୍କ ଶିରୋମଣି ରାଧିକା ।
ରାଧିକା ପାଇଁ କୃଷ୍ଣ ଗୋପେ ଜାତ ।
ଅଷ୍ଟ ବରଷ ରହିଲେ ଅନନ୍ତ । ୫ ।
କଂସ ମାରିବାକୁ ମଥୁରା ଗଲେ ।
ଗୋପର ଯୁବତୀ ଅନାଥ ହେଲେ ।
ପୂର୍ବ କଥାମାନ ମନେ ହେଜନ୍ତି ।
ଏକ ଆରକେ କୋହାକୋହି ହୋନ୍ତି ।
ଏକ ଦିନରେ କୁଞ୍ଜଲତା ପୁଣି ।
ସହସ୍ରେ ସୁନ୍ଦରୀ ସଙ୍ଗରେ ଘେନି ।
ଅମ୍ବିକାକୁ ପୂଜି ବଚନ କହି ।
କେଉଣେ ଛଡ଼ିଗଲ ଯଶୋଦା ପୋଇ ।
ଅଛନ୍ତି କି ସଖି ତୁମ୍ଭ ମନର ।
ଦିନେ ଯାହାକଲେ ରାଧା ମନ୍ଦିର । ୧୦ ।
ଏକୁଡ଼ି ଶାଳରେ ଶ୍ରୀନନ୍ଦନର ।
ବିଜେ କଲେ ଚନ୍ଦ୍ରବଦନୀପୁର ।
ସହଜେ ବାଳୁତ ଅଟନ୍ତି ସେହି ।
ରାଧିକା ଯୁବା ତୋର ଅଟେ ଦେହି ।
କେହି ନାହିଁ ଏକା ପଲଙ୍କେ ଥିଲେ ।
ଦୂତୀଙ୍କୁ ଘେନି କହ୍ନାଇ ଚଳିଲେ ।
ନଟବର ବେଶ ଗୋଟିଏ ହୋଇ ।
ନଶି ଦୁଇଘଡ଼ି ମିଳିଲେ ଯାଇଁ ।
ଦେଖିଲ ରାଧିକା ଖଙ୍ଗୁଳି ପାନ ।
ମଦନ ମୋହନ ବିଜୟେ ପୁଣ । ୧୫ ।
ଦେଖି ଚନ୍ଦ୍ରାବଳୀ ବଚନ କହୁ ।
ଏ ଜଣକ ତୁମ୍ଭ ସଙ୍ଗେ କି ସହୁ ।
ଦୂତିକା ବୋଇଲେ ଜାଣ ନାହିଁ କି ।
ନନ୍ଦପୁଅ ବିଜେ ତୁମ୍ଭ ଚହିଁକି ।
ତୁମ୍ଭେ ତାଙ୍କୁ ରତି ସୁରତି ଦେବ ।
ପଛେ ସିନା ସର୍ବ ଗୋପୀ ରମିବ ।
ତାହା ଶୁଣି ରାଧା କ୍ରୋଧ ହୋଇଲେ ।
ମୁଁ ତ ନଟକାରୀ ନୁହଇ ଭଲେ ।
ମୋର ପୁରକୁ ନାଗର ଆଣିଛୁ ।
ନାନା କଥାମାନ ତୁମ୍ଭେ କହୁଛୁ ।୨୦।
ନନ୍ଦ ପୁଅ ମୋର ଅଟେ ଭଣଜା ।
ଭିନ ଦିନର ବାଳୁତ ତନୁଜା ।
ସେ ପୁଣି କିରୂପେ ନାଗରବର ।
ଏ କଥା ମୋତେ ନୁହଇ ଗୋଚର ।
ବେଗେ ଘେନି ଚଲ ମୋ ପୁରୁ ପୁଣି ।
ଶାଶୁ ନଣନ୍ଦ ଆସିବେ ଏଖଣି ।
ଯାଙ୍କୁ ଦେଖିଲେ ମୋତେ ନ ରଖିବେ
ବାଡ ଲଗାଇ ଦୋଶୁଣୀ କରିବେ ।
ଶୁଣିଣ ଶ୍ରୀକୃଷ୍ଣ ବୋଇଲେ ପୁଣି ।
ତୁ ମୋର ପରାଣି କହୁ କି ବାଣୀ ॥

୨-୧—ଶାକମ୍ଭରୀ ।

ତୁମ୍ଭପାଇଁ ମୁଁ ଯେ ଗୋପେ ଜନମ ।
ପୂର୍ବ ହେତୁ କଥା ନାହିଁ କି ମନ ।
ଆଗେ ତୁମ୍ଭେ ମୋତେ ସୁରତ ଦେଅ ।
ବ୍ରଜସୁନ୍ଦର ପଛେ ହେବେ ପ୍ରିୟ ।
ଶୁଣିଣ ରାଧା କଥା ନ କହିଲା ।
ଦୂତିକା ଲେଉଟି ଯେନ ଚଳିଲା ।
ଦୂତୀକି କହେ ମଦନ ମୋହନ ।
ଆଜ ରାଧାସଙ୍ଗ ନୋହିଲା ପୁଣ ।
ତୁମ୍ଭେ ପୁଣି ତୁମ୍ଭ ଘରକୁ ଯାଅ ।
କେତେ ନିଷ୍ଠୁର ଚନ୍ଦ୍ରାବଳୀ ଦେହ ॥
କେଡ଼େ ନୀବ ବନ୍ଧେ ରହିବ ଆଜ ।
ଦେଖିବା ତାର କେତେ ଅଛି ଦମ୍ଭ ।
ଦୂତିକା ଚଳଲେ ନିଜ ପୁରକୁ ।
କାହ୍ନୁ ଚଳିଗଲେ ନୀପମୂଳକୁ ।
ବସି ବିଧାତାକୁ ସ୍ମରେ ତହିଁ ।
ଜାଣିଣ ବିଧାତା ମିଳିଲେ ଯାଇ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ହେ ଧାତା ।
ଛାର ଗୋପାଳୁଣୀ ନ ଘେନେ କଥା ।
କେତେହେଁ ଏହାକୁ ଶୃଷ୍ଟି କରିବା ।
ଗୋପରୁ ଆମ୍ଭେ ମଥୁରା ଚଳିବା । ୩୫ ।
ଶୁଣିକରି ବ୍ରହ୍ମା ବଚନ କହି ।
ସଦାଶିବ ବର ବିଅର୍ଥ ହୋଇ ।
ଅଷ୍ଟ ବରଷ ଏଥି ଲୀଳା ହେବ ।
ତେବେ ସିନା କଂସ ନାଶ ହୋଇବ ।
ମୁରଲୀ ଗୋଟିଏ ଦେଇଣ ଗଲେ ।
ବୋଇଲେ ମୋହ ହୋଇବେ ସକଳେ ।
ବ୍ରହ୍ମା ଦେଇଣ ନିଜପୁରେ ଗଲେ ।
ମୁରଲୀ ଧରି ଛଇଲ ବାଇଲେ ।

ରାଧା ରାଧା ବୋଲି ଡାକିଲେ ଯହୁଁ ।
ବ୍ରଜସୁନ୍ଦରୀ ମୋହ ହେଲେ ତହୁଁ ।
ଲାଗିଲା ବିରହ ହୋଇଲେ ଭୋଳ ।
ବୋଲନ୍ତି କେଣେ ଗଲା ଦୂତୀ ପଲା ।
ସଖୀ ଦୁଇଜଣ ଘେନି ସଙ୍ଗରେ ।
ପ୍ରବେଶ ହୋଇଲେ ଦୂତୀ ମନ୍ଦିରେ ।
ଦୂତୀକି ଘେନି ଚଳେ ବେଗେ ରାଈ ।
କଦମ୍ବ ମୂଳରେ ମିଳିଲେ ଯାଇଁ ।
ରାଧାଙ୍କୁ ଦେଖିଣ ମାଧୋଇ ପୁଣ ।
ମୁରଲୀସ୍ୱନେ ଗୋପୀଙ୍କି ରାଇଣ ।
ଷୋଳ ସସ୍ର ଗୋପୀ ମିଳିଲୁଁ ପୁଣ ।
ସମସ୍ତଙ୍କୁ ଦେଖି ସେ ନାରାୟଣ । ୪୫ ।
ଗୋଟିକେ ଗୋଟିଏ ରୂପ ହୋଇଲେ ।
ସମସ୍ତଙ୍କୁ ରତି ସୁରତ କଲେ ।
ରଜନୀ ଅଛି ଦୁଇଘଡି ପୁଣ ।
ସେଠାରୁ ଅନ୍ତର ହେଲେ ଆପଣ ।
ତାଙ୍କୁ ନ ଦେଖି ଯେଝା ଘର ଗଲୁ ।
ପଲଙ୍କ ଉପରେ ଯାଇଁ ଶୋଇଲୁ ।
ଜାଣି ତ ଅଛ ଗୋ ସେ ଦିନ ରାତି ।
ଦିନ ଦିନର ନନ୍ଦପୁଅ ଗତି ।
ତେତେ ସୁଖ କରି ଛାଡ଼ିଣ ଗଲେ ।
ଯାଇଣ ମଥୁରାପୁରେ ରହିଲେ । ୫୦ ।
ତା' ଶୁଣି ଆର ଗୋପିକା ବୋଲଇ ।
ଦିନେ ଯାହା କଲେ ମୋତେ ମାଧୋଇ ।
ଖରାବେଳେ ମୁଁ ଯମୁନାକୁ ଗଲି ।
କଦମ୍ବ ମୂଳରେ ଯାଇଁ ମିଳିଲି ।
ମୋତେ ଦେଖିକରି ଦେବାଧିରାଜ ।
କୁଞ୍ଜବନରୁ ହୋଇ ଦିବ୍ୟସଜ ।

୪୩. ୨—ନୀର (ଖ,ଗ) ।

ମୋର ପାଶେ ଯାଇଁ ହେଲେ ପ୍ରବେଶ
ବୋଇଲେ ଚଲ ଗୋ ଯମୁନା ପାଶ ।
ଗ୍ରୀଷମ ବେଳରେ ଜଳେ ପଶିବା ।
ଜଳକ୍ରୀଡ଼ା କରି ଶୀତଳ ହେବା ।୫୫।
ତାଙ୍କ ବୋଲରେ ଯମୁନା ପଶିଲି ।
ସେହି ପଶିଲେ ଜଳକ୍ରୀଡା କଲି ।
ଜଳକ୍ରୀଡା କରି ଅଇଲି ଘର ।
ସେହି ଚଳିଗଲେ କୁଞ୍ଜବନର ।
ସେଦିନ ପ୍ରୀତି ମୋ ଏକାନ୍ତେ ହୋଇ ।
ମନରୁ ସେ କଥା ଛଡ଼ି ନୁହଇ ।
ଆଉ ଗୋପୀ ଶୁଣି ଥାଇ ବୋଇଲା ।
ମୋ ପୁରେ ନାଗର ଦିନେ ମିଳିଲା ।
ଶାଶୁ ଗୁରୁଜନ ନାହାନ୍ତି ମୋହର ।
ଏହି ସମୟେ ଯଶୋଦା କୁମର ।୬୦।
ଗୁଆ ପାନ ଆଣି ଦେଲି ମୁଁ ଖରେ ।
ବସ ବୋଇଲି ପଲଙ୍କ ଉପରେ ।
ବସିଣ ପାନ ଭାଙ୍ଗିଣ ଭୁଞ୍ଜିଲେ ।
ମୋତେ କୋଳ କରି ଚୁମ୍ବନ ଦେଲେ ।
ବୋଇଲେ ମୁଁ ଫୁଲ ଆଣିଛି ମାଳ ।
ଜୁଡାରେ ମଣ୍ଡ ଗୋ ସୁନ୍ଦରି ତୋର ।
ଏତେ ବୋଲି ମାଳ ହସ୍ତରେ ଦେଇ ।
କୋଳ କରି ମୋତେ ବସାଏ ନେଇ ।
ଗଭା କରି ମୁଣ୍ଡେ ଫୁଲ ଖଞ୍ଜିଲେ ।
ବେଶ କରିଣ ରତିରସ କଲେ ।୬୫।
ବାଳକ ରୂପ ଦେଖିଣ ଗୋସାଇଁ ।
ବାଳକ ହୋଇଣ ଖେଳିଲେ ଯାଇଁ ।
ବେଳ ବୁଡ଼ିଲା ନିଜଘର ଗଲେ ।
ସେ ଦିନ କଥା ଗୋ ମନରେ ଭାଳେ ।
ତାହା ଶୁଣି ଏକ ଗୋପୀ ବୋଇଲା ।
ଏଥିଁ ଗଣ୍ଠ କୃଷ୍ଣ ଭଲ ହୋଇଲା ।
ରାଜା ମାରିଣ କଲେ ବଡ଼ପଣ ।
କାଳକୁ ଯେ କଥା ରଖିଲେ ଜାଣ ।
ଦଶରଥ ଘରେ ରାମ ଜନମ ।
ସୀତାର ଛଳେ ସେତୁବନ୍ଧ ପୁଣ । ୭୦ ।
ରାବଣ ମାରି ବିଭୀଷଣ ରାଜା ।
ଦେବତାମାନେ ହରଷରେ ପୂଜା ।
ରଘୁନାଥ ନାମ ବିଖ୍ୟାତ ତେଣୁ ।
ଅସୁରମାନେ ଡ଼ରିଲେକ ଯେଣୁ ।
ଅଯୋଧ୍ୟା ଲୋକଙ୍କୁ ସ୍ୱଦୟା କଲି ।
ସ୍ୱର୍ଗପୁରକୁ ସଙ୍ଗେ ଘେନି ଗଲେ ।
ଏବେ ଅସୁରଙ୍କୁ ନାଶିଣ ହରି ।
ମଥୁରାପୁରୁ ଆସିବେ ମୁରାରି ।
ଗୋପାଳ କୁଳରେ ଭାଗ୍ୟ ହୋଇଲା ।
କୃଷ୍ଣ ଗୋପାଳ କଂସକୁ ମାଇଲା ।୭୫।
ଏ କଥାମାନ ତ କେଣେ ନ ଯିବ ।
ଅନ୍ୟ ଯୁଗରେ ଗୋ ପୋଥା ହୋଇବ ।
ତାହା ଶୁଣି ଆଉ ସୁନ୍ଦରୀ କହେ ।
ବିରହ ଜାଳାରେ ଶରୀର ଦହେ ।
ସମୟ ବେଳରେ ହେଲେ ଅନ୍ତର ।
ବଡ ଲୋକ ହେଲେ ନନ୍ଦକୁମର ।
ଅମ୍ଭମାନଙ୍କୁ କଷ୍ଣା ଅନାଇବେ ।
ରାଜକୁମାରୀ ସଙ୍ଗେ ବିହରିବେ ।
ତିନି ପୁରର ପ୍ରଭୁ ଯେଉଁ ହରି ।
ସେ କଷ୍ଣା ଅମ୍ଭଙ୍କୁ ଆଦର କରି ।୮୦।

୬୦-୨—ହୋସଦା—ଅଧିକାଂଶ ପୋଥିରେ । ୬୩-୨—ଚୂଡ଼ା [ଗ,ଚ,ଝ] । ୬୭-୨—ବାଳେକ—ସବୁ ପୋଥିରେ । ୬୯-୨—ସେ କଥା [ଚ,ଛ,ଝ] । ୭୧-୧—ବିଭୀଷେଣ—ପ୍ରାୟ ସମସ୍ତ ପୋଥିରେ ।
୭୬-୨—ମ୍ଲାର [ଖ], ଗସ୍ତର [ଝ] ।

ଯେତେ ଦିନ ଆମ୍ଭ ତପସ୍ୟା ଥିଲା ।
ବନ ପର୍ବତ ଯେନ ଖେଳୁଥିଲା ।
ଏବେ ସେ କଥାମାନ ସବୁ ଛାଡ଼ ।
ଗୋବିନ୍ଦ ଚରଣେ ସେବିବା ଗାଢ଼ ।
ଏ ଜନ୍ମରୁ ଯେବେ ହୋଇବା ପାର ।
ନାରାୟଣଙ୍କୁ ସୁମରଣା କର ।
ତାହା ଶୁଣି କୁଞ୍ଜଲତା କହଇ ।
ତାଙ୍କ ଭାବ କି ମନରୁ ଯିବଇ ।
ଏକ ଦିନକରେ ଯମୁନା ଘାଟ ।
ପ୍ରବେଶ ହୁଅନ୍ତେ ଦେଖିଲେ ନାଟ ॥
ବାଳକ ମାନଙ୍କୁ ଘେନି ସଙ୍ଗରେ ।
ଲୀଳା କରୁଛନ୍ତି ରହି ମଧ୍ୟରେ ।
ମୟୂର ଚନ୍ଦ୍ରିକା ଚୂଳରେ ଅଛି ।
ଛଳ ଚଳଣ ନାଚେ ଶିଖିବଛି ।
ତାହା ଦେଖି ମୁଁ ଯେ ଆନନ୍ଦ ହେଲି ।
ପଥରେ ଛୁଡ଼ା ହୋଇଣ ରହିଁଲି ।
ତାହା ଶୁଣି ଏକ ଗୋପୀ କହନ୍ତି ।
ଯେତେ କଥା ସବୁ ସପନ ହେଲା ।
ନେତ୍ରରେ ଯେବେ ଦେଖିବାକୁ ପୁଣ ।
ସନ୍ତୋଷ ହୋଇବ ସବୁରି ମନ ।୯୦।
କହିଲେ କି ଶେଷ ଯିବ ଆମ୍ଭର ।
ଗ୍ରୀଷମ କାଳେ ଯେସନେ ଶଶଧର ।
ଉଇଁଲେ ସମସ୍ତେ ଆନନ୍ଦ ହୋନ୍ତି ।
କ୍ଷୁଧା କି ଭାଗଇ ଦିବସ ରାତି ।
ପାଣି ଶୀତଳ ଗୋ ସବୁ ଦିନରେ ।
ଫୁଲ ସୁନ୍ଦର ବସୁଧ ଥିବାରେ ।
ବାସ ସୁନ୍ଦର ଗୋ ଚୂଳରେ ପୁଣ ।
ଅଲଙ୍କାର ଶୋଭା ସବୁ ଦିନେଣ ।
କ୍ଷୀଣ ବସନ ସବୁ ଦିନେ ତୋଷ ।
ରୂପବନ୍ତୀର ଯେସନେ ରୂପ ଗୋଷ ॥
ମେରୁ ଶୃଙ୍ଗରୁ ଗଙ୍ଗା ବହି ଆସେ ।
ସବୁଦିନେ ସେହୁ ନିର୍ମଳ ଦିଶେ ।
ଏତେ ବୋଲି ଗୋପୀ ଖେଦନ କଲେ ।
ଛାଡ଼ିକରି ଯାଇଁ କେଉଁଣେ ରହିଲେ ।
ଗୋବିନ୍ଦ, ମାଧବ, ମଧୁସୂଦନ ।
କେଉଁଣେ ଲୁଚିଇଲ କଳାବଦନ ।
ଏମନ୍ତେ ବିଳାପ ବଚନ କହି ।
ମେଲ ଭାଙ୍ଗିଣ ଯେଝା ଘର ଯାଇ ।
ସମସ୍ତଙ୍କ ମନ ହୋଇ ନୀରସ ।
ଦାସ ଦିନାଇ ସେବେ ଗୋପୀନାଥ ॥



୮୧-୨—ପର୍ବତେ [ଖ,ଗ] । ୮୭-୧—ମୟୂର ଚନ୍ଦ୍ରିକା ୮୮-୨—ପଥଡ଼େ [ଖ,ଡ଼], ୮୮-୨—ହୋଇଣ ରହିଲି [କ] । ୧୦୦-୧—ହୋଇ ଅନାଥ [ଗ] ।

# ନବମ ଛାନ୍ଦ



ପାର୍ବତୀ ବୋଇଲେ ଶୁଣ ଈଶାନ ।
କଂସ କଲେ ସବୁ ଗୋପୀଙ୍କୁ ପୁଣ ।
କଂସ କଥାମାନ ପୁଣ କହିଲେ ।
କେମନ୍ତ ପ୍ରକାରେ ହନ ବଞ୍ଚିଲେ ।
ଦେବତା ଦୁର୍ଲ୍ଲଭ କହ ହେ ମୋତେ ।
ହର କଥା ଶୁଣି ଶରଧା ଚିତ୍ତେ ।
ତାଙ୍କଠାରୁ ଶୁଣି ଈଶର କହି ।
ପୂର୍ଣ୍ଣିମାସୀ ସଙ୍ଗେ ସହସ୍ରେ ଗୋଈ ।
ମେଳ ହୋଇଣ କଥା ହୋନ୍ତି ପୁଣ ।
ବିଚାର କରନ୍ତି ଶ୍ରୀକୃଷ୍ଣ ଗୁଣ । ୫ ।
ପୂର୍ଣ୍ଣିମାସୀ ବୋଲେ ଶୁଣ ସୁନ୍ଦରି ।
ତେଜି କରି ଗଲେ କୁଞ୍ଜବିହାରୀ ।
ପକ୍ଷେ ହୋଇଲା ମଥୁରା ରହିଲେ ।
ଯାଦବମାନ ଯେତେ ବିହରିଲେ ।
ପ୍ରଭିଦିନ ସଭା କରନ୍ତି ତହିଁ ।
ରାମ ଗୋବିନ୍ଦ ଦୁଇ ଭାଇ ଯାଇଁ ।
ରଙ୍ଗସଭାରେ ବିଜେ ଯାଦବଂଶ ।
ଉଗ୍ରସେନ ରାଜା ଯେତେ ବିଶେଷ ।
ଗୋପର କଥା ପାସୋର ହୋଇଲା ।
ବୃନ୍ଦାବନ ଲୀଳା କେଣିକି ଗଲା ।୧୦।
ଦିନେ ମୋ ପାଶେ ଅଇଲେ ମାଧୋଇ ।
ବୋଇଲେ ପ୍ରସନ୍ନ ହୋଇବୁ ତୁହି ।
ରାଧା ପୁତ୍ରେ ଅମ୍ଭେ ହୋଇବୁ ଭୂତ ।
ସମସ୍ତେ ଦେଖି ହେବେ ସ୍ତମ୍ଭୀଭୂତ ।
ଗୋପ ନବରେ ହାଲ୍ଲେଲ ପଡ଼ିବ ।
ମାଜଣା ମୁଣୋହିଁ ତୋଠାରେ ହେବ ।
ପ୍ରସନ୍ନ ହୋଇ ଗୋପାଳେ କହିବୁ ।
ଯାଇଁ ଭୂତ ପୂଜା କରରେ ବାବୁ ।
ତୁମ୍ଭେ କହିବାରୁ ସତ ହୋଇବ ।
ଗୋପୀ ଗୋପାଳଙ୍କୁ ଭୟ ଲାଗିବ ।୧୫।
ଏତେ ବୋଲି ମୋତେ କହିଣ ହରି ।
ରାଧା ମନ୍ଦିରେ ଭୂତ ରୂପ ଧରି ।
କେ ବୋଲେ ରାଧାଙ୍କୁ ଖାଇଲା ଭୂତ ।
ଚନ୍ଦ୍ରସେଣା ପୁଣି ହେଲା ଅନାଥ ।
କେ ବୋଲେ କେମନ୍ତ କରିବା ପୁଣି ।
କେ ବୋଲେ ମଲା ରାଧା ଠାକୁରାଣୀ ।
କେ ବୋଲେ ବିପତ୍ତି ପଡ଼ିଲା ଆସି ।
କେ ବୋଲେ କେମନ୍ତେ ରହିବା ଏଥି ।
କେ ବୋଲଇ ଗୋପେ ବଢ଼ୁଛି ଦ୍ୱନ୍ଦ ।
ବେଳକୁ ବେଳ ପଡ଼ୁଛି ପ୍ରମାଦ ।୨୦।
ଏମନ୍ତ ବୋଲି ସର୍ବେ କଥା ହୋଇ ।
ଗୋପ ନଗରେ ହାଲ୍ଲେଲ ପଡ଼ଇ ।
ସମସ୍ତ ଗୋପାଳ ରୁଣ୍ଡ ହୋଇଣ ।
ବିଚାର କଲେ ନନ୍ଦଦ୍ୱାରେ ପୁଣ ।
ମେଳ ହୋଇକରି ତହିଁ ଆସିଲେ ।
ଚନ୍ଦ୍ରସେଣା ଦ୍ୱାରେ ପ୍ରବେଶ ହେଲେ ।

୧୨-୨—ଅନାସ୍ତ ସବୁ ପୋଥିରେ । ୨୧-୨—ନବରେ (ଗ,ଘ,ଙ)।

---

୪-୨—ପୌର୍ଣ୍ଣମାସୀ ସଂସ୍କୃତ ଶବ୍ଦର ଅପଭ୍ରଂଶ—ପୂର୍ଣ୍ଣମାସୀ ।

* ଗୋପୀଭୂଷଣ।

ପ୍ରବୋଧ କରି କହିଲେ ବୃଢଙ୍କୁ ।
ସେ ବୋଇଲେ ପୂଜା ଦିଅ ଅମ୍ଭଙ୍କୁ ।
ଗ୍ରାମଦେବତା କି ସନ୍ତୋଷ କର ।
ସେ ପୁଣି କହିବେ ଅମ୍ଭ ବେଭାର ।
ଶୁଣି କରି ମୋତେ ପ୍ରସନ କଲେ ।
ମୋଠାରୁ ଶୁଣି କରି ପୂଜା ଦେଲେ ।
ସେହିଦିନରୁ ଗୋ ଜାଣଇ ମୁହିଁ ।
ଗୋପରେ ନାରାୟଣ ଜାତ ହୋଇ ।
ଅଷ୍ଟବରଷ ପରଯନ୍ତେ ଲୀଳା ।
ଗୋପପୁରେ କଲେ ଯଶୋଦାବାଳା ।
ସମସ୍ତଙ୍କ ସଙ୍ଗେ ବିହାର କରି ।
ମୁରଲୀ ସ୍ୱନେ ବାଇ ଗୋପନାରୀ ।
ସ୍ୱଚ୍ଛନ୍ଦବସେ ଯେତେଣ ବୁଲିଲ ।
ନାନା କଥାରେ ଗାଳମନ୍ଦ କଲ ।
ଏବେ ତ ଅନ୍ତର ହୋଇଲେ ହରି ।
ବଂଶୀ ଧରୁଛି ଗୋପ-ଗୁଆଳ ।
ଲୋଡ଼ିଲେ କି ଅଉ ପାଇବ ପୁଣ ।
ଚେଳ କରି ଗଲେ ନନ୍ଦନନ୍ଦନ ।
ଏହା ଶୁଣି ଆର ଗୋପୀ ବୋଇଲା ।
ସଙ୍ଗେ ନ ନେଇ କାହ୍ନା ଛାଡ଼ିଗଲା ।
ଯାହା ସଙ୍ଗେ ଯେତ୍ତେ ପୀରତି କରେ ।
ଛାଡ଼ି କରି ଗଲେ କି ଭାବ ତାରେ ।
ତା ଶୁଣି ଏକ ଗୋପୀଏ କହିଲା ।
ପୋଡା ଘାଅରେ ହରି ଚୂନ ଦେଲା ॥
ବିଶ୍ୱାସ କରିଣ ଥିଲୁଁ ସମସ୍ତେ ।
ନ ଦେଖିଲେ ପ୍ରାଣ ଯାଏ ଭୁରତେ ।
ଏକ ଦିନକରେ ଛାଇଲବର ।

ଖେଳି ଖେଳି ଗଲେ ମୋହ ମନ୍ଦର ।
ଧୂଳିରେ ଧୂସର ହୋଇଣ ସେହି ।
ଦେଖିଣ ମୁଁ ତାଙ୍କୁ ଦେଲି ଗାଧୋଇ ।
ଝୀନ ବସନରେ ପୋଛିଲି ପୁଣ ।
ବାସ ପଦାର୍ଥ ଦେହରେ ଘଷିଣ ।
ଖାଇବାକୁ ଦେଲି ସର ଲବଣୀ ।
ବସିଣ ପାନ ଭୁଞ୍ଜାଇଲି ପୁଣି ।
କୋଳରେ ଯେତେଣ ଶୋଇଲି ସୁଖେ ।
ବାଳକ ଯୁବା ହୋଇଲେ ପ୍ରତକ୍ଷେ ।
ବିବସନ କରି କଲେକ ରତି ।
ନାନା ବନ୍ଧରେଣ କରି ସୁରତି ।
ପହରେ ପରଯନ୍ତେ କଲେ ଲୀଳା ।
ଯେସନେ ମର୍ତ୍ତ୍ୟକୁ ସ୍ୱରଗ ପରି ।
ମୋତେ ଲାଗିଲା ତେସନ ପ୍ରକାର ।
ଗ୍ରୀଷମକୁ ଯେସନେ ଚନ୍ଦନନୀର ।
ସୁରତି ସାରିଣ ହେଲେ ବାଳକ ।
ଦେଖିଣ ମୁହିଁ ହେଲି ସ୍ତମ୍ଭିଭୂତ ।
ଭୁରତେ ବସନ ପିନ୍ଧିଲି ମୁହିଁ ।
ଗୃହଦିନରେ ଦେଖୁ ଶ୍ରମ ଯାଇ ।
ସେହିଦିନରୁ ମୁଁ ଜାଣିଲି ଭଲେ ।
ସେ କଥା ତେଜି ମଥୁରାକୁ ଗଲେ ।
ଲବଙ୍ଗଲତା ଗୋପୀ ତହୁଁ କହି ।
ଯମୁନାଜଳକୁ ଗଲି ଗୋ ମୁହିଁ ।
ବାଟରେ ଦେଖିଲି ନନ୍ଦସୁତଙ୍କୁ ।
ଘାଟ ମାଗିଲେ ଦେଖିଣ ଅମ୍ଭଙ୍କୁ ।
ବୋଇଲେ ତୁମ୍ଭେ ପ୍ରତିଦିନ ଆସ ।
ଘାଟ ନ ଦେଇ ଯାଅ ନିଜ ବାସ ।

୨୯-୨—ମୁରଲୀ ସ୍ୱନେ (ଖ,ଗ,ଡ) । ୩୧-୨—ମଣ୍ଡୁଛି ଗୋପ ଗୁଆଳୀ (କ) । ୪୨-୨—ନାନା ବନ୍ଧନରେ (ଙ) । ୪୪-୧—ହେମନ୍ତ (ଚ)

ଆଜ ଭେଟ ହେଲ ସିବ କେଣିକି ।
ସବୁଦିନ କଥା ଛାଡ଼ ତେଣିକି ।
କଂସ ରାଜାର ବନ୍ଧୁତ ଆକଟ ।
ମୋତେ ଇଜରା ଦେଇଅଛି ଘାଟ ।
ଘାଟ ଦେଇ ବାଟେ ଯାଅ ଗୋ ଘର ।
ନୋହିଲେ ରହିବ କୁଞ୍ଜବନର ।
ଘଷାଲ କରି କୁଞ୍ଜବନେ ନେଲେ ।
ନାନା କଉତୁକେ ସୁରତ କଲେ ।
ଲୀଳା ସରନ୍ତେ ମୁଁ ଆଇଲି ଘର ।
କଳସୀ ଗୋଟିଏ ଘେନି କାଖର ।
ମୋତେ ଦେଖିଣ ନଣନ୍ଦ ବୋଇଲା ।
ଆଜ ତ ବନ୍ଧୁତ ଉଚ୍ଚୁର ହେଲା ।
ମୋତେ ନେଲ ନାହିଁ ଜମ୍ମା ସଙ୍ଗରେ ।
ଶ୍ରୀକୃଷ୍ଣ ସଙ୍ଗରେ ପୀରତି କରେ ।
ମୁହିଁ ତ ତୁମ୍ଭଙ୍କୁ କରି ଭରସା ।
ଯୁବାବୟସରେ ହେଲି ମୋ ଦଶା ।
କୃଷ୍ଣ ସଙ୍ଗେ ମୋତେ ଭେଟ କରାଅ ।
ବିରହ ବ୍ୟାଧି ମୋଠାରୁ ହରାଅ ।
ଏତେ ବୋଲି ମୋର ଚରଣେ ପଡ଼ି ।
ମିନତି ହୋଇ କହେ କର ଯୋଡ଼ି ।
ବୋଇଲି ହରିଷ ହିନ ସମ୍ଭାଳ ।
ଭେଟ କରିବ ନେଇ ନନ୍ଦବାଳ ।
ପାସୋରି ହୋଇଗଲା ହିନାନ୍ତର ।
ମୋ ମନ ଜାଣିଣ କୁଞ୍ଜବିହାରୀ ।
ଦୁଇ ପହର ଖରାବେଳେ ପୁଣ ।
ମୋ ପୁରେ ପ୍ରବେଶ ହେଲେ ଆପଣ ।
ଦେଖିଲି ଜଟିଳା ଶୋଇଛି ପୁଣି ।
ନଣନ୍ଦ ବସିଛି କରି ଭ୍ରଲେଣୀ ।
ଶ୍ରୀକୃଷ୍ଣଙ୍କୁ ଦେଖି ହରଷ ହେଲି ।
ଗଙ୍ଗାଜଳ ନେଇ ପାଦ ଧୋଇଲି ।
ବସିବାକୁ ଦିବ୍ୟ ଆସନ ଦେଇ ।
ଶୀତଳ ପଦାର୍ଥ ଖୁଆଇଲି ନେଇ ।
ନଣନ୍ଦକୁ ଘେନି ଆସିଣ ବେଗେ ।
ଭେଟ କରାଇଲି ତାଙ୍କର ଆଗେ ।
ବୋଇଲି ଏହାକୁ ସୁଦୟା କର ।
ବିରହ ଜାଲା ବେଗେ ଯାଉ ହର ।
ଶୁଣିଣ ଶ୍ରୀହରି ବୋଇଲେ ହଉ ।
କୋଳରେ ନେଇ ବସାଇଲେ ପ୍ରଭୁ ।
ନାନା କଉତୁକ ରତି ରସରେ ।
ମୁଖରେ ଚୁମ୍ବନ ଦେଇ ସହରେ ।
ନାନା ବନ୍ଧରେ ରତି ରସ କରି ।
ଯୁବା ବୟସ ସମସ୍ତ ତାହାର ।
ଉଠିଣ ବାଳୀ ବେଗେ ଚଳିଗଲା ।
ମୋଠାରେ ଆସିଣ ପ୍ରବେଶ ହେଲା ।
ଚରଣେ ଓଳଗି ଶୋଇଲା ମୋର ।
ମୁଁ ଯାଇଁ ମିଳିଲି ତାଙ୍କ ଛାମୁର ।
ମୋତେ ଦେଖି କହେ ନବ ନାଗର ।
ଭଲ ପଦାର୍ଥ ଗୋ ଦେଲ ଆଗର ।
ଆସ ଆସ ଆମ୍ଭ ପାଶରେ ବସ ।
କୋଳ କରିଣ ନେଲେ ନନ୍ଦଶିଷ ।
ନାନା ସୁରତ ରତି ମୋର ସଙ୍ଗେ ।
ପ୍ରୀତ ବଢାଇଲେ ଭାବନାଯୋଗେ ।
ଲୀଳା ସାରଣ ପିନ୍ଧିଲି ବସନ ।
ବେଗେ ଚଳିଗଲେ ଯଶୋଦା ଧନ ।
ସେହି ଦିନୁ ମୋର ସଙ୍ଗେ ନଣନ୍ଦ ।
କୃଷ୍ଣ ସଙ୍ଗରେ ପ୍ରୀତରାତ୍ର ଛନ୍ଦ ।

୬୦-୨—ନଜନ୍ତ (ଖ,ଗ,ଘ,ଙ) । ୬୫-୨—ନନ୍ଦୀତ (ଙ) ।

ଗୋପୀ ଶୁଣିଣ ବୋଲଇ ସଙ୍ଘାତ ।
ପ୍ରାଣ ଆମ୍ଭର ଅଟେ ନନ୍ଦସୁତ ।
ଯେତେ ଉପକାର ଅଛି ସେ କରି ।
ତାର ପାଦକୁ ନୋହୁଁ ଆମ୍ଭେ ସରି ।
ପୁଅ ମାନଙ୍କୁ ବନସ୍ତରେ ପୁଣି ।
ଅଜଗର ଗିଳିଦେଲା ତକ୍ଷଣି ।
ସର୍ପକୁ ମାରି ପୁତ୍ର ଜିଆଇଲେ ।
ସେ କଥାମାନ କେ କହିବ ଭଲେ ।
ହିନେ ବ୍ୟାପ୍ତ ହେଲେ ଗୋପ ନଗରେ ।
ରାଧାଙ୍କୁ ସଙ୍ଗୀ କଲେ ଦୁର୍ବାଦରେ ।
ନଣନ୍ଦକୁ ମାୟା କରିଣ ହରି ।
ନାନା ରୂପ ଧରି ବିହାର କରି ।
କେତେ ଦିନରେ କେତେ କଥା କଲେ ।
ଏବେ ଛାଡ଼ିକରି ମଥୁରା ଗଲେ ।
ମଥୁରା ନାରୀଙ୍କ ସମ୍ପଦ ଆଜ ।
ଉଷତ ହୋଇଲେ ଦେଖି ଗୋବିନ୍ଦ ।
ନେତ୍ର ତାଙ୍କର ସୁଫଳ ହୋଇଲା ।
ଦେଖିବାରୁ ଦୁଃଖ ପଳାଇ ଗଲା ।
ସ୍ୱର୍ଗରୁ ଦେବତାମାନେ ଅଇଲେ ।
ନର ସଙ୍ଗତେ ଅଙ୍ଗ ସଙ୍ଗ ହେଲେ ।
ପୁଷ୍ପ ବରଷନ୍ତି ଦେବତା ପୁଣି ।
ନୃତ୍ୟ କରନ୍ତି ନୃତ୍ୟକାରଗଣି ।
ବଡ ଭାଗ୍ୟ କରିଥିଲେ ଦେବକୀ ।
ରାମକୃଷ୍ଣଙ୍କୁ ଅନ୍ନ ପରଶନ୍ତି ।
ବସୁଦେବ କୋଳେ ଯେନ ଶୋଇଲେ ।
ଯାହାଁ କୁମର ରାମକୃଷ୍ଣ ଭଲେ ।
ତା ଶୁଣି ବ୍ରଜସୁନ୍ଦରୀ କହିଲା ।
ଅମ୍ଭ କରମ ଗୋ ମନ୍ଦ ହୋଇଲା ।
ପାଇଲା ପଦାର୍ଥ ହଜିଲା ଯେବେ ।
ନ ପାଇ ବିକଳ ହଉଛୁ ଯୋଗେ ।
ଫଳିଲା ବେଳେ ଗୋ ବୃକ୍ଷ ସୁନ୍ଦର ।
ଆମ୍ଭ ପାଟଲେ ନୀଚ ଅଧିକାର ।
ଆଖୁ ଗଛରୁ ଗୁଡ ଯେସନେ ହୋଇ ।
ଅମୃତ ବୋଲିଣ ସମସ୍ତେ ଖାଇ ।
ସେହିରୂପେ ରାମ ଗୋବିନ୍ଦ ପୁଣି ।
ଯାହାର ନାମ ଧରି ପାପିଜନ ।
ମୁକତ ହୋଇ ସ୍ୱର୍ଗପୁର ଯାଇ ।
ଅମ୍ଭେମାନେ କି ନରୋଧିଲେ ରହି ।
ବ୍ରହ୍ମା ରୁଦ୍ର ଯାକୁ କରନ୍ତି ପୂଜା ।
ସ୍ୱୟଂ ନାରାୟଣ ଦେବାଧିରାଜା ।
ଏତେ ବିଚାର କରି ଗୋପାଳୁଣୀ ।
ମେଲ ଭାଙ୍ଗି ଘରେ ଚଳିଲେ ପୁଣି ।
ପାର୍ବତୀ ଶୁଣନ୍ତି କହେ ଈଶ୍ୱର ।
ଦାସ ଦନାଇ ସେବେ ନିରନ୍ତର ।



୮୭-୨—ଦେଖି ତାଙ୍କ ଦୁଃଖ (ଘ)। ୮୮-୨—ଅଙ୍ଗ ସଙ୍ଗ କଲେ (ଙ)। ୯୪-୨—ଲେଖ ଅନ୍ୟତ୍ର "ନେତ" (ଘ,ଗ)।

# ଦଶମ ଛାନ୍ଦ

ଏଥୁ ଅନନ୍ତରେ ଗୋପୀଙ୍କ ଭାଷା ।
ପାର୍ବତୀ ଶୁଣିଣ କଲେ ପ୍ରଶଂସା । ୧ ।
ବୋଇଲେ ଶୁଣ ଗୋକୁଳ-ସୁନ୍ଦର ।
ମେଳ ହୋଇଣ ବ ବଟ୍ଟୁର କର ।
ଈଶ୍ୱର ବୋଇଲେ ଶୁଣ ଗୋ ସହି ।
ପୂର୍ବ ତପସ୍ୟାରେ ଗୋପର ଗୋଈ ।
ବାସୁଦେବ ସଙ୍ଗେ କରଣ ଲୀଳା ।
ସୁରଭି ଦେଇ ହୋଇଥିଲେ ଭୋଳା ।
ଅସନ ଶୟନେ ନ ଜାଣେ କିଛି ।
ଗୋବିନ୍ଦ ନାମ ସ୍ୱବଦନେ ଘୋଷି । ୫ ।
ଗଣ୍ଠିଧନ କଣ୍ଠିମାଳା ଯେସନେ ।
ବ୍ରଜସୁନ୍ଦରୀ ହୋଇଣ ତେସନେ ।
ରାମକୃଷ୍ଣଙ୍କୁ ଯେନ ତୋଷେ ଥିଲେ ।
ଛାଡ଼ି ଯିବାରୁ ବାଉଳ ହୋଇଲେ ।
ପୂର୍ବ କଥାମାନ ମନାରେ ହେଜି ।
ବିରହେ ଯେଷ୍ଟେ ବିରହୀଣୀ ଗଞ୍ଜି ।
ସେହିରୂପେ ହେଲେ ଗୋପସୁନ୍ଦରୀ ।
ଅନୁଭବ କଥା ମନରେ ଭାଳି ।
ଏକ ଦିନକରେ ସକଳ ଗୋଈ ।
ବୃନ୍ଦାବତୀ ସଙ୍ଗେ ମିଳିଲେ ଯାଇଁ ।୧୦।
ସହସ୍ରେ ସୁନ୍ଦରୀ ମଧ୍ୟେ ନାୟିକା ।
ବୃନ୍ଦାବତୀଙ୍କ ବେଢ଼ି ସର୍ବ ସଖୀ ।
ବୋଇଲେ ଦିନ ଗୋ ନ ସରେ ପୁଣ ।
କୃଷ୍ଣକଥାମାନ କର ଗାୟନ ।
ଏମନ୍ତେ ହେଲେ ଦିନ ସରୁଥାଉ ।
ବିରହ ଜାଳା ନ ଲାଗିବ ଆଉ ।
ତା ଶୁଣି ବୃନ୍ଦାବତୀ ବୋଲେ ପୁଣ ।
ଦିନେ ଯାହା କଲେ ସେ ନାରାୟଣ ।
ସମସ୍ତ ସଖୀ ସଙ୍ଗେ ଥିଲା ପୁଣି ।
ରଜନୀ ନିଶାରେ ସେ ବେନୁପାଣି ॥
ମୁରଲୀ ଧରି ବଜାଇଲେ ପୁଣ ।
ସର୍ବ ଗୋପୀମନ କଲେ ଉଚ୍ଛନ ।
ଘର ଛାଡ଼ିଣ ସର୍ବେ ପଳାଇଲେ ।
କୁଞ୍ଜବନରେ ଯାଇଣ ମିଳିଲେ ।
କେ ବୋଲେ ଆଗ ମୁଁ କୃଷ୍ଣେ ରମିବି ।
କେ ବୋଲେ ସପତ୍ନିଶିଳ କରିବି ।
କେ ବୋଲେ ମୋଠାରେ ସ୍ନେହ ତାଙ୍କର
କେଉଁ ଗୋପୀ ବୋଲେ କୃଷ୍ଣ ମୋହୋର
କେ ପୁତ୍ର ଦୁହିତା ଛାଡ଼ିଣ ଗଲେ ।
କେଉଁ ଗୁରୁସ୍ଥ ପାଶୁ ପଳାଇଲେ । ୨୦ ।
କେ ଗାଈ ଦୁହନ୍ତେ ଛନ୍ଦଛୁ ଗୋଡ ।
କେଉଁ ଗୋପୀ ଗୋଷ୍ଠ ଗୀତରେ ଗାଉ ।
କେଉଁ ଅନ୍ନ ଭୁଞ୍ଜି ବସିଣ ଥିଲେ ।
ମୁରଲୀ ଶୁଣିଣ ବେଗେ ଧାଇଁଲେ ।
ଦୁଆର ଲପଇ କେବଣ ଗୋଈ ।
କେବଣ ତରୁଣୀ ଦଧି ମନ୍ଥଇ ।
ମୁରଲୀ ଶୁଣି ଧାଇଁ ବେଗେ ଗଲେ ।
ନିକୁଞ୍ଜ ବନେ ମାଧୋଇ ଭେଟିଲେ ।
ରାଧା ଦୂତୀ ଦୁହେଁ ହେଲେ ପ୍ରବେଶ ।
ପଛେ ଯାଇଁ ମୁଁ ସେ ମନେ ହରଷ ॥

୧୧-୨—ବୃନ୍ଦାବତୀଙ୍କ ସେନ (ଜ) । ୧୮-୧—କୃଷ୍ଣ ରମିବି (ଖ) ।

ଅନ୍ଧାର ନିଶି ନ ଦିଶଇ ବାଟ ।
ମୁରଲୀ ସ୍ୱନରେ ହୋଇ ଉତ୍କଣ୍ଠ ।
ସମସ୍ତେ ପ୍ରବେଶ ହେଲୁଁ ସେଠାରେ ।
ମାଣିକଙ୍କୁ ଧରି ଗୁରବସ୍ତ ହାରେ ।
ଛାଡ଼ି ନ ଦେଇ ନିବିଡ଼େ ବାନ୍ଧିଲା ।
ହା କୃଷ୍ଣ ବୋଲି ପ୍ରାଣ ହରାଇଲା ।
ଆମ୍ଭେ ନ ଜାଣୁ ଗୋ ଏମନ୍ତ ଗୁଣ ।
ଆଉଦିନ କଥା ଶୁଣିଲୁ ଜାଣ ।
ସେଦିନ ସ୍ୱପନରେ ନନ୍ଦ କହାଇ ।
ମୋତେ ଘେନି କରି ଗଲେ ପଳାଇ ॥
ନାନା ବନରେ ରତିରସ କଲେ ।
ଯମୁନା କୂଳରେ ଘେନି ବୁଲିଲେ ।
ମୋହୋର ମନରେ ଗର୍ବ ହୋଇଲା ।
ଖଳ ଆସିଣ ଦେହେ ସମ୍ଭାଇଲା ।
ମୁଁ ବୋଇଲି ମୋତେ କନ୍ଧରେ ନିଅ ।
ମୋଠାରେ ଅଛି ଯେବେ ତୁମ୍ଭ ସ୍ନେହ ।
ମୋଠାରୁ ଏମନ୍ତ ବଚନ ଶୁଣି ।
କାନ୍ଧରେ ବସାଇଲେ ବେଣୁପାଣି ।
କେତେ ଦୂର ନେଇ ଅନ୍ତର ହେଲେ ।
ବନସ୍ତ ଭିତରେ ପକାଇ ଗଲେ ।୩୫।
ଅଣ୍ଟୁ ଗଣ୍ଠି ମୋର ହୋଇଲା ତ୍ରାସ ।
ଅନ୍ଧାର ନିଶି ନ ଦିଶଇ ପଥ ।
ବାଲି ବନରେ ପଡ଼ି କାନ୍ଦୁଥିଲି ।
ବହୁତ ବେଳେ ଗୋପୀଙ୍କି ଦେଖିଲି ।
ଆରତ ହୋଇଣ ସର୍ବ ତରୁଣୀ ।
କୃଷ୍ଣ ଲୋଡ଼ିଲୁଁ ସେହି ବନେ ପୁଣି ।
ବହୁତ ବେଳରେ ହୋଇଲେ ଦେଖା ।
କାନ ପଣନ୍ତରେ ବାନ୍ଧି ରାଧିକା ।

ସମସ୍ତେ କନ୍ଦନ୍ତେ ଫିଟାଇ ଦେଲେ ।
ପଶାଖେଳ ତହିଁ ଆରମ୍ଭ କଲେ ।୪୦।
ପଶାରେ ହାରିଲେ ସେ ଯଦୁମଣି ।
ବଂଶୀ ଗୋଟି ନେଲେ ରାଧିକା ପୁଣି ।
ପାହୁଡ ନେପୁର ଗଳାର ମାଳ ।
ସର୍ବ ସଖୀ ନେଲୁଁ କରଣ ଜୁର ।
ଅଲଗା ଦିଶିଲେ ସେ ନନ୍ଦସୁତ ।
ଚନ୍ଦ୍ରାବଳୀ ଦେଖି ହେଲେ ଚକିତ ।
ବେଶ ଭୂଷଣ ସବୁ ନେଇ କଲେ ।
ଚୂଳେ ମାଳ ଗୋଡ଼େ ନେପୁର ଦେଲେ ।
ବୋଇଲେ ସମସ୍ତ କରି ହେ ବୋଧ ।
ଅନ୍ଧାର ନିଶିରେ ଯେତେ ପ୍ରମାଦ ।
ଶୁଣିଣ ଶ୍ରୀହରି ଆନନ୍ଦ ହେଲେ ।
ବୃନ୍ଦାବନରେ ରାହାସ ଭିଆଇଲେ ।
ଗୋଟିଏ ଗୋପୀରେ ଗୋଟିଏ କୃଷ୍ଣ ।
ଘେନିଣ ଫୁଲ ଶଯ୍ୟାରେ ପ୍ରବେଶ ॥
ରତି ସୁରତି ନାନା ବନ୍ଧେ ଲୀଳା ।
ସମସ୍ତ ସୁନ୍ଦରୀ ହୋଇଲୁଁ ଭୋଳା ।
ସପତ ବେଳ ତହିଁ ଲୀଳା କଲୁଁ ।
ରଜନୀ ପାଇଲା ଘରକୁ ଗଲୁଁ ।
ସେଦିନ କଥା ତ ଜାଣିଛ ତୁମ୍ଭେ ।
ସେହୁ ସ୍ନେହ ଆଉ ହେବ କି ଏବେ ।
ସେଦିନ ଆମ୍ଭ ଭାବେ ଥିଲେ ପୁଣ ।
ଏବେ ତ ହୋଇଲେ ସବୁରି ଜାଣ ।
ଶୁଣିଣ ତହୁଁ ଗୋପୀଏ ବୋଇଲା ।
ଘରେ ଘରେ ପଶି ସେ ଯାହା କଲା ।
ସବୁରି ମନ ସବୁଠାରେ ହରି ।
ବଶ କଲା ସେହୁ ମୁରଲୀଧାରୀ ।

୩୪-୨—କନ୍ଦରେ [ଖ,ଡ] ।

କେତେ ପ୍ରକାରେ ଗୋ ଗୋପୀ ମୋହିଲେ ।
ସବୁଦିନ ଥାନ୍ତି ରାଧିକା ପୁରେ ।
ଗୋପପୁରରେ ରାଧା ଠାକୁରାଣୀ ।
ଆମ୍ଭେ ସମସ୍ତେ ତାଙ୍କ ସଖୀ ପୁଣି ।୬୫।
ଗୋବିନ୍ଦ ଆମ୍ଭ ସମସ୍ତଙ୍କ ପତି ।
ତାଙ୍କ ବିନାରୁ ଆନଇଁ ନ ରୁଚି ।
ଦିନେ ମୋତେ ଯାହା କଲେ ଗୋବିନ୍ଦ ।
ସେ ଦିନ ମୋହୋର ବଡ ଆନନ୍ଦ ।
ମେଘ ବରଷି ଛଡିଗଲା ବେଳେ ।
ଶୀତଳ ପବନ ବହୁଛି ଧୀରେ ।
ବସିଛି ମୁହିଁ ବାହାର ପିଣ୍ଡାରେ ।
ପ୍ରବେଶ ହୋଇଲେ ନନ୍ଦ କୁମରେ ।
ହସ ହସ ହୋଇ ଦେବ କହ୍ନାଇଁ ।
ମୋତେ ବୋଇଲେ ଗୋ ବସିଛ ସହି ॥
ଆଜ ରାଧାପୁରେ ବିଜୟେ କଲୁଁ ।
ଧିକ୍କାର ବଚନ ତହୁଁ ଶୁଣିଲୁ ।
ଗାଳିଦେଲେ ଆଜ ବହୁତ ସେହୁ ।
ନୋହିଲା ପୀରତି ଆଇଲୁ ତହୁଁ ।
ତୁମ୍ଭଙ୍କୁ ଆମ୍ଭେ କରିଅଛୁ ଆଶ ।
ଦିଅ ସୁରତି ମନ କର ତୋଷ ।
ମୁଁ ବୋଇଲି ବସ୍ତ୍ର ଭୂଷଣ ନାହିଁ ।
ସକାଳବେଳ ସର୍ବେ ଛନ୍ତି ଶୋଇ ।
କଉଁ କଥା ତୁମ୍ଭେ ନ ଜାଣ ହରି ।
ସବୁଦିନେ ଅଛେ ମୁହିଁ ତୁମ୍ଭର । ୭୫ ।
ହସ୍ତ ଧରିଣ ତହୁଁ ଘେନି ଗଲେ ।
ଗମ୍ଭୀର ଘରରେ ସୁରତି କଲେ ।
ସ୍ନାହାନ ଭୋଜନ ମୋ ପୁରେ ପୁଣି ।
ବାଳକ ରୂପ ଧରିଣ ତକ୍ଷଣି ।
ଖେଳ ଖେଳି ନନ୍ଦ ଘରେ ପ୍ରବେଶ ।
ସେ ଦିନ କଥା ଗୋ ଏମନ୍ତ ରସ ।
ଅନ୍ୟ କଥା ମାନ କେତେ କହିବା ।
ତାଙ୍କ ଗୁଣ ଗୁଣି ଦିନ ଯାଉବା ।
ତାହା ଶୁଣି ଏକ ସୁନ୍ଦରୀ କହେ ।
ଦିନେ ମୋ ପୁରେ ବିଜେ ଦେବରାୟେ ॥
ସେଦିନ ଦୁଧ ଚୁଲିରେ ବସାଇ ।
ଉଛୁଳିଲା ବୋଲି ତର୍କି ମାରଇ ।
ଏହି ସମୟରେ ଦେଖିଲି ହରି ।
ଚରଣ ଧରି ଶୋଇଲି ତାଙ୍କରି ।
ବୋଇଲେ ମୋତେ ତ ନମସ୍କାର କଲି ।
ବହୁତ ଦିନ ଦେଖା ନ ଆସିଲି ।
ତାହା ଶୁଣିଣ ହରଷେ କହିଲେ ।
ଆଜ ବିଜେ କଲୁ ତୁମ୍ଭର ପୁରେ ।
ଖାଇବାକୁ ମୋତେ ଦେଇଣ ତୁମ୍ଭେ ।
ଆଜକ ରଖ ତୁମ୍ଭ ପୁରେ ଏବେ । ୭୬ ।
ତାଙ୍କଠାରୁ ଏହି ବଚନ ଶୁଣି ।
ଚୁଲିରୁ ଦୁଧ ଓହ୍ଲାଇଲି ପୁଣି । ୭୭ ।
ବଡ଼ ଘରକୁ ତାଙ୍କୁ ଘେନିଗଲି ।
ପଲଙ୍କ ପରେ ନେଇ ବସାଇଲି ।
ଦୁଃଖ ସୁଖ କଥା କହିଲି ପୁଣ ।
ଉଠିଣ ମୋତେ କୋଳ କଲେ ଜାଣ ।
ବୋଇଲେ ସଖି ଗୋ ! ଦୋଷ ନ ଘେନ
ବିପରୀତ ରତି ହୋଇବ ପୁଣ । ୮୦ ।
ଏତେ ବୋଲିଣ ବିବସନ କଲେ ।
ମୁହିଁ ଉପରେ ସେହୁ ହେଲେ ତଳେ ।
ନାନାବିଧେ ରତି ସୁରତି କରି ।
ପଦ୍ମରେ ମୋ ସଙ୍ଗେ ଯୁଝେ ଶ୍ରୀହରି ।

୭୦-୧—ନନ୍ଦ କୁମାର (ଖ) । ୭୯-୨—ଗଣ ଘେନ (ଘ) ।

ଅଣଅପ୍ସତ୍ର ମୁଁ ହୋଇଲି ସେଣୁ ।
ଭାବ ବିଷୟ ଛାଡ଼ିଲେକ ତେଣୁ ।
ମୁଁ ଲୁଗା ପିନ୍ଧନ୍ତେ ଦାଣ୍ଡକୁ ଗଲେ ।
ଗୃହିଁବା ବେଳକୁ ଅନ୍ତର ହେଲେ ।
ତହୁଁ ପୁଣି ମୁଁ ଯେ ସନ୍ଧାନେ ଗଲି ।
କଦମ୍ବ ମୂଳରେ ତାଙ୍କୁ ଦେଖିଲି । ୮୫ ।
ଚନ୍ଦ୍ରରେଖା ସଙ୍ଗେ କଥା ହୁଅନ୍ତି ।
ମୁହିଁ ଯାଇଣ ହେଲି ତାଙ୍କ କତି ।
ମୋହ ପଛେ ସଖୀ ଗଲେ କୋଡ଼ିଏ ।
ଚନ୍ଦ୍ରାବଳୀ ସଙ୍ଗେ ଦୂତିକା ଯାଏ ।
ସମସ୍ତେ ଯହୁଁ ଏକଠାବ ହେଲୁଁ ।
ହାସ ରସ କରି କଥା କହିଲୁଁ ।
ତେଣ ତମାଳୀ ଦେଖିଲୁ ଅନେକ ।
କୁଞ୍ଜବନକୁ ଗଲେ ନନ୍ଦସୁତ ।
ମୁରଲୀ ଧରି ସୁସ୍ୱରେ ଗାଇଲେ ।
ବିରହ ଲଗାଇ ଅଧିର କଲେ । ୯୦ ।
ଏକେତ ହୋଇଛୁ ଦିବସ ବେଳ ।
ଲଜ୍ଜା ଭୟ ତେଜ୍ୟା ହେଲୁ ଆମ୍ଭର ।
ଧାଇଁଲୁ ସମସ୍ତେ ବାଉଳି ମତି ।
କୁଞ୍ଜବନରୁ ସେ ଗଲେ କେଣିକି ।
ନ ଦେଖି ମନରେ ବିରସ ହୋଇ ।
ବୃନ୍ଦାବନରେ ମୁରଲୀ ଶୁଭଇ ।
ବୃନ୍ଦାବନେ ଯାଇଁ ହେଲୁ ପ୍ରବେଶ ।
ସେଠାରେ ତାଙ୍କର ନ ପାଇ ଲେଶ ।
ତହୁଁ ଫେରି ଆସି ଯମୁନା ଘାଟେ ।
ସ୍ନାନ ସାରି ଗଲୁଁ ଓଦା ବାସେ । ୯୫ ।
ଯେଝା ଘରେ ଯାଇଁ ହେଲୁ ପ୍ରବେଶ ।
ସେଦିନ ସମସ୍ତେ ହେଲୁ ବିରସ ।
ଗୃହଦିନ ଯାଏ ନ ଦେଖି ତାଙ୍କୁ ।
ଭୋଜନ ଶୟନ ନୋହେ ଆମ୍ଭଙ୍କୁ ।
ଗର୍ବ ଗଞ୍ଜନ ଗୋ ଅଚିନ୍ତ ହରି ।
ତମାଲ କରିବାରୁ ଦୂର କରି ।
ଏତେ କହି ସର୍ବେ ରୋଦନ କଲେ ।
ପରାଣ ପିଉଲା କେଣେ ରହିଲେ ।
ସର୍ବେ ଚଳିଲେ ଯେଝା ଘରେ ପୁଣି ।
ଦାସ ଦିନାଇ ପଶିଲା ଶରଣି । ୧୦୦ ।



୯୦-୧—ଦୃଷ୍ଟେ-ସହ୍ର ପୋଟରେ ।

# ଏକାଦଶ ଛାନ୍ଦ



ଏଥୁ ଅନନ୍ତରେ ଈଶ୍ୱର କହି ।
କୃଷ୍ଣଠାରେ ଭାବ ଗୋପର ଗୋଇ । ୧ ।
ଲବଙ୍ଗଲତା ସଙ୍ଗେ ସମ୍ପ୍ରେ ନାରୀ ।
ମେଳ ହୋଇଲେ ଯାଇଁ ତାଙ୍କ ପୁରୀ ।
ବୋଇଲେ ତୁ ଯେ ଅମ୍ଭର ନାୟିକା ।
ହିନ ନ ସରଇ ହୋଇ ତାଠିକା ।
ତୁମ୍ଭ ସଙ୍ଗେ କଥା ହୋଇବା ପାଇଁ ।
ଗୋଷ୍ଠ ଗୋଷ୍ଠ ହୋଇ ଅଇଲୁଁ ଗୋଇ ।
ପୂର୍ବେ କୃଷ୍ଣ ପୁଣି କରନ୍ତି ଯେତେ ।
ସେ କଥାମାନ ଅଛି ହୃଦଗତେ । ୫ ।
ସଙ୍ଗରେ ଧେନ ବନେ ବୁଲୁଁ ପୁଣ ।
ଦେଖି ସନ୍ତୋଷ ହେବା ବୃନ୍ଦାବନ ।
ଲବଙ୍ଗଲତା ଶୁଣିଣ କହିଲା ।
ଦେଖିଛ ଯାହା କଲେ ନନ୍ଦବଳା । ୭ ।
ଏକଦିନେ କଂସ ପେଷିଲା ଦୂତ ।
ଗୋପକୁ ଅଇଲା ଗୃଣୂର ସୁତ ।
ଲେଖା ଗୋଷ୍ଠ ଅଣି ନନ୍ଦକୁ ଦେଲା ।
ବୋଇଲା କଂସ ଯେ ମୋତେ ପେଷିଲା ।
ବୋଇଲା ପଦ୍ମ ଶତେଭାର ଧେନା ।
ଦଣ୍ଡେ ନ ରହି ଅସ ଏହିକ୍ଷଣି । ୧୦ ।
ପଦ୍ମାବତୀ ରାଣୀ କରନ୍ତି ଓଷା ।
ନନ୍ଦ ଶୁଣିଣ ହେଲେ ଅଭରସା ।
ବୋଇଲେ କାଳନ୍ଦୀ ଭିତରେ ଫୁଲ ।
କାଳିଅ ଦେହରେ ପାଣି ଗରଳ ।
ଖାଇଲେ ମରିବା ଛୁଇଁଲେ ବିଷ ।

କେମନ୍ତେ ଆଣିମି ରାଜା ସନ୍ଦେଶ ।
ଗୋପାଳଙ୍କୁ ଡାକି ଭାଳନ୍ତି ପୁଣ ।
ତା ଶୁଣି ଚଳିଲେ ସେ ନାରାୟଣ ।
ବତ୍ସ ବାଳକ ସଙ୍ଗେ ଧେନ ଗଲେ ।
କାଳନ୍ଦୀରେ ପଶି ଫୁଲ ତୋଳିଲେ ।୧୫।
ଶତେ ଶଗଡ଼ ଫୁଲ ଦେଲେ ତୋଳି ।
ବାଳକେ ବୋହି ନେଇ ଗଦା କରି ।
କାଳିଅ ଜାଣିଣ ପ୍ରବେଶ ହେଲା ।
ପଦ୍ମଚରଣରେ ଯାଇଁ ଦଂଶିଲା ।
ଶବଦ ଶୁଭିଲା ଗୋପପୁରରେ ।
କାଳୀ ଦଂଶି ଦେଲା କୃଷ୍ଣ ପାଦରେ ।
ଗୋପାଳମାନଙ୍କୁ ଘେନିଣ ନନ୍ଦ ।
ପ୍ରବେଶ ହୋଇଲା ମନ ବିରଙ୍ଗ ।
ଅମ୍ଭେ ସକଳେ ଗୋ ଯଶୋଦା ସଙ୍ଗେ ।
କାଳନ୍ଦୀ ନିକଟେ ପ୍ରବେଶ ବେଗେ ।
ଦେଖିଲୁଁ ଶ୍ରୀହରି ଜଳରେ ଶୋଇ ।
ସମସ୍ତେ ରୋଦନ କଲୁଇଁ ତହିଁ ।
ସ୍ୱାମ ଯାଇଁ କରି ହେଲେ ପ୍ରବେଶ ।
ଦେଖିଣ ମନରେ ବଡ଼ ହରଷ ।
ରମ୍ୟକ ଦ୍ୱୀପେ ଗରୁଡ଼ର ଘର ।
ସୁମରଣା କଲେ ତାଙ୍କୁ ବେଗର ।
ଗରୁଡ ଅସି କୃଷ୍ଣଙ୍କୁ ବୋଇଲା ।
କାଳନ୍ଦୀ ଛାଡ଼ି କାଳୀ ପଳାଇଲା ।
ବିଷଜଳ ସବୁ ମଧୁର ହେଲା ।
କୂଳରେ ପ୍ରବେଶ ନନ୍ଦର ବଳା ।୨୫।

୯-୧—ଲେଖ (ଖ) । ୧୨-୨ ଭଂଗିର (ଗ,ଘ,ଙ) ।
୨ ଗୋପୀନ୍ଦ୍ରା

ସେ ଦିନ ରହିଲୁଁ ସମସ୍ତେ ତହିଁ ।
ପ୍ରଭାତେ ସମସ୍ତେ ଗୋ ଅଇଲୁଇଁ ।
ନନ୍ଦ ଯଶୋଦା ଗୋ ଅଇଲେ ଘର ।
ରାମକୃଷ୍ଣ ଦୋହେଁ ବତ୍ସ ସଙ୍ଗର ।
ସମସ୍ତେ ଗୋପେ ହୋଇଲଇଁ ପ୍ରବେଶ ।
ସେ ଦିନ ରାତି ଗୋ ଏମନ୍ତ ରସ ।
ନନ୍ଦ କହିଦେଲେ ଶତେ ଗୋପାଳ ।
ଶତେ ଭାର ଘେନି ମଥୁରାପୁର ।
ଦୂତ ସଙ୍ଗତେ ରାଜାପୁରେ ଦେଇ ।
ଗୋପକୁ ଗୋପାଳେ ଅଇଲେ ଯାଇ ।।
ଦୂତ କଂସ ଆଗେ ସବୁ କହିଲା ।
ନନ୍ଦ ସାନପୁଅ ଫୁଲ ତୋଳିଲା ।
କାଳନ୍ଦୀରୁ କାଳୀ ବାହାର ଗଲା ।
ବିଷଜଳ ସବୁ ଅମୃତ ହେଲା ।
କଂସ ଶୁଣିଣ ଯେ ବିଷାଦ ହେଲା ।
ନିଶ୍ଚୟ ମୋତେ ମାରିବ ବୋଇଲା ।
ସାତ ପାଞ୍ଚଜଣ ପେଷିଲା ପୁଣ ।
କାଳନ୍ଦୀ ଜଳ ନେଲା ତତକ୍ଷଣ ।
ଉଗ୍ରସେନ ବସୁଦେବଙ୍କୁ ଡାକି ।
କାଳନ୍ଦୀ ଜଳ ସମସ୍ତେ ପିଅନ୍ତି ।
ଅମୃତ ପ୍ରାୟେକ ସୁଆଦଜଳ ।
କଂସ ପିଇଲେ ପିଇଲେ ସକଳ ।
କଂସ ବୋଇଲା ମୁଁ ଜାଣିଲି ପୁଣ ।
ରାମକୃଷ୍ଣ ମୋର ବଇରି ଜାଣ ।
ତୁମ୍ଭେ ତ ସମସ୍ତେ ଜାଣ ସେ କଥା ।
ତାଙ୍କ କଥାମାନ ହୋଇବ ପୋଥା ।
ତାହା ଶୁଣି ଆଉ ଗୁଆଳୀ କହି ।
ଦିନେ ବିପରୀତ କଲେକ ସେହି ।
ଦିବ୍ୟ ଝୀନ ପାଟ ବସନ ମାନ ।
ବିକିବାକୁ ଗୋପେ ପ୍ରବେଶ ପୁଣ ।।
ସାଜି ସାଜି ହୋଇ ବୁଲି ବିକନ୍ତି ।
କିନ୍ଧି ବିକନ୍ଧି ସମସ୍ତ ଗୋପୀକି ।
କେ ରଙ୍ଗ କିଣଇ କେ କିଣେ ଧଳା ।
କେଉଁ ଗୋପୀ କିଣେ ହଳଦି ପରା ।
କେଉଁ କଳା ନେଲି କିଣନ୍ତି ବସି ।
ଚନ୍ଦ୍ରାବଳୀ କିଣେ ବସନ୍ତ ଅସି ।
ଏମନ୍ତେ ସମସ୍ତେ ସୁନିଶି ପୁଣ ।
ଝୀନ ପଟନୀ କିଣିଲେ ବହନ ।
ଫୁଲ ତୋଳି ସବୁ ଧଣ୍ଡା ଗୁନ୍ଥିଲେ ।
ଯେଝା ରୂପେ ବେଶ ଭୂଷଣ ହେଲେ ।
ଠଙ୍କୀ କଉଡି ସବୁ ହେଲା କାଳ ।
ଆମ୍ଭମାନଙ୍କର ସେ ଦିନ କେଳି ।
ସମସ୍ତଙ୍କ ପୁରେ ବିଜୟେ କଲେ ।
ଭ୍ରମର ଯେସନେ ଚୁମ୍ବଇ ଫୁଲେ ।
ସେଦିନ ସମସ୍ତେ ହେଲୁଁ ଆନନ୍ଦ ।
ସମସ୍ତଙ୍କ ସଙ୍ଗେ ସେ ଆଦିକନ୍ଦ ।
ନାନା ରଙ୍ଗରେ ରତିରସ କରି ।
ରଜନୀ ପାଇଲେ କୁଞ୍ଜ ବିହାରୀ ।
ସେଦିନ ଗୋପରେ ହସି ନ ଜାଣୁ ।
ଚନ୍ଦ୍ର ଉଇଁଲା ପ୍ରାୟେ ଘରେ ମଣୁ ।
ତାହା ଶୁଣି ବ୍ରଜସୁନ୍ଦରୀ କହି ।
ଦିନେ ଯାହା କଲେ ମୋତେ ମାଧୋଇ ।
ମଥୁରା ଦଧି ବିକି ଯାଇଥିଲି ।
ଲେଉଟି ଯମୁନାକୂଳରେ ହେଲି ।
ସ୍ନାହାନ କରନ୍ତେ ପଶିଣ ଜଳେ ।
କହ୍ନାଇଁ ଯାଇଁ ମିଳିଲେ ସେ ବେଳେ ।

ବୋଇଲେ ସଙ୍ଗାତ ଶୁଣ ଏଣିକି ।
କଂସ ଆଣିଅଛି ହାଟରି ନଙ୍କ ।୫୫।
ଏତେ ବୋଲିଣ ଯେ ନନ୍ଦ କହ୍ନାଇ ।
ଯମୁନା ଜଳରେ ପଶିଲେ ଯାଇଁ ।
ମୋତେ ଘେନିଣ ଜଳକ୍ରୀଡା କଲେ ।
ମନ ତୋଷ କରି ବନକୁ ଗଲେ ।
ସେହିଦିନ କେଳି ଗୋ ପଡୁଛି ମନେ ।
ମୋତେ ଯାହା କଲେ ନନ୍ଦନନ୍ଦନେ ।
ଜୀବ ଥିଲେ ତ ପାସୋର ନ ଯିବ ।
ଦେଖିଲେ ସିନା କହିବାର ହେବ ।
ସେକାଳ କଥା କି ଆଉ ମିଳିବ ।
ବଡ ଲୋକଙ୍କୁ ଯେ ଡରନ୍ତି ସବ ।୬୦।
ସାନବେଳେ ପୁଣ ଯେମନ୍ତ ହୋଇ ।
ବଡ ହୋଇଲେ ଭେଟ ନ ମିଳଇ ।
ତାହା ଶୁଣି ଗୋପ ଗୋଈ କହଇ ।
ମୋର ପୁରେ ଦନେ ଗଲେ ମାଧୋଇ
ସନ୍ଧ୍ୟାବେଳରେ ହୋଇଲେ ପ୍ରବେଶ ।
ତେତେବେଳରେ ଆଉଡ଼ି ବିଶେଷ ।
ଦୀପ କରିଣ ଜଣାଣ କରୁଛି ।
ସାନ ଭଉଣୀ ମୋ ପାଖରେ ଅଛି ।
ନୂଆ ବୟସ ହୋଇଛି ତାହାର ।
ଅନୁକ୍ଷଣେ ଚିନ୍ତା ପତି ସଙ୍ଗର ।୬୫।
କୃଷ୍ଣଙ୍କୁ ଦେଖି ଉଲ୍ଲସିଲା ଦେହ ।
ଅନଳ ଦେଖି ପତଙ୍ଗ ସେନେହ ।
ନିଆଁକୁ ଦେଖି ଜଉ ତରଳିଲା ।
ସେହିରୂପେ ମୋର ଭଉଣୀ ହେଲା ।
ତାର ଅସମ୍ଭାଳ ଦେଖିଲି ଯହୁଁ ।

ଅଙ୍ଗୁଷ୍ଠି ଦେଖାଇ ଠାରିଲି ତହୁଁ ।
ଅନ୍ତର ହୋଇଣ ସେଠାରୁ ଗଲି ।
ଆର ଘରେ ଯାଇଁ ଚୂଲି ଜାଳିଲି ।
ମୁହିଁ ଯିବାର ଦେଖିଣ ଶ୍ରୀହରି ।
ସାନ ଭଉଣୀ ସଙ୍ଗେ ପ୍ରୀତି କରି ।୭୦।
ପଛରେ କାଳି ବୋଲି ଗଲା ପୁଣ ।
ମୁଁ ଯାଇଁ ମିଳିଲି ତାଙ୍କ ପାଶେଣ ।
ଦେଖିଲି ନୀବବନ୍ଧ ପ୍ରତି ଗାଢ ।
ଅଣଆସୃତ୍ତ ଭଉଣୀ ମୋହୋର ।
ଠାରୁ ଦେଲା ମୋତେ ପିଇବା ପାଣି ।
ବେଗେ ଜଳ ଦେଲି ଝରୀରେ ଆଣି ।
ସୁରତ ସରିଲା ପିଇଲା ଜଳ ।
ମୋତେ ଧଇଲେ ମଦନ ଗୋପାଳ ।
ନାନା ରସରେ ଲୀଳା ରତି କଲେ ।
ଅର୍ଦ୍ଧ ରଜନୀ ଅନ୍ତର ହୋଇଲେ ।୭୫।
ଭଉଣୀ ମୋତେ ପରଶଂସା କଲା ।
ତୁମ୍ଭ ସକାଶୁଁ ମନ ତୋଷ ହେଲା ।
ଭୋଜନ ସାରିଣ ପଲଙ୍କେ ଶୋଇ ।
ଅଳପ ନିଦ୍ରାରେ ରଜନୀ ପାହି ।
ସେ କାଳି କଥା ଗୋ ଅଛି ମନରେ ।
କେତେ ସୁଖ ହୋଏ କୁଞ୍ଜବନରେ ।
କୁଞ୍ଜବନେ ଯାଇଁ ଭାବ ସୁରତି ।
କେତେ ଛନ୍ଦରେ ଗୋ କଥା କହନ୍ତି ।
ସେହୁ ସେ ନାଗର ଆମ୍ଭର ପ୍ରାଣ ।
କେତେ ସୁଖ ଭାଙ୍ଗି ଗଲେ ଆପଣ ॥
ବିରହ ଜାଳାରେ ଦହେ ମୋ ମନ ।
ସ୍ୱପ୍ନ କାଳେ ଯେବେ ପଡନ୍ତି ମନ ।

୬୮-୧—ସେକାଳ କଥା ଗୋ ପଡ଼େ ମନରେ (ଘ) । ୭୧-୧—ହବ ପୀରତି (ଝ) ।

ସେହିରୂପେ ଗଲେ ଛଳିଲ ବର ।
ଯେସନେ ପୁଷ୍ପକୁ ଭଣ୍ଡେ ଭ୍ରମର ।
ବାସ ଥିଲା ଯାକ ପାଶରେ ଥାଇ ।
ବାସ ସରିଲେ ଅନ୍ତର ହୁଅଇ ।
ତାହା ଶୁଣି ଏକ ଗୋପୀ ବୋଇଲା ।
ପଦ୍ମରେ ଭ୍ରମର ପ୍ରାଣ ରହିଲା ।
ସ୍ତିରୀ ହୋଇ କରି ପୁରୁଷ ମାରି ।
ସେହି ଦୋଷ ଦେଇ ଗଲେ ମୁରାରି ॥
କହିବାକୁ ତାଙ୍କୁ ଆଜ୍ଞା ହୋଇଲା ।
କାଲ ଯୁଗରେ ଏ କଥା ରହିଲା ।
ସପତଣୀ ହେଲା ସେ ପଦ୍ମଫୁଲ ।
ସ୍ତିରୀ କୁଳକୁ ସେ ହୋଇଲା ଶଲ ।
କଲଙ୍କ ହୋଇଲା ସବୁ ଦିନରେ ।
ପୁରୁଷକୁ ମାରେ ରତିଶୃଙ୍ଗାରେ ।
ତାହା ଶୁଣି ଏକ ଗୋପୀଏ କହି ।
ସଙ୍ଗ ଛାଡ଼ି ସେ ଯେ ଜଳରେ ରହି ।
ଦୋଷ କରିବାରୁ ଅଲଗା ହେଲା ।
କାହାର ସଙ୍ଗ ମେଳ ନ ବସିଲା ।୧୦।
ବିଟପ ସ୍ତିରୀଙ୍କର ଏହୁ ଗୁଣ ।
କଥା ଲୁହାଇଲା କାଳକୁ ପୁଣ ।
ଦୋଷ ତାରି କେବେ ନୋହିଲା ପାର ।
ବଜସ୍ତୁ ଯେହ୍ନେ ଓଶସ୍ତ ବାହାର ।
ତାହା ଶୁଣି ଚନ୍ଦରେଖା ବୋଇଲା ।
ନନ୍ଦସୁତ ଗୋ ସେହିରୂପେ କଲା ।
ଛାଡ଼ି କରି ଗଲେ ପ୍ରାଣେ ନ ମାରି ।
କୁଆ କୋଇଲି ବାଳକର ପରି ।
କୋଇଲି ଡିମ୍ବକୁ ନେଇଣ ପୁଣ ।
ବାୟେସା ବସାରେ ଛାଡ଼ଇ ପୁଣ । ୧୫।
ଗୁପତ କରି ଯେ ରଖଇ ନେଇ ।
ବାୟେସା ଡିମ୍ବକୁ ପକାଇ ଦେଇ ।
ବିଶ୍ୱାସଘାତକା ହୁଅଇ ପୁଣ ।
ସେହିଁରୂପେ ହେଲେ ନନ୍ଦନନ୍ଦନ ।
ଏମନ୍ତେ କଥା ଲୁହାକୋହି ହେଲେ ।
କୃଷ୍ଣ ଗୁଣ ଗୁଣି ରୋଦନ କଲେ ।
ମେଳ ଭାଙ୍ଗିଣ ଯେଝା ଘରେ ଯାଇ ।
ଈଶ୍ୱର ଗଉରୀ ଅଗରେ କହି ।
ମଥୁରା ରହିଲେ ଦେବ କହାଇ ।
ହରି ପାଦେ ସେବେ ଦାସ ଦନାଇ ॥



# ଦ୍ୱାଦଶ ଛାନ୍ଦ

---

ଏଥୁ ଅନନ୍ତରେ ପାବଂଶ ପୁଣ ।
ଈଶ୍ୱରଙ୍କ ପାଶେ କଲେ ଜଣାଣ ।
ଚରଣ ଧରଣ ବଚନ କହ୍ନ ।
ଗୋପ ସୁନ୍ଦରୀ କସ କଲେ ତହିଁ ।
ପୁଣି ମେଲ ହୋଇ କସ ବଗୃର ।
ଏହା ମୋତେ କହ ତ୍ରିଶୂଳଧର ।
ଗଉସ୍ତ୍ରୀ ଭଗତ ଦେଖି ଈଶାନ ।
ବୋଲନ୍ତି ଗୋପୀ କହ୍ନବାର ପୁଣ ।
ସହସ୍ରେ ଗୋପିକା ହୋଇଣ ମେଲ ।
ରଙ୍ଗଦେଈ ପୁରେ ମିଳ ସକଳ । ୫ ।
ସମସ୍ତେ ଅଟନ୍ତି ବର୍ଣ୍ଣି ଗଉସ୍ତ୍ରୀ ।
ବଡ଼ ସୁନ୍ଦର ରୂପବନ୍ତୀ ନାରୀ ।
ରଙ୍ଗଦେଈ ତାଙ୍କ ପରେ ନାୟିକା ।
ବସିଣ ଭାଳଲେ ଶ୍ରୀକୃଷ୍ଣ କଥା ।
ରଙ୍ଗଦେଈ ବୋଲେ ଶୁଣ ସଙ୍ଗାତ ।
ଅଷ୍ଟ ବରଷ ହେଲା ଗୋପୀନାଥ ।
କେତେ ନବରଙ୍ଗ ଗୋପେ ହୋଇଲେ ।
ସବୁ ତେଜ୍ୟା କରି ମଥୁରା ଗଲେ ।
ଏବେ ତ ହୋଇଲା ରାଜାଧୀଶ୍ୱର ।
ଆମ୍ଭର ସୁଖ ମନ ହେଲା ଦୂର । ୧୦ ।
ଆଉ କି ଗୋପକୁ ଆସିବେ ପୁଣ ।
ନେତ୍ର ସୁଫଳ କି ହେବ ଦେଖିଣ ।
ଏବେ ଶୁଣା ଗଲା ନାହାନ୍ତି ହରି ।
ବିଦ୍ୟା ପଢିଗଲେ ଅବନ୍ତୀ ପୁରୀ ।
ଗୋପରେ ବତ୍ସ·ବାଳକ ରଖିଲେ ।
ବିଦ୍ୟା ନ ଶିଖି ରାଜ-ଭୋଗ କଲେ ।
ନାରଦ ମାରକଣ୍ଡ ଯେ ବଶିଷ୍ଠ ।
ଗାର୍ଗବ ବ୍ୟାସଦେବ ଅଷ୍ଟାବକ୍ର ।
ଏମାନେ ବୋଇଲେ ନୋହିଲା କଷ୍ଟ ।
ବିଦ୍ୟା ପଢ ହେ ବସୁଦେବ ବତ୍ସ ॥
ସମସ୍ତ କୁଶଳ ବିଦ୍ୟାରେ ପୁଣ ।
ବିଦ୍ୟା ଅଟଇ ଦେହକୁ କାରଣ ।
ତାହାଶୁଣି ରାମ ଗୋବିନ୍ଦ ଦୁଇ ।
ବିଦ୍ୟା ପଢ଼ିଗଲେ ଶୁଣ ଗୋ ସହି!
ତାହା ଶୁଣି ଏକ ଗୋପୀ ବୋଇଲା ।
ଏବେ ତ ବଡଲୋକ ସିଦ୍ଧି ହେଲା ।
ଯେଉଁଦିନେ ଥିଲେ ଆମ୍ଭ ସଙ୍ଗରେ ।
ଚୋରି କରନ୍ତି ଗୋ ସବୁରି ଘରେ ।
କାହା ଘରେ ସର ଲବଣୀ ଖାଇ ।
କଉଁ ସଖୀ ଘରେ ଖାଆନ୍ତି ଦହି ।୨୦।
କାହା ପୁଅ ସଙ୍ଗେ କଳି କରନ୍ତି ।
କାହା ଝିଅକୁ ଧରିଣ ମାରନ୍ତି ।
କା' ଘରେ ପଶି ଛେନା ଦୁଧ ଖାଇ ।
କଉଁ ମାନଙ୍କର ଭାଣ୍ଡ ଭାଙ୍ଗଇ ।
ଏମନ୍ତେ ହାଲୋଳ ହେଲା ବରଷେ ।
ପଛେ ହେଲା ଗଲେ ମଥୁରା ଦେଶେ ।
କଂସ ମାରିବାରୁ ପ୍ରଭୁ ହୋଇଲେ ।
ସ୍ୱର୍ଗରୁ ଦେବତାମାନେ ଆଇଲେ ।
ଆଉ ଯେତେ ପୁଣ ନୃପତି ଗଣ ।
ସମସ୍ତେ ଭେଟରେ ଦେଲେ କାରଣ ॥
ତାହା ଶୁଣିଣ ଗୋପୀ କହେ ପୁଣ ।
ବନମାଳୀ ହେଲୁ ଆମ୍ଭେ ଜାଣ ।

ସର୍ପ ମସ୍ତି-ଗରେ ବସିଲେ ବାଳ ।
ଦୂର ଆଡ଼କୁ ଗୋ ଚଳ ନ ପାର ।
ସେହିରୂପେ ହେଲୁଁ ଗୋପଯୁବତୀ ।
କୃଷ୍ଣ ସଙ୍ଗରେ କରିବାକୁ ପ୍ରୀତି ।
ମଥୁରା ଯିବାର ବାଟ ପଡ଼ିଲା ।
ସଂସାର ଯାକରେ ହାଟ ବସିଲା ।
ଗୋପୀଙ୍କ ସଙ୍ଗରେ କୃଷ୍ଣ ପୀରତି ।
ରାଜା ପରଜା ଜାଣିଲେ ସରିନ୍ତି ।
ଲୋକ ଲଜ୍ଜା ହେଲା ଯିବାକୁ ପୁଣ ।
ଆମ୍ଭର ସ୍ୱାମୀ ଅଟେ ନାରାୟଣ ।
ତିନ ଭୁବନରେ ନାମ ବିଖ୍ୟାତି ।
ଆମ୍ଭେ ଗଲେ ଲଜ୍ଜା ହେବ ବହୁତ ।
ବୋଲିବେ ଗୋପର ବ୍ରଜସୁନ୍ଦରୀ ।
ନଟ ପରି ସଙ୍ଗେ ପସନ୍ଦ କରି ।
ବେଭାରେ ମହତ ଯାଙ୍କର ନାହିଁ ।
ଗଉଡୁଣୀ ସିନା ଜାତିରେ ଏହି ।
କେଣିକି ନ ଯାଇ ଗୋପରେ ଥିବା ।
କୃଷ୍ଣ ସକାଶୁ ବଡ଼ ଲୋକ ହେବା ।
ଦୟା ଥିବ ଯେବେ ତାଙ୍କ ମନରେ ।
ଲୋକ ଭେଜ ଦେବେ ଆମ୍ଭର ପୁରେ ।
ଅନ୍ତର୍ଯ୍ୟାମୀ ନାଥ ଅଟନ୍ତି ଯେହୁ ।
ତିନପୁର କଥା ଜାଣନ୍ତି ପ୍ରଭୁ ।
ଗୋପୀନାଥ ନାମ ସେହୁ ବହିଲେ ।
ତେଣୁ କରି ଗୋପୀ ତାଙ୍କର ହେଲେ ।
ଇନ୍ଦ୍ର ଯେ ବିବାଦ କରି ହାରିଲା ।
ଗୋବିନ୍ଦ ନାମ ତାଙ୍କୁ ଦେଇଗଲା ।
ଦେବଙ୍କ ଉପରେ ହୋଇଲେ ସାର ।
ବଡ଼ ବିଖ୍ୟାତ ଗୋ ଏ ଗୋପପୁର ॥
ମଦନମୋହନ ରୂପ ଧରିଲେ ।
ବ୍ରହ୍ମାର ଗର୍ବ ଚୂର କରିଦେଲେ ।
ଦେଖିଲ କାଲି ତ ଗଲା ପଳାଇ ।
ମୁରଲୀ ସ୍ୱନେ ତରୁ ପଲ୍ଲବଇ ।
ଯମୁନାଜଳ ସ୍ଥିର ହୋଇ ରହେ ।
ସବୁ ତ ଦେଖିଥାଇଁ ଏହି ଦେହେ ।
ତାହା ଶୁଣି ଏକ ଗୋପୀ ବୋଇଲା ।
ଆମ୍ଭ ବିରହ ଦେହରୁ ନ ଗଲା ।
ଏକ ଦିନକରେ ଶରଦ କାଳେ ।
ଗୋବିନ୍ଦ ପ୍ରବେଶ ହେଲେ ମୋ ପୁରେ ॥
ମେଘ ବରଷା କଲେ ମନ୍ଦମନ୍ଦ ।
ବୋଇଲେ କଥାଏ ଶୁଣ ଗୋ ଛନ୍ଦ ।
ଏହି ସମୟରେ ହୁଅନ୍ତି ପ୍ରୀତି ।
ସୁଖ ଉପୁଜନ୍ତା ବରଷା ରାତି ।
ବାହାର ଦୁଆରେ ମୁଁ ବସିଥିଲି ।
ବଟେ ବରଷନ୍ତେ ଘରକୁ ଗଲି ।
କୋଳ କରି ମୋତେ ଧରିଲେ ନେଇଁ ।
ମୁଖରେ ଚୁମ୍ବନ ଦେଲେ ଗୋସାଇଁ ।
ନୀବିବନ୍ଧ ମୋର ଫିଟାଇ ପୁଣ ।
ନାନା ବନ୍ଧରେ ସୁରତି ରଅଣ ।
ପହରେ କାଳ ବହିଗଲା ତହିଁ ।
ରତି ସୁରତି ସାରି ତୋଷ ମୁହିଁ ।
ବସନ ପିନ୍ଧି ପାଶରେ ବସିଲି ।
କୋମଳ କରି ବଚନ ଭାଷିଲି ।
ବୋଇଲି ମୋତେ ନ କରିବ ଦୂର ।
ନିତିଦିନ ଆସୁଥିବ ମୋ ଘର ।
ହଉ ବୋଲି କରି ବାହନ ଗଲେ ।
ମାସେ ଯାଏ ଆଉ ନଇଲେ ପୁରେ ।

୨୭-୧—ମର୍ଦ୍ଦିଗରେ (ଗ) । ୩୭-୧—ସେହୁ (ଖ) ଏହୁ (ଘ) ।

ତାହା ଶୁଣି ଆର ଗୋପୀ ବୋଇଲା ।
ମାୟାବୀ ପୁରୁଷ ଜାଣନ୍ତି ଲୀଳା ।୫୫।
ଷୋଳସା ବୟସ ହୋଇଛି ମୋର ।
ସୁରତ ରସରେ ଶ୍ରଦ୍ଧା ଅପାର ।
ମକର ମାସେ ଶୀତକାଳେ ପୁଣି ।
ଯମୁନାକୁ ଗଲି ମୁଁ ପାଣି ଆଣି ।
କଦମ୍ବ ମୂଳରେ ଦେଖିଲି କାହ୍ନୁ ।
ପଛ ଆଡକୁ ଚାହିଁ ହେଲି ତେଣୁ ।
ଦେଖିଲି କେହି ନାହାନ୍ତି ସୁନ୍ଦରୀ ।
ବିଚାରିଲି ମନେ ଭାବନା କରି ।
ଆଜ ମାଧବ ସଙ୍ଗେ ବିହରିବି ।
ମନ ମୋହୋର ସନ୍ତୋଷ କରିବି ।୬୦।
ଏମନ୍ତ ବିଚାର କରନ୍ତେ ମନେ ।
ଆଗରେ ପ୍ରବେଶ ଯଶୋଦାନାନେ ।
ବୋଇଲେ ଶୁଣ ଗୋ ବ୍ରଜସୁନ୍ଦରୀ ।
ତୁମ୍ଭ ସକାଶେ ଆମ୍ଭେ ଏତେ ସଉ ।
ପ୍ରଭାତରୁ ଉଠି ତୁମ୍ଭର ପାଇଁ ।
ଫୁଲ ଗୁନ୍ଥି ମାଳ କରିଛି ମୁହିଁ ।
କଲସୀ ଥୁଅ କୁଞ୍ଜବନେ ଯିବା ।
ବେଶଭୂଷଣ ତୁମ୍ଭଙ୍କୁ କରିବା ।
କଲସୀ ଥୋଇ ତାଙ୍କ ସଙ୍ଗେ ଗଲି ।
କୁଞ୍ଜବନେ ଯାଇଁ ପ୍ରବେଶ ହେଲି ।୬୫।
ବସିଣ ବେଶ କଲେ ମୋତେ ପୁଣ ।
ମଳୟ ଚନ୍ଦନ ଦେହେ ବୋଳଣ ।
ମୋତେ ଦେନି ରତି ସୁରତି କଲେ ।
ଯେତେ ବିପରୀତ ନ ଦେଖି ତୋଳେ ।
କେତେ ଛନ୍ଦରେ ଗୋ ଜାଣନ୍ତି ଲୀଳା ।
ପଦାରେ ପତ୍ରସନ୍ତେ ନନ୍ଦବଳା ।
ମୋର ଆବୃତ୍ତି ଭାଙ୍ଗିଗଲା ପେଣୁ ।
ଚରଣ ଧରଣ କହିଲି ତେଣୁ ।
ବୋଇଲି ମୋତେ ଛାଡ଼ଦିଅ ହରି ।
ଉତ୍ତର ହେଲା ଘରେ ଦେବେ ଗାଳି ॥
ତୁମ୍ଭେ ତ ଜାଣ ମୋ ଶାଶୁ ଦୁର୍ଜନ ।
କେତେ କଥା ମୋତେ କହିବ ପୁଣ ।
ଶୁଣିଣ ବୋଇଲେ ନନ୍ଦ କହ୍ନାଇ ।
ନୂଆ ବୟସ ତ ତୁମ୍ଭର ସହି ।
ଏ ସମୟରେ କାହା ଧଡ଼ପଡ ।
ମନୋରଥ କରି ସୁରତି କର ।
ଆଜ ତ କେହି ନାହାନ୍ତି ସଙ୍ଗରେ ।
ମନ ଇଚ୍ଛା ଭୋଗ ହେଲା ତୁମ୍ଭରେ ।
ମୁଁ ପୁଣି ବୋଇଲି ଶୁଣ ଶ୍ରୀଧର ।
ଏଡ଼େ ସୁଖକୁ ଘରେ ହେବ କଳି ।୭୫।
ବୋଇଲେ କଷ୍ଟ ନ ବୋଲିବେ କେହି ।
ଆମ୍ଭେ ତୁମ୍ଭ ମୁଖେ ମୋହନୀ ଦେଇ ।
ଏତେ ବୋଲି ଉଠି ବହନ ଗଲେ ।
ପତର ଗୋଟିଏ ତୋଳ ଆଣିଲେ ।
ତାଙ୍କ ବଚନରେ ବେଗେ ମୁଁ ନେଲି
ଖାଇକରି ମନେ ସନ୍ତୋଷ ହେଲି ।
ପୁଣି ବିପରୀତ କଲେ ଯେ ମୋତେ ।
ଦେହରୁ ବସନ କାଢ଼ି ଭୂଇତେ ।
ବେନି ଅଙ୍ଗ ଏକ ଅଙ୍ଗ ହୋଇଲା ।
ତେତେବେଳେ ସ୍ୱର୍ଗ ପ୍ରାପତ ହେଲା ॥
ବିଚାରିଲି ଆଜ ପରି ଏ ଦିନ ।
ମୋତେ ନ ମିଳିବ ଏ ଯୁଗେ ପୁଣ ।
ରତି ସରିଲା ଦେହୁଁ ବହେ ଝାଳ ।
ମେଲାଣି ହୋଇଲି ତାଙ୍କ ଛାମୁର ।
ସାବଧାନ କରି ଘରକୁ ଆଇଲି ।
ବସନ ପିନ୍ଧିଣ ଭୋଜନ କଲି ।

କହିଲା ବୋଇଲେ କେଣିକି ଗଲୁ ।
କାହା ପାଶେ ଯାଇଁ କଥା ହୋଇଲୁ ॥
କେତେ ଅଭଣ୍ଡ ସରନ୍ତାନି ଏବେ ।
ତୁ ଘର କରିବୁ କେମନ୍ତ ବାଗେ ।
ଏତେ କହୁ ପୁଣ ହୋଇଲେ ତୁନି ।
ତା ଶୁଣି ରଙ୍ଗଦେବୀ କହେ ପୁଣି ।
ଶୁଣ ସର୍ବ ସଖୀ ଆମ୍ଭର କଥା ।
ଦିନେ ମୋ ପୁରେ ଗଲେ ଜଗଜ୍ଜତା ।
ବସିଣ ଅଛୁ ମୋ ନଣନ୍ଦ ପାଶେ ।
ପ୍ରବେଶ ହେଲେ ଜାଣି ଅବଶେଷେ ।
ବୋଇଲେ ସଙ୍ଗ ହୋଇଅଛ ବସି ।
ଆମ୍ଭ ସଙ୍ଗ ତ ମିଳିଲଣି ଆସି । ୯୦ ।
ନଣନ୍ଦ ଜଗିଲେ ଦୁଆର ପୁଣ ।
ଭିତର ଘରକୁ ଗଲ ମୁ ଜାଣ ।
ମୋର ସଙ୍ଗରେ ସେହୁ ଗଲେ ପୁଣି ।
ପଲଙ୍କ ଉପରେ ବିଜୟେ ପୁଣି ।
ହାସ ରସ କରି ସୁରତ କଲେ ।
ଛନ୍ଦ ବନ୍ଧ ଚଉଷଠି ପ୍ରକାରେ ।
ଦୁନ୍ଦୁଘଡ଼ିରେ ମୋତେ ଛାଡ଼ିଦେଲେ ।
ମୁଁ ଆସିବାରୁ ନଣନ୍ଦ ମିଳିଲେ ।
ତାଙ୍କଠାରେ ପୁଣ କଲେ ରହସ ।
ରତି ସାରଣ ମନରେ ହରଷ । ୯୫ ।
ହସ ହସ ହୋଇ ନନ୍ଦନାଗର ।
ସେଠାରୁ ଚଳିଲେ ଆପଣା ଘର ।
ଆମ୍ଭେ ଦୁଇଜଣେ ହରଷ ହେଲୁଁ ।
ଦୁଧ ଛେନା ଘେନ ଭୋଜନ କଲୁଁ ।
ସେଦିନ କଥା ଗୋ ପଡ଼ିଲା ମନେ ।
କରତ ହୋଉଛୁ ଶରୀର ତେଣେ ।
ତାଙ୍କୁ ଆଶକର ଦିନ ବଞ୍ଚିଲୁଁ ।
କେତେ ଅପକୀର୍ତ୍ତି ବାକ୍ୟ ଶୁଣିଲୁଁ ।
ମେଳ ଭାଙ୍ଗିଗଲେ ଯେ ଯାହା ପୁରଂ ।
ଦିନାଇଁ ଦାସ ସେବିଲା ପଯୃର ।୧୦୦।

୯୫-୨—ମନେ ବଡ ତୋଷ (କ, ଚ, ଜ) ।



# ତ୍ରୟୋଦଶ ଛାନ୍ଦ ୧

ଏଥୁ ଅନନ୍ତରେ କହେ ଶଉରୀ ।
ଜୟ କଲେ ପୁଣି ଗୋପନାଗରୀ ।
ନାଗରବର ପୁଣି ଜୟ କଲେ ।
କଉଁ ଭାବରେ ଗୋପୀଙ୍କି ମୋହିଲେ ।
ବଡ଼ ବିନୋଦିଆ ନନ୍ଦର ସୁତ ।
ଗୋପନାରୀଙ୍କି ମାୟାରେ ମୋହିତ ।
ଏ କଥା ମୋତେ କହ ବିଶ୍ୱନାଥ ।
ଶୁଣିଲେ ମନ ହୋଇବ ତୃଷିତ ।
ଗୋପୀ ସମାନେ ଭାଗ୍ୟବନ୍ତ ନାହିଁ ।
ଚିତ୍ତ ସ୍ଥିରତରେ ମୋହେ କହାଇ ।୫।
ଭଲା ତପସ୍ୟା କରିଥିଲେ ପୁଣି ।
ଗୋବିନ୍ଦ ସଙ୍ଗେ ବସି ଅନୁକ୍ଷଣି ।
ଏ କଥା ଶୁଣିତ ବଡ଼ ଶରଧା ।
ଅମ୍ଭଙ୍କୁ ହଉ ହେ ବିରହ ବାଧା ।
ଭଗବତୀଠାରୁ ବଚନ ଶୁଣି ।
କହନ୍ତି କପିଳାସ-ବାସୀ ପୁଣି ।
ସହସ୍ରେ ଦେବୀରେ ସୁଦେବୀ ପୁଣ ।
ସ୍ନାନ କରି ବସିଛନ୍ତି ଜାଣ ।
ଏହି ସମୟରେ ବ୍ରଜସୁନ୍ଦରୀ ।
ସମସ୍ତେ ଯାଇଁ ମିଳେ ତାଙ୍କ ପୁରୀ ॥
ମାନ୍ୟ ଧର୍ମ ତାଙ୍କୁ କରି ବସିଲେ ।
ସଙ୍ଗୋଳା ପଟରୀ ସମସ୍ତେ ହେଲେ ।
କୃଷ୍ଣର କଥାମାନ ମନେ ଭାଳି ।
ସୁଦେବୀ ବୋଇଲେ ଶୁଣ ସୁନ୍ଦରୀ ।
ପୂର୍ବଦିନେ କୃଷ୍ଣ କରିଛି ଯାହା ।
ଶୁଣ ଗୋ ସମସ୍ତେ କହିବା ତାହା ।
ଏକ ଦିନକରେ ନନ୍ଦଦୁଲାଳ ।
ମୋର ପୁରେ ବିଜେ ରଜନୀକାଳ ।
ସେ ଦିନ ମଦନମୋହନ ବେଶ ।
ଫୁଲ ଚନ୍ଦନ ଘେନି ନାନା ବାସ ।୧୫।
ମୁରଲୀ ଗୋଷ୍ଠ ହସ୍ତେ ତାର ଅଛି ।
ଧୀର ଧୀର କରି ଦିନେ ସେ ଭାଷି ।
ବୋଇଲେ କୁଣିଅଁ କରିବ ଆଜ ।
ଚନ୍ଦ୍ରାବଳୀ ପୁରୁ ପାଇବୁଁ ଲାଜ ।
କାଲି ଯାଇଥିଲି ତାଙ୍କ ଘରକୁ ।
ଗୋଲଠା ମାଡ଼ ଗୋ ଦେଲେ ଅମ୍ଭଙ୍କୁ ।
ବହୁତ କରି ବିନୋଇ କହିଲୁଁ ।
ଦନ୍ତରେ ତୃଣ ଧରି ଶୋଇଲୁଁ ।
ଚରଣ ଧରିଲୁଁ ତାଙ୍କର ପୁଣ ।
ସୁରତ ମାଗିଲୁଁ ହୋଇ କାରୁଣ୍ୟ ।୨୦।
ନାହିଁ କରଣ ନିର୍ଦ୍ଦୟ ବୋଇଲେ ।
ନନ୍ଦ ଘର ଟୋକା ନିଲଜ ତୁ ରେ ।
ଚରଣ ଶୃଙ୍ଖଳ ମାଇଲେ ମୋତେ ।
ନେପୁର ବସିଲା ମୋର ମସ୍ତକେ ।
ଝର ଝର ହୋଇ ରକତ ବହି ।
ଲାଜରେ ସେଠାରୁ ଆଇଲି ମୁହିଁ ।
ଦୂତିକା ମୋ ସଙ୍ଗେ ଉଠି ଆଇଲେ ।
ଚରଣ ଧରି ବିନୋଦ ହୋଇଲେ ।
ମସ୍ତକରୁ ପୁଣ ରକତ ପୋଛି ।
ବହୁତ ବିକଳ ହୋଇଲେ ଦୂତୀ ।୨୫।

୨.୧—ମୋର ଶରଧା (କ) । ୧୧.୨—ସଙ୍ଗୋଳା ପଟେଣ (ଡ,ଝ,) । ୨୦.୨—କାରୁର୍ଣ (ଖ,ଚ,ଝ) ।

୨ ଗୋପାଙ୍ଗନା

ମୁହିଁ ବନ ଗଲୁ ସେ ଗଲେ ଘରେ ।
ତାହା ଶୁଣିଣ ମୁଁ ଉଠିଲି ଭଲେ ।
ଦେଖିଲି ମସ୍ତକ ହୋଇଛି ଘାଅ ।
ବୋଇଲି କି କଲୁ ଲୋ ରାଧା ଏହା ।
ଶୀତଳ ମୁଣୋହିଁ ଅଣିଣ ଦେଲି ।
ଭୋଜନ କରାଇ ପଲଙ୍କେ ନେଲି ।
ବିଞ୍ଚଣି ଧରଣ ବିଞ୍ଚିଲି ବସି ।
ପଦ୍ମ ଚରଣ ଧୀରେ ଧୀରେ ଘଷି ।
ଶୟନ କରାଇ ପ୍ରାଣନାଥଙ୍କୁ ।
ବେଶ ହୋଇଲି ମୋହୋର ମନକୁ ।
ଜୁଡ଼ା ବାନ୍ଧିଣ ଝରିକାଠି ଲାଇ ।
ଥୋପି ଝିଞ୍ଜରି ବେଢାଇଲି ତହିଁ ।
ଅଳକା ଗୋଟିଏ ମସ୍ତକେ ଦେଲି ।
କେଇକର ଫୁଲ ଗଭା ଖଞ୍ଜିଲି ।
ଫୁଲ ପରେ ଦେଲି ଝାଟିଆ ପୁଣ ।
ବାସ କରାଇ ମଲ୍ଲୀ ଗଭା ଜାଣ ।
ସିନ୍ଦୂର ବିନ୍ଦୁ କପୋଳରେ ଦେଲି ।
ନୟନେ ଅଞ୍ଜନ ନେଇ ରଞ୍ଜିଲି ।
କାପ ମଲକଡ଼ି ଖଞ୍ଜିଲି କର୍ଣ୍ଣେ ।
ଚନ୍ଦ୍ର ଫାସିଆ ଲଗାଇ ବଦନେ ।
ନାସାରେ ବସଣି ଗୁଣା ଖଞ୍ଜିଲି ।
ତହିଁ ପାଖେ ନୋଥ ଗୋଟିଏ ଦେଲି ।
ବେକରେ ବାନ୍ଧିଲି ପଦକ ମାଳା ।
ଛେଗ୍ର କଣ୍ଠି ସଙ୍ଗେ ହରଡ଼ା ବେଢା ।
ଗୁପସରି ମାଳ ଉପରେ ଲାଇ ।
ଚନ୍ଦ୍ରହାର ତହିଁ ତଳେ ଲୁଲଇ ।
କଲା କାଞ୍ଚୋଲି ବକ୍ଷସ୍ଥଳେ ମୋର ।
ଲୁଗା ଜରି ଲାଗି ଅଛି ତହିଁର ।
କଲା ପୀତାମ୍ବରୀ ପାଟେ ପିନ୍ଧିଲି ।
ବାହାରେ ବାହୁଟି ତାଡ ଲାଗିଲି ।
ବେନି ହସ୍ତେ ଶୋହେ ସୁବର୍ଣ୍ଣ ଚୁଡ଼ୀ ।
ମୁଖ ଦର୍ଶିଲା ଯେହ୍ନେ ଚମ୍ପାକଢ଼ି ।
ପାଦୁଡ଼ ନେଉରୁ ଖଞ୍ଜିଲି ପାଦେ ।
ଅଙ୍ଗୁଳିମାନଙ୍କରେ ମୁଦି ଖଞ୍ଜେ ।
ଅଲତା ଦୁଇ ପାଦରେ ଘେନିଣ ।
ବେଶ ହୋଇଲି ଦୁଇ ଘଡ଼ି ଜାଣ ।
ପୀତାମ୍ବରୀ ଖଦି ଯୋଡ଼ିଏ ଘେନି ।
ପଲଙ୍କ ଉପରେ ବସିଲି ପୁଣି ।
ନିଦ୍ରା ଭାଙ୍ଗିଣ ଉଠିଲେ କେଶବ ।
ହରଷେ ମୋତେ ଚାହିଁ ବାସୁଦେବ ॥
ବୋଇଲେ ଅଜ ବେଶ ତୋର ହୋୟେ
ମୋତେ ତ ଲାଗିଲା ରାଧିକା ପ୍ରାୟେ ।
ପ୍ରତଦନ ରାଧା ବେଶରେ ତୋର ।
ରୂପବନ୍ତୀ ତୋ ଦେହ ଶୋହେ ଗୋରା
ବଚନ ମିଠା ଗୋ ମୂର୍ତ୍ତି କୋହଇଁ ।
ସ୍ନେହମନ୍ତ ବଚନ କହିଲେ ସେହି ।
ତାହା ଶୁଣି ମୁଁ ଯେ କର ଯୋଡ଼ିଲି ।
ପୀତାମ୍ବରୀ ଖଦି ଯୋଡ଼ି ଘେନିଲି ।
ଗୋଟିଏ ନେଇ ପିନ୍ଧାଇଲି ପୁଣି ।
ଆର ଗୋଟି ଦେହେ କାଛେଟି ଜାଣି ॥
ଛଟକେ ନାଗର କଢାଇ ପୁଣ ।
ନଟବର ବେଶ ହେଲେ ଆପଣ ।
କୋଳ କରି ମୋତେ ଚୁମ୍ବନ ଦେଲେ ।
ପଲଙ୍କ ଉପରେ ସୁରତ କଲେ ।
ରତି ରସରେ ମୋର ମନ ଭୋଳ ।
ନାନା ରସ ଜାଣେ ସେ ନନ୍ଦବାଳ ।

୨୬-୨—ଉଠିଲି ଖରେ (ଘ,ଚ) । ୪୭-୨—ଦଷା ଗୋର (ଙ) । ୫୦-୨—ପାପେଟି ଜାଣି (କ,ଗ,ଛ,ଙ) ।

କୋଳରେ ଘେନଣ ମୋତେ ଶୋଇଲେ
ରଜନୀ ଶେଷରେ କେଣିକି ଗଲେ ।
ପଲଙ୍କ ଉପରୁ ଉଠିଲି ମୁହିଁ ।
ଘର କଣ୍ଟାଳ ବେଗେ ସାଉଲଇଁ ।୫୫।
ବେଶଭୂଷଣ ଉଲଗି ଚନ୍ଦନ ।
ଯମୁନାଜଳେ ସ୍ନାନ କଲି ପୁଣ ।
କଲାମେଘୀ ପାଠ ଗୋଟିଏ ପିନ୍ଧି ।
ଭୋଜନ ସାରି ପାନ ଗୁଆ ଭୁଞ୍ଜି ।
ଶୟନ କଲି ପଲଙ୍କ ଉପରେ ।
ଶୟନ ଦେଇ ସଖୀଗଣ ମେଲେ ।
ଚନ୍ଦ୍ରାବଳୀ ପୁରେ ଚଳିଲି ପୁଣ ।
ପ୍ରବେଶ ଯାଇ ହୋଇଲି ବେଗେଣ ।
ଦୂତିକା ଲଳିତା ମଲ୍ଲିକା ଅଛି ।
ରାଧିକା ସୁନ୍ଦରୀ ମଧ୍ୟେ ବସିଛି । ୬୦ ।
ନୀରସ ଦିଶୁଛି ଚନ୍ଦ୍ରବଦନ ।
ନୟନୁ ଅଶ୍ରୁଧାର ବୋହେ ପୁଣ ।
ମାଳ ଗୋଟିଏ ହସ୍ତେ ଧରି ପୁଣି ।
କଥା ନ କହି ହୋଇଛନ୍ତି ଭୂନ ।
ଦୂତିକା ବୋଲେ ଚନ୍ଦ୍ରାବଳୀ ଶୁଣ ।
ମେଲାଣି ଦେଲେ ସଖୀ ଯିବେ ପୁଣ ।
ଶୁଣିଣ ରାଧା ବୋଲନ୍ତି ଉତ୍ତର ।
ଦୋଷୀ ହୋଇଲି ବ୍ରହ୍ମାଣ୍ଡଠାକୁର ।
କାଲି ନିଶିରେ ହରି ଆସିଥିଲେ ।
ମୋହୋଠାରେ ବଡ଼ କଣ୍ଟାଳ କଲେ ।୬୫।
ଭର୍ତ୍ସନା କରି ଗାଳି ଦେଲି ତାଙ୍କୁ ।
ବୋଇଲି ନ ଆସ ମୋର ପୁରକୁ ।
କାତର ହୋଇ ଚରଣ ଧରିଲେ ।
ବୋଧ କରିଣ ବହୁତ କହିଲେ ।
କେଉଁଣି କଥା ନ ଶୁଣିଲି ପୁଣ ।
ଚରଣ ଛଣ୍ଡାଘାତ ହଥନ୍ତେ ପୁଣ ।
ନେପୁର ବାଜନ୍ତେ ମସ୍ତକେ ଯାଇ ।
ଝର ଝର ହୋଇ ରୁଧିର ବୋହି ।
ମୋ ପାଶୁ ଅନ୍ତର ହୋଇଣ ଗଲେ ।
ଦୂତୀ କହନ୍ତେ ଅଉ ନ ଆସିଲେ ।୭୦।
ମୋହୋର ସୁଖ ସରିଲା ଗୋ ସଖି ।
ପଡ଼ି ବହ୍ନିନେ ହେଲି ଜରମାଖୀ ।
ଯାଅ ତୁମ୍ଭେ ସର୍ବେ ଯେ ଯାହା ପୁର ।
ଶ୍ରୀକୃଷ୍ଣଙ୍କୁ ଯାଇଁ ସମ୍ଭାଳ କର ।
ଶୁଣିଣ ମୁଁ ତାଙ୍କୁ ବୋଇଲି ବାଣୀ ।
କାଲି ଭେଟିଥିଲେ ନାଗର ପୁଣି ।
ଭ୍ରମର ଚରିତ କହିଲେ ମୋତେ ।
ବୋଇଲେ ନିଷ୍ଠୁର ରାଧିକା ଏଥେ ।
ତାର ପାଇଁ ସିନା ଗୋପରେ ଜାତ
ମନରୁ ପାସୋର ନୋହିବ ସେ ତ ।୭୫।
ଏତେ କହି ମୋର ପୁରେ ରହିଲେ ।
ଆଜ ସକାଳୁ ବନକୁ ଚଳିଲେ ।
ଶୁଣି ଚନ୍ଦ୍ରାବଳୀ ସନ୍ତୋଷ ହେଲା ।
ଆମ୍ଭମାନଙ୍କୁ ବହୁତ କହିଲା ।
ମେଲାଣି ହୋଇ ଯେଝା ଘର ଗଲୁଁ ।
ଏମନ୍ତ କଥା ତହୁଁ ଜାଣିଥିଲୁଁ ।
ତାହା ଶୁଣି ଗୋପୀ ଯାଇ ବୋଇଲା ।
ବାଟରେ ହରେ ଗୋ ଭେଟ ପଡ଼ିଲା ।
ରଙ୍ଗ ପୁଷ୍ପମାଳ ଧରିଣ ହସ୍ତେ ।
ମୋ ବେକେ ପକାଇ ଦେଲେ ତୁରତେ ॥
ମୁଁ ବୋଇଲି ବାଟେ ବଡ଼ ଶରଧା ।
ନ ରହିଲା ମୋର କନ୍ଦର୍ପ ବାଧା ।

୬୪-୧—ରହ (ଖ,ଗ,ଘ), ରଖା (ଜ)। ୬୮-୨—ସ୍ନିଗ୍ଧା (ଭ)।

ବୋଇଲେ ଅଜ ତୋର ପୁର ଯିବା ।
ରତି ରସରେ ରଜନୀ ବଞ୍ଚିବା ।
ଏତେ କହି କୁଞ୍ଜବନକୁ ନେଲେ ।
ଚଉଷଠି ବନ୍ଧେ ରମଣ କଲେ ।
ରତି ସାରି ଗଲୁ ଯମୁନା ଜଳ ।
ସ୍ନାନ କରିଣ ଚଳିଲୁ ଘର ।
ଅନ୍ନ ବ୍ୟଞ୍ଜନ ଗୋ ତୁରିତେ କରି ।
ଜଟିଳାକୁ ଦେଇ ଭୋଜନ କରି ।
ଗୁରୁସ୍ତ ପୁତ୍ରଙ୍କୁ ଦେଲି ମୁଁ ପୁଣି ।
ଦିବସ ଶେଷରେ ହୋଇଲା ରଜନୀ ।
ପଦ୍ମରେ ଜଣି ହୋଇଲୀକ ଯହୁଁ ।
ଘରର ଆଡତ ପାରିଲି ତହୁଁ ।
ବେଶ ଭୂଷଣ ମୁଁ ତୁରିତେ ହେଲି ।
ପଲଙ୍କ ଉପରେ ଯାଇଁ ଶୋଇଲି ।
ନିଦ୍ରାବେଳରେ ମିଳିଲେ ନାଗର ।
ରତି ସୁରତି କଲେ ଅଗୋଚର ।
ରଜନୀ ପହରେ ଅଛୁ ଚଳିଲେ ।
ସେ ଦିନ କଥା ମୋ ମନେ ପଡିଲେ ॥
ବିକଳ ହୁଅଇ ମୋହୋର ପ୍ରାଣ ।
ଖଣ୍ଡି କରି ଗଲେ ସେ ନାରାୟଣ ।
ତାହା ଶୁଣି ଇନ୍ଦୁମତୀ ବୋଇଲା ।
ଦିନେ ଯାତ୍ରା କଲେ ସେ ନନ୍ଦବାଳା ।
ମୋର ଘରଠାରେ ହେଲେ ପ୍ରବେଶ ।
ଜଟିଳା ସଙ୍ଗରେ କଥା ହରଷ ।
ଜଟିଳା ବୋଇଲା କହ୍ନାଇଁ ଶୁଣ ।
ଆମ୍ଭ କୁଳରେ ତୁ ଚନ୍ଦ୍ରମା ଜାଣ ।
ଏତେ ବୋଲି ଦାଣ୍ଡଘରକୁ ଯାଇ ।
ମାୟା ଲଗାଇଲେ ନନ୍ଦ କହ୍ନାଇଁ ।
ଅନ୍ଧାର ଘରେ ମୋର ସଙ୍ଗେ ଲୀଳା ।
ନାନା ରସରେ କଲେ ରତି କ୍ରୀଡା ।
ଜଟିଳା ମୋର ଦାଣ୍ଡ ଘରେ ଥିଲେ ।
କଉଁ ତରୁଣୀ ସଙ୍ଗେ କଥା ହେଲେ ।
ଅଇଲା ବେଳକୁ ନାଗରବର ।
ବସିଛନ୍ତି ଘର ପିଣ୍ଡା ଉପର ।
ବୋଇଲେ ମାଉସୀ ଯାଉଛୁଁ ଆମ୍ଭେ ।
ମାନ୍ୟ ଧର୍ମ କରି ଚଳିଲେ ବେଗେ ।
ମେଲ ଭାଙ୍ଗିଣ ସର୍ବେ ଗଲେ ଘର ।
ଦାସ ଦିନାଇ ସେବିଲା ପୟର ।

୮୭-୨—ରମଣ କଲେ (ଗ,ଘ,ଙ) । ୮୮-୧—ବେଶ ବେଶଣ (ଘ,ଛ) ।



# ଚତୁର୍ଦ୍ଦଶ ଛାନ୍ଦ

ଏଥୁ ଅନନ୍ତରେ କହେ ପାର୍ବତୀ ।
ରାସ କଲେ ପୁଣି ବ୍ରଜଯୁବତୀ ।
ମେଳ ହୋଇ ପୁଣ ରାସ ବିହାର ।
କହ ବିଶ୍ୱନାଥ ମୋର ଆଗର ।
ଈଶ୍ୱର କହେ ପୁଣ ଭଗବତୀ ।
ପୁଣି ମେଳ ହେଲେ ବ୍ରଜଯୁବତୀ ।
ଭୃଙ୍ଗବିଦ୍ୟା ଦେବୀ ମନ୍ଦିରେ ଯାଇଁ ।
ସମସ୍ତେ ଗୋପୀ ମିଳିଲେ-ସେଠାଇଁ ।
ବିଦ୍ୟା ଦେବୀ ଯେବେ ବିଚାର କଲେ ।
ରାସ କରିବା ନନ୍ଦସୁତ ଗଲେ ।୫ ।
ମଦନମୋହନ କଂସକୁ ମାରି ।
ଦେଖା ଦରଶନ ନ ଦେଲେ ହରି ।
ଏବେ ଶୁଣାଗଲା ଗଲେଣି କାହିଁ ।
କେ ବୋଲେ ମଥୁରା ନାହାନ୍ତି ସେହି ।
ତାହା ଶୁଣି ଭୃଙ୍ଗବିଦ୍ୟା ବୋଇଲା ।
କାଳୀ ଦହନ ପଶି ଯାହା କଲା ।
ବନସ୍ତେ ବତ୍ସ ବାଳକ ରହିଲେ ।
ଆମ୍ଭେ ସମସ୍ତେ ରହିଲୁ ସେଠାରେ ।
ଜଳନ୍ତା ନିଆଁ ପୋଡ଼ିଲାକ ବନ ।
ବିକଳ ହୋଇଲୁ ସମସ୍ତେ ପୁଣ । ୧୦।
ଗିଳିଲେ ଅନଳ ରଖିଲେ ତହୁଁ ।
ଗୋପରେ ଯେତେ କଥା କଲେ ପ୍ରଭୁ ।
ଦିନେ ଜନନୀ କ୍ରୋଧ ତାକୁ ହେଲେ ।
ଶକଟ ଭାଙ୍ଗି ପଳାଇଣ ଗଲେ ।
ଯଶୋଦା ଗୋଡ଼ାଇ ଗଲେ ପଛରେ ।
ଥାଇଁ ଥାଇଁ ପଛେ ସେ କ୍ରୋଧଭରେ ।
ଧରିଣ ବାନ୍ଧିଲେ ରୋଳ ଦଉଡ଼ି ।
ଯାମଳା ବୃକ୍ଷ ତଳେ ରହେ ହରି ।
ରୋଳ ଦଉଡ଼ି ଧରି ଟାଣି ଦେଲେ ।
ଯାମଳା ବୃକ୍ଷ ଉପୁଡ଼ି ପଡ଼ିଲେ ।୧୫ ।
ସେ ଦିନ କଥା ତ ସମସ୍ତେ ଜାଣ ।
ଆଉ କଥାମାନ ଶୁଣ ଗୋ ପୁଣ ।
କଦମ୍ବ ମୂଳରେ ବସିଣ ଥାନ୍ତି ।
ପାଣି ପାଇଁ ଗଲେ ଘାଟ ମାଗନ୍ତି ।
କୁଞ୍ଜବନକୁ ଗୋ ନଥିଲ ଯିବ ।
ରତି ପୁରତ କରେ ନରହରି ।
ଏକ ଦିନକରେ ବୋଇଲେ ପଥେ ।
ଆଜ କୁଞ୍ଜବନ ଯିବା ସଙ୍ଗାତେ ।
ମୁଁ ବୋଇଲି ବେଶ ଭୂଷଣ ନାହିଁ ।
ମୋର ସୁରେ ବିଜେ କର ଗୋସାଇଁ ॥
ବୋଇଲେ ଭୂଷଣ ଇଚ୍ଛା ଯେତେକ ।
ଆମ୍ଭେ ଦେବା ଗୋ ସଙ୍ଗେ ମୋର ଆସ
ଏତେ କହିଣ କୁଞ୍ଜବନ ନେଲେ ।
ନାନା ଫୁଲ ତୋଳି ମାଳ ଗୁନ୍ଥିଲେ ।
ପୀତାମ୍ବରୀ ପାଟ ପତନୀ ଶାଢ଼ି ।
ମୋତେ ପିନ୍ଧାଇଲେ ଯତନ କରି ।
ମଥା ସାମନ୍ତ ଜୁଡ଼ା ଆପେ ବାନ୍ଧି ।
ଜୁଡ଼ାପରେ ମଲ୍ଲୀ ସେବତୀ ଛନ୍ଦି ।
ଶିରରେ ଅଳକା କର୍ଣ୍ଣରେ କାପ ।
ଚନ୍ଦ୍ରଫାସିଆ ମଲକଣ୍ଠୀ ଧାପ । ୨୫ ।

ନୟନେ ଅଞ୍ଜନ ରଞ୍ଜିଲେ ନେଇ ।
ବେନି ହସ୍ତେ ଚୂଡ଼ୀ ସୁବର୍ଣ୍ଣ ବାହୁ ।
ଗଳେ ଗ୍ରୀପଷରୀ ମୁକ୍ତାମାଳ ।
ପଦକ ଶ୍ଳେଗ୍ର କଣ୍ଠି ବେକେ ହାର ।
ନାସାରେ ବସଣୀ ନେଇଣ ଦେଲେ ।
ଫୁଲଗୁଣା ସଙ୍ଗେ ଜୋଥ ଖଞ୍ଜିଲେ ।
ବିଦ କାଡ ବାହେ ହୀର ଭୂଷଣ ।
ଫୁଲ ମେଣ୍ଢା ଦେଲେ ମସ୍ତକେ ପୁଣ ।
ଚରଣେ ପାହୁଡ଼ ନେପୁର ଦେଇ ।
କାଞ୍ଚଲ୍ଲ ଦେଲେ ବକ୍ଷସ୍ଥଳେ ନେଇ ॥
ଅଲତା ପୟରେ ମୁଣ୍ଡେ ସିନ୍ଦୂର ।
ଏମନ୍ତେ ବେଶ ମୋତେ ସେ ନାଗର ।
ଆପଣେ ବେଶ ଯେ ଗୋଟିଏ ହେଲେ ।
ଶ୍ରୀମୁଖ ଗୋଟି ଦଶେ ପଦ୍ମ ଭୁଲେ ।
ବାହୁ ଦୁଇ ଗୋଟି ଯେସନ୍ତେ ବାସୁକି ।
ଚରଣକୁ କଲେ ପଙ୍କ୍ତୁଜ ପକ୍ଷୀ ।
ଉରୁ ମୁକୁଟ ଚୂଳ ପୁଣି କଲେ ।
କେତକୀ ପାଖୁଡ଼ା ତହିଁ ଖଞ୍ଜିଲେ ।
କଟି ଗୋଟି ପୁଣି ଯେସନେ ସିଂହ ।
ହୃଦୟ ଦଶିଲ୍ଲ ଯେଥେ ମାତଙ୍ଗ ।
ଦିବସ ହୋଇଲ୍ଲ ରଜନୀ ପର ।
ମାଣିକ ଦୀପ ଜଳେ ଗୋଟି ଗୃହ ।
ବସନ୍ତ ପତନୀ ପିନ୍ଧିଲେ କାଛ ।
ବସନ୍ତ ହୋସଡ଼ା ଦେହରେ ଅଛି ।
ଏମନ୍ତ ବେଶ ଗୋଟିଏ ହୋଇଲେ ।
ଦର୍ପଣ ଗୋଟିଏ ମୋ ହସ୍ତେ ଦେଲେ ।
ବୋଇଲେ ଦେଖ ଗୋ ଭୁମ୍ଭର ଦେହ ।
ଏଥୁଁ ଅଧିକ କି ହୋଇବ କହ ।
ତାଙ୍କଠାରୁ ଶୁଣି ଦର୍ପଣେ ଦେଖି ।
ମନକୁ ମୋହୋର ହୋଇଲ୍ଲ ସୁଖୀ ।
ବିଗୃହ କଲି ମୁଁ ମନରେ ପୁଣ ।
ଏ ବେଶକୁ ସୁଖ ପଲଙ୍କ ପୁଣ ।
ଭାବ ପୀରତି ତଳେ ସିନା ହେବ ।
ବେଶ ଭୂଷଣ ତଳେ ନାଶ ଯିବ ।
ଏମନ୍ତ ବିଗୃହ ମନରେ କରି ।
ଫେଡି ନ କହୁ ହୋଇଲି ସମ୍ଭାଳି ।
କେମନ୍ତେ ଜାଣିଲେ ଛଇଲବର ।
କୁଞ୍ଜ ଗୋଟିଏ ହୋଇଲ୍ଲ ତିଆର ।
ତହିଁରେ ପଲଙ୍କ ଶଯ୍ୟା ହୋଇଛି ।
ପବନକୁ ଦୋଳ ପହିଷ୍ଟି ଅଛି ।
ଗୃହ ପାଶେ ଶୋହେ ଉହୁ ପାଚେଶି ।
ଉହୁ ଖମ୍ଭମାନ ବସିଛି ଘେର ।
ନଟକାଶ୍ରିମାନେ ଶୂନ୍ୟରୁ ଆସି ।
ନାଟ ଗୀତରେ କୁଞ୍ଜବନ ତୋଷି ।
ତାହା ଦେଖି ମୋର ମନରେ ସୁଖ ।
ମୋତେ କୋଳେ ଧରି ପଙ୍କଜ-ମୁଖ ।
ପଲଙ୍କ ପରେ ରସଲୀଳା କଲେ ।
କୁଞ୍ଜ ଭିତରେ ଗୋ ଯେନି ଶୋଇଲେ ।
ରତି ସୁରତି କରି ନନ୍ଦବଳା ।
ମୁରଲୀ ଘେନି ଭୁମ୍ଭଙ୍କୁ ଡାକିଲ୍ଲ ।
ଗୋଟି ଗୋଟି ହୋଇ ଭୁମ୍ଭେ ସମସ୍ତେ ।
ପ୍ରବେଶ ହୋଇଲ ସେ କୁଞ୍ଜ ପାଶେ ।
କୁଞ୍ଜ ମଧ୍ୟରେ ଯାଇଣ ଦେଖିଲେ ।
ମୋତେ ସଙ୍ଗେ ଘେନି ନାଗରବରେ ।
ଭୁମ୍ଭେ ଦେଖିକରି ହେଲ ଚାଟକା ।
ବୋଇଲେ କେତେ ଭାବ କଲୁ ଏକା ।

୫୯-୨—ଫୁଲ ମଣି ଦେଲେ (ଝ) । ୬୫-୨—ହେଥେ (ଚ,ଛ) ।

ସହସ୍ରେ କୃଷ୍ଣ ତତକ୍ଷଣେ ହୋଇଲେ ।
ତୁମ୍ଭମାନଙ୍କ ସଙ୍ଗେ ବିହରିଲେ ।
ରତି ସୁରତ ଉତ୍ସବ ସାରଣ ।
ଲୀଳା ବିନୋଦ ଭଙ୍ଗି ନାରାୟଣ ॥
ସେମାନ କେଉଣେ ଗଲେ ପୁଣ କାହିଁ ।
ବେଶ ଭୂଷଣ ଯେ ଶରୀରେ ନାହିଁ ।
ଯଉଁ ରୂପେ ଆଗେ ସେ ବନ ଥିଲେ ।
ତେସନ ପ୍ରକାରେ ସବୁ ହୋଇଲେ ।
ଯଶୋଦା ସୁତ ହୋଇଲେ ଅନ୍ତର ।
ସମସ୍ତେ ଗଲେଇଁ ଯେ ଯାହା ପୁର ।
ସେ ହେନ କଥା କ ମିଳିବ ଆଉ ।
ଯଉଁ ଦିନୁ ଗଲେ ଏ ପୁରୁ ସେହୁ ।
ସମସ୍ତେ ଜାଣନ୍ତି ଗୋପୀରେ ପ୍ରୀତି ।
ଲୋକ ଲଜ୍ଜା ହେବ ଗଲେ ତେଣିକି ॥
ଆଗେ ତ ପୀରତି ଆମ୍ଭର ସଙ୍ଗେ ।
ପଛେ ବଡ଼ଲୋକ ହୋଇଲେ ଏବେ ।
ସମସ୍ତେ ବୋଲିବେ ଗୋପ ତରୁଣୀ ।
ପୋଥା ହୋଇବ ଆମ୍ଭ କଥା ଶୁଣି ।
ରାଧିକା ଅଟନ୍ତି ନିଜ ତାଙ୍କର ।
ତାଙ୍କ ଭାବେ ଆମ୍ଭେ ଗୋପୀ ସକଳ ।
ଷୋଳ ନାୟିକା ପରେ ସାଆନ୍ତାଣୀ ।
ଚନ୍ଦ୍ରାବଳୀ କଥା ସମସ୍ତେ ଶୁଣି ।
ଏମନ୍ତ ଭୁଙ୍ଗବିଦ୍ୟା ଯେ କହିଲେ ।
ସ୍ନାହାନ ସାର ଯେଝା ଘର ଗଲେ ।
ପୁଣି ଗୋପୀ ବୋଲେ ତୁମ୍ଭେ ଶୁଣସି ।
ଦିନେ ଯାହା କଲେ ସେ ମୋତେ ଆସି ।
ବୋଇଲେ ଶୁଣ ଗୋ ତୁମ୍ଭେ ଆମ୍ଭର ।
ସବୁଦିନେ ପଡ ତୁମ୍ଭେ ମନର ।

ଆଜ ତୁମ୍ଭ ସଙ୍ଗେ ପୀରତି ହେବ ।
ଅଳପ ଦିନ ସିନା ଆମ୍ଭ ଭାବ ।
ଅଳପ ଦିନରେ ମଥୁରା ଯିବୁଁ ।
କଂସକୁ ମାରି ତୁମ୍ଭଙ୍କୁ ଛାଡିବୁଁ ।
ଅଷ୍ଟ ବରଷ ଗଲେ ପୁଣି ଆମ୍ଭେ ।
ଦ୍ୱାରକା ରହିବୁ ବଡ ସମ୍ଭ୍ରମେ ।୨୦।
ତେବେ ତୁମ୍ଭକୁ ଗୋ ମିଳିବ ସୁଖ ।
ଜାତ୍ୟାସଙ୍କ ଭସ୍ମ ହୋଇବ ଦୁଃଖ ।
ଏତେ କହିଣ ମୋର ସଙ୍ଗେ ଲୀଳା ।
ବହୁତ ଭାବ ଗୋ ମୋ ସଙ୍ଗେ କଲେ ।
ନାନା ରସରେ ସେ କଲେ ରମଣ ।
ପହରକେ ଦେହ ହୋଇଲା ଖିନ ।
ତେଜ କରି ଗଲେ ପଦ୍ମଣଧନ ।
ଚାହିଁ ନ ପାରିଲି ମୁଁ ଚନ୍ଦ୍ରବଦନ ।
ପାଷ୍ଟ ସାତଦିନେ ଦମ୍ଭ ହୋଇଲି ।
ରତି ରସରେ ପୁଣ ମନ କଲି ।୨୧।
ତାହା ଶୁଣି ସତ ଗୋପୀ ବୋଇଲା ।
ଭଲ ପୁରୁଷ ଗୋପେ ମିଳିଥିଲା ।
ସମସ୍ତଙ୍କ ସଙ୍ଗେ ଏକ ପୀରତି ।
ମୁରଲୀ ସ୍ୱନରେ ମନ ବୋଧନ୍ତି ।
ଦିନେ ମୋ ପୁରେ ବିଜେ କଲେ ହରି ।
ତିନ ବରଷ ସମସ୍ତ ତାହାର ।
ବାଳକଙ୍କ ସଙ୍ଗେ ଖେଳଣ ରଙ୍ଗେ ।
ବୋଇଲେ ଦିଅ ଗୋ ଲବଣୀ ବେଗେ ।
ଦେହ ମୋ ବିକଳ ହଉଛି ଦେଖ ।
ଖେଳି ଖେଳି ମୋତେ ଲାଗିଛି ଭୋକ ॥
ହସିଣ ମୁଁ ପୁଣି ଦେଲି ଗୋଟିକା ।
ଗୋରସ ସଙ୍ଗରେ ଲବଣୀ ମେଞ୍ଚା ।

୨୦-୨—ଦ୍ୱାରକା (ଘ,ଛ,ଝ) । ୨୧-୨ ମୋ ସଙ୍ଗେ ହେଲ (ଖ,ଘ,ଛ) । ୨୨ ୨—ହୃଦରେ (ଖ,ଗ,ଡ,ଝ)।

ଛେନା ସଙ୍ଗରେ ବସା ଦହି ଦେଲି ।
ଦୁଧ ସର ନେଇ ପାଖେ ରଖିଲି ।
ସକଳ ପଦାର୍ଥ ଖାଇଲେ ବେଗେ ।
ବୋଇଲେ ତୁମ୍ଭେ ଗୋ ନିଷ୍ଠୁର ଏବେ ।
ମାଗିଲା ଲୋକଙ୍କୁ ପାଣି ନ ଦେବ ।
ଦଧି ବିକି ଗଲେ ଉଜାଣେ ଥିବ ।
ଆଉ କି ପଦାର୍ଥ ଦେବ ଯେ ତୁମ୍ଭେ ।
ଜାଣିଲୁଁ ନିଷ୍ଠୁର ତୁମ୍ଭେ ଗୋ ଏବେ ॥
ତାହା ଶୁଣିଣ ମୁଁ ବୋଇଲି ତାଙ୍କୁ ।
କିସ ମାଗିଲ ନ ଦେଲି ତୁମ୍ଭଙ୍କୁ ।
ସେ ବୋଇଲେ ମୋତେ ଦେବ ସୁରତ ।
ସେ କଥାରେ ମୋର ମନ ବଳୁଛି ।
ମୁଁ ତାଙ୍କୁ ବୋଇଲି ତୁମ୍ଭେ ବାଳୁତ ।
ମୁହିଁତ ଯୁବା ଅଟଇ ସମ୍ଭୂତ ।
ତୁମ୍ଭେ କି ଜାଣିମ ରତି ସୁରତି ।
ଖେଳିବା ଖାଇବା ତୁମ୍ଭର ମତି ।
ବଡ଼ ଲୋକଙ୍କର ବେଭାର ସେହୁ ।
ବାଳୁତ ପୁଅ ଅବେଭାର କହୁ । ୯୦ ।
ମୋଠାରୁ ଏମନ୍ତ ବଚନ ଶୁଣି ।
ଯୁବା ପୁଅ ହେଲେ ସେ ସେହିକ୍ଷଣି ।
ହିବଂ ମୂରତି ମଦନମୋହନ ।
ଚାହିଁଲା ଛଟକେ ମୋହିଲେ ପୁଣ ।

ଦେଖିଣ ଚରଣେ ପଡ଼ିଲି ମୁହିଁ ।
ଶରଣ ପଶୁଛି ରଖ ଗୋସାଇଁ ।
ଯେମନ୍ତ ବୋଲି ମୁଁ ପଶିଲି ଘରେ ।
ସେହିକ୍ଷଣି ଗଲେ ମୋର ସଙ୍ଗରେ ।
କୋଳେ ଧରି ମୋର ଚୁମ୍ବିଲେ ମୁଖ ।
ରତି ସୁରତି କଲେ ମହାସୁଖ । ୯୫ ।
ପୁଣି ବାଳୁତ ଗୋଟିଏ ହୋଇଲେ ।
ଖେଳିବା ପାଇଁକି ଦାଣ୍ଡକୁ ଗଲେ ।
ସେହି ଦିନୁ ମୁହିଁ ଜାଣିଲି ପୁଣ ।
ଗୋପରେ ଜନମ ପୁରୁଷୋତ୍ତମ ।
ତା ଶୁଣି ସଙ୍ଗ ଗୋପିକା ବୋଇଲା ।
ଦିନେ ମଥୁରା ବାଟେ ହିନ୍ଟା କଲା ।
ବୋଇଲା ଆଜ ଗୋ ଯିବ କେଣିକି ।
ଭେଟ ପଡ଼ିଅଛୁ ଏତେଦିନେ କି ।
ମୁଁ ବୋଇଲି ତୁମ୍ଭେ ହୋଇଲ ବାଇ ।
ଦିବସ ବେଳେ କି ସୁରତି ହୋଇ ॥
ଦିବସ ହୋଇଲା ରଜନୀ କାଳ ।
ରତି ରସେ ଲୀଳା ହେଲା ଅପାର ।
ମୁଁ ଗଲି ଯମୁନା ସେ ଗଲେ ବନ ।
ସେ ଦିନ କଥା ଗୋ ଏମନ୍ତ ଜାଣ ।
ଏତେ କହି ସର୍ବେ ଘରକୁ ଗଲେ ।
ଦାସ ଦିନାଇଁ ସେ ପାଦେ ସେବିଲେ ।



# ପଞ୍ଚଦଶ ଛାନ୍ଦ

ଏଥୁ ଅନ୍ତରେ ହୈମବନ୍ତୀ ପୁଣ ।
ଗୋପପୁର କଥା ଶୁଣି ମନେଣ । ୧ ।
ବୋଇଲେ ଈଶାନ ସେ କଥା କହ ।
ଶୁଣିଣ ଶାନ୍ତ ହୋଉ ମୋର ଦେହ ।
ମହେଶ୍ୱର ବୋଲେ ଶୁଣ ଗୋ ତୁମ୍ଭେ ।
ଗୋପ ସୁନ୍ଦରୀ ଯାହା କଲେ ଏବେ ।
ଛାଡି କରି କୃଷ୍ଣ ମଥୁରା ଗଲେ ।
ଗୋପୀମାନେ ସବୁ ଅରତ ହେଲେ ।
ସହସ୍ରେ ସୁନ୍ଦରୀ ହୋଇଣ ମେଳ ।
ଚଳିଣ ଗଲେ ଇନ୍ଦୁରେଖା ପୁର । ୫ ।
ଶୋଇଛନ୍ତି ସତୀ ପଲଙ୍କ ପରେ ।
ଫୁଲ ଶଯ୍ୟା ଗୋଷ୍ଠ ବାସନା କରେ ।
ଦଶ ପାଞ୍ଚ ସାତ ହୋଇଣ ନାରୀ ।
ଶୋଇବାଠାରେ ମେଳ ହେଲେ ବାଳୀ ।
ଦେଖିଲେ ହବ୍ୟପୁର ପାଏ ଶୋଭା ।
ଚମ୍ପା ବଉଳ ଗୋ ଜୁଡ଼ାରେ ଗଭା ।
ଅଳକା ସିନ୍ଦୂର କପୋଳେ ଅଛୁ ।
ନୋଥ ବସଣୀ ନାକେ ଶୋଭା ଦିଶି ।
ସୁନ୍ଦର ବେଶ ହୋଇଣ ଚଉସୀ ।
ରହି ଝଟ ପରେ ଶୟନ କରି । ୧୦ ।
ମଳୟ ବାସନା ଶୀତଳ ଘର ।
ଶବ୍ଦ ଶୁଣି ଉଠିଲେ ସତ୍ୱର ।
ଦେଖିଲେ ବେଶ ହୋଇ ଗୋପନାରୀ ।
ବସିଛନ୍ତି ପାଶେ ଗୋପସୁନ୍ଦରୀ ।
ବୋଇଲେ ଭାଗ୍ୟ ମୋର ଆଜ ଦିନ ।
ତୁମ୍ଭଙ୍କୁ ଦେଖିଲି ବେନି ନୟନ ।
ଆଜକୁ ସତର ଦିନ ହୋଇଲା ।
ଛାଡ଼ି କରି କୃଷ୍ଣ ମଥୁରା ଗଲା ।
ଏତେ ଦିନରେ ସଙ୍ଖୋଳିଲେ ମୋତେ ।
ନିର୍ଗୁଣ କରି ଗଲେ ଗୋପୀନାଥେ ।୧୫।
ବଡ ନିଦାରୁଣ ନନ୍ଦ କହ୍ନାଇ ।
ବଡ ପୀରତି କଲେ ନ ରହଇ ।
କେଡ଼େ ସ୍ନେହ କରିଥିଲେ ଯଶୋଦା ।
ଚନ୍ଦ୍ର ପକ୍ଷରେ ଯେଉଁ ଚୂନ ତୋରା ।
କଦମ୍ବ ଯେସନେ ଫୁଲ ଫୁଟିଲେ ।
ତୋଳି ଡେମ୍ଫ ତାର ଛିଣ୍ଡାଇ ଦେଲେ ।
ବାରଣ ନ ଯାଏ ତାହାର ମୂଳ ।
ସେହି ପ୍ରକାରେ ହେଲେ ନନ୍ଦବାଳ ।
ମାଆଙ୍କୁ ଝିଅ ଯେସନେ ସୁନ୍ଦର ।
ଯେତେ ଦୋଷ କଲେ ନ ଘେନେ ତାର
କେତେ କହିବା ଗୋ ତାଙ୍କର ଗୁଣ ।
ହେନେ ଯାହା କଲେ ସେ ନାରାୟଣ ।
ଦୋଲପୂର୍ଣ୍ଣିମୀ ସେ ଦିନ ଅଟଇ ।
ଉଛବ ଆନନ୍ଦ କେ ପାରେ କହି ।
ଦୁଧ ବଢାଣି ସବୁଙ୍କର ଘରେ ।
ଏହି ସମୟରେ ନନ୍ଦ କୁମରେ ।
ପଦ୍ମରେ ବେଳ ହୋଇଅଛୁ ପୁଣ ।
ମୁରଲୀ ଧରି ବାଇଲେ ଆପଣ ।
ଯେତେ ସଙ୍ଗଣିମାନ ଛାଡ଼ିକରି ।
ପଳାଇଲୁଁ ବେଗେ ଗୋପ ଗୁଆଳୀ ।୨୫।

୧୬-୨—ନରହର (ଗ,ଝ) । ୧୭-୧—କେତେ ସ୍ନେହ (ଘ,ଙ,ଝ) । ୧୯-୨—ମୋହନପଦ ହେଲେଣି ନନ୍ଦବାଳ (କ) । ୨୨-୨—କେ ପାରୁ କହି (କ) । ୨୪-୧—ସେ ସମ ସମ୍ପଦ (ଝ) ।

ବୃନ୍ଦାବନେ ଯାଇଁ ହେଲେ ପ୍ରବେଶ ।
ଅମ୍ଭଙ୍କୁ ଦେଖିଣ ସେ ହୃଷୀକେଶ ।
ବୋଇଲେ ଉଚ୍ଛବ ଦିନ ଗୋ ଆଜ ।
ଅଇଲ ଗୋ ତୁମ୍ଭେ ନ ପାଇ ଲାଜ ।
ଯେବେ ଅଇଲ ଗୋ ଅମ୍ଭ ପାଶକୁ ।
ଉଚ୍ଛବ ଯାତ୍ରା କରିବା ମନକୁ ।
ଏତେ ବୋଲି ମନେ ବିଚାର କଲେ ।
ଦିବ୍ୟ ମଣ୍ଡପ ତିଆରିଲେ ଭଲେ ।
ତହିଁରେ ଶୃଙ୍ଗାର ଇନ୍ଦ୍ର ଗୋବିନ୍ଦ ।
ତଳେ ରତ୍ନବେଦୀ କରିଣ ଛନ୍ଦ ।
ତୃଣା ଖମ୍ବ ଦୁଇଗୋଟି ତିଆରି ।
ଦୋଳ ଗୋଟିଏ ତହିଁ ବାନ୍ଧ କରି ।
ନଟବର ବେଶ ହୋଇଣ ପୁଣ ।
ଦୋଳ ଉପରେ ବିଜେ ନାରାୟଣ ।
ରାଧାଙ୍କୁ କୋଳେ ବସାଇଲେ ନେଇ ।
ଲଳିତା ବିଶାଖା ଦେଖିଣ କହି ।
ଦୋଳ ପହଁଡ଼ାଅ ଷୋଳ ନାୟିକା ।
ପୁଣି ବୋଇଲେ ଗୋ ଶୁଣ ଦୂତିକା ।
ଛତି ଚମର ଗୋ ଟେକାଅ ଏବେ ।
ପୂର୍ଣ୍ଣିମାସୀ ଆଜ କାହାଳୀ ଦେବେ ।
ଗୋପୀମାନେ ସର୍ବେ ଖଟିବେ ଜାଣ ।
କଂସାଳ ମର୍ଦ୍ଦଳ ଧରିଣ ପୁଣ ।
ଥୋକେ ଗୋପୀ ହୁଳ ଖେଳରେ ଥିବେ ।
ଥୋକେ ମଣିମା ମଣିମା ଡାକିବେ ।
ଥୋକେ ଫଗୁ ଗୁଣ୍ଡି କରିବେ ବୃଷ୍ଟି ।
ରଙ୍ଗମୟ ଏବେ ଦିଶିବ ସୃଷ୍ଟି ।
ସମସ୍ତଙ୍କ ଦେହ ହୋଇବ ଫଗୁ ।
ଅନ ଏମନ୍ତ ଯାତ୍ରା ହେବ ସରୁ ।
ଶୁଣିଣ ସମସ୍ତେ ହଉ ବୋଇଲୁ ।
ଯାତ୍ରା ହେବ ବୋଲି ଆନନ୍ଦ ହେଲୁଁ ॥
ନାୟିକାମାନେ ଦୋଳ ହଲାଇଲେ ।
ପୂର୍ଣ୍ଣିମାସୀ ବେଗେ କାହାଳୀ ଦେଲେ ।
ଛତି ଚାମର ଟେକା ହେଲା ପୁଣ ।
ଫଗୁ ବସ୍ତ୍ରଟି ହୋଇଲା ଭୂଷଣ ।
କଂସାଳ ମର୍ଦ୍ଦଳ ଶବଦ ଘୋର ।
ଦେଖି ଅଇଲେ ଦେବତା ସକଳ ।
ଗୋରୁବନ୍ଧମାନେ ଶ୍ରବଣ ଡେରି ।
ଗୋପପୁରରେ ପଡ଼ିଲା ହାଲୋଳ ।
ଗୋପରୁ ଗୋପାଳେ ଅଇଲେ ଦେଖି ।
ରାଧିକା କୋଳରୁ ଗଲେ ଉପେକ୍ଷି ।
ନନ୍ଦ ଯଶୋଦା ଅଇଲେକ ପୁଣ ।
ଗୋବିନ୍ଦ ଦେଖିଲେ ଦୋଳ ପରେଣ ।
ସ୍ୱର୍ଗ ସମ୍ପତ୍ତି ସେହିଠାରେ ଗୁଣ୍ଡ ।
ରଙ୍ଗମୟ ଦିଶୁଅଛି ବ୍ରହ୍ମାଣ୍ଡ ।
ଦୋଳଗୋବିନ୍ଦ ଯେ ବୃନ୍ଦାବନରେ ।
ଉଚ୍ଛବ ଯାତ୍ରା ହୋଇଲା ତହିଁରେ ।
ବେଳ ବୁଡ଼ିଲା ସର୍ବେ ଗଲୁଁ ଘର ।
ବସ୍ଥ ବାଳକ ଧେନୁଣ ସଙ୍ଗର ।
ଘଣ୍ଟି ଘାଗୁଡ଼ି ନାନା ସଜ ଧେନୁ ।
ପ୍ରବେଶ ହେଲେ ରାମକୃଷ୍ଣ ବେନ ।
ନଗରେ ମୋ ପୁରେ ପ୍ରବେଶ ହେଲେ ।
ପଲଙ୍କେ ଧେନିଣ ମୋତେ ଶୋଇଲେ ।
ରତି ସୁରତି କଲେ ମନ ଇଚ୍ଛା ।
ମୋହୋର ପୂର୍ଣ୍ଣ କରି ମନବାଞ୍ଛା ।
ପ୍ରଭାତରୁ ଉଠି କେଣିକି ଗଲେ ।
ସେଦିନ ଉଚ୍ଛବ ଏମନ୍ତ କଲେ ।

୩୧-୧—ଖମ୍ବ (ଖ,ଙ) । ୩୭-୨—ଥକିବେ ପୁଣି (ଗ) । ୪୪-୨—ଗୋପପୁରେ ପଡ଼ିଲା ହାଲୋହଳ (ଗ) ।
୪୮-୨—ହୋଇଲେ ସେଠାରେ (ଘ) ।

ଯେତେ ସୁଖମାନ କେଣିକି ଗଲା ।
ମଥୁରା ଯିବାରୁ ପରାଣ ନେଲା ।
ତାହା ଶୁଣି କହେ ଗୋପ-ତରୁଣୀ ।
ଏକଦିନେ ଯାହା ସେ କଲେ ପୁଣି ।
ମୋର ପୁରେ ଯାଇଁ ବିଜୟେ କଲେ ।
କେହି ନାହାନ୍ତି ସେଦିନ ମୋ ଘରେ ।
ହାସ ରସରେ ନାନା ପ୍ରୀତି ହେଲା ।
ରଜନୀ ପାଇଣ ବେଳ ଉଇଁଲା ।
ସେଦିନ ନିଦ୍ରା ଯେ ନେତ୍ରେ ନୋହିଲା ।
ଉଠି କରି ହରି ବନକୁ ଗଲା ।
ସେଦିନ ମନ ମୋ ପୂର୍ଣ୍ଣ ହୋଇଲା ।
ମୋର ସଙ୍ଗ ସେହି ଦିନରୁ ଗଲା ।
କି କହିବି ତାହାଙ୍କର ମୁଁ ଗୁଣ ।
କର୍ମଦୋଷରୁ ଛାଡି ଗଲେ ପୁଣ ।
ତାହା ଶୁଣିଣ ଗୋପୀଏ କହଇ ।
ଦିନେ କୋଳ ବିକା ଅଇଲା ସହି ।
ତାହା ଶୁଣିଣ ମାଯୋଇ ଯାଇଁଲେ ।
ଘରଠାରୁ ଧାନ ଗୁଣ୍ଡଏ ନେଲେ ।
ଗୁଣ୍ଡାକୁଣୀକି ଦେଲେ ନେଇ କରି ।
କୋଳ ଦେଲା ସେହୁ ଖରଧା କରି ।
ଯେତେ କୋଳ ଥିଲା ତାହା ବୋଝରେ
ସବୁ ଦେଲା ନେଇ କୃଷ୍ଣ ହସ୍ତରେ ।
ଦେଖିଣ ସନ୍ତୋଷ ହୋଇଲେ ହରି ।
ବୋଇଲେ ଦାରିଦ୍ର୍ୟ ଯାଉ ତୋହରି ॥
ଯେତେ ଧାନ ଅଛି ତୋହ ବୋଝରେ ।
ସୁବର୍ଣ୍ଣ ହେଲା ଭୁ ଦେଖ ନେତ୍ରରେ ।
ଆଜଠାରୁ ତୋର ଦୁଖ ସରିଲା ।
ଆମ୍ଭର ମନ ସନ୍ତୋଷ ହୋଇଲା ।

ଗୁଣ୍ଡାକୁଣୀ ଦେଖି ତୋଷ ହୋଇଲା ।
ହରଷ ହୋଇ ନିଜ ପୁର ଗଲା ।
ସେ ଦିନୁ ସେକଥା ସମସ୍ତେ ଜାଣି ।
ସେବା କରିଥାଉଁ ସେ ପାଦେ ପୁଣି ।
ଯଉଁ ଦିନୁ ଗୋପେ ହେଲେ ଜନମ ।
ଧନ ସମ୍ପତ୍ତି ସବୁ ଘରେ ପୁଣି ।
ପଲଙ୍କ ସୁପାତି ରତ୍ନ ଗଇଆ ।
ଧାନ ଗୃଣ୍ଡଲ ମଗଇ ନାଳିଆ ।
ଟଙ୍କା ସୁନା କଉଡ଼ି ଯେତେ ଯେତେ ।
ସକଳ ପଦାର୍ଥ ହୋଇଲା ଗୋପେ ।
ଗୋରୁମାନେ ପୁଣି ସୁରତ ହେଲେ ।
ଯେତେ ଦୁହିଁବ ତେତେ ଷୀର ଦେଲେ ।
ଲବଣୀ ଘୃତ ଉପୁଜେ ବହୁତ ।
ସୁଖୀ ହୋଇଲୁଁ ଗୋପେ ଯେତେ ଲୋକ
ନୋହିଲେ କାହାର ବଡ଼ ହୋଇଲେ ।
ବାମ କରରେ ମନ୍ଦର ଧଇଲେ ।
ଦେବତାମାନେ ଡରନ୍ତି କଂସକୁ ।
ବାଳକ ହୋଇ ମାଇଲେ ତାହାକୁ ।
ସେ ହରି ମନରେ ପଡ଼ିଲେ ପୁଣି ।
ଦହିସ୍ୟ ହଉଛି ପରାଣ ଜାଣି ।
କେତେକାଳ ପୁଣ ଦୁଖ ହୋଇବ ।
କାହ୍ନୁକୁ ନ ଦେଖି ପରାଣ ଯିବ ।
ତାହା ଶୁଣି ଚନ୍ଧା ଗୋପିକା କହି ।
କେତେ ଦୁଖ ଦେଲେ ନନ୍ଦ କହାଇଁ ।
ନୂଆ ସମୟେ ବିଦେଶେ ରହିଲେ ।
କେଳିମାନ ସବୁ ପାସୋର କଲେ ।
କୁଞ୍ଜବନ ଦେଖା ଅପୂର୍ବ ପୁଣ ।
ସ୍ୱପନ ହୋଇଲା ମୁରଲୀ ସ୍ୱନ ।

୭୧-୨—ମଳାଇ (ଘ,ଛ) ୭୩-୧—ଗୋରୁମାନେ ସବୁ (ଘ,ଛ)। ୭୯-୨—କେତେ ଦୁଖ (ଙ,ଘ,ଝ)।

ଗୋପ ଦାଣ୍ଡ ନାଟ କେଳିକି ଗଲ୍ଲ ।
ବେଶ ଭୂଷଣ ଅଲଗା ହୋଇଲ୍ଲ ।
ଅଙ୍ଗ ସଙ୍ଗ ଆଉ ନୋହିଲ୍ଲ ପୁଣି ।
ଶୃହିଁ କରି ତନୁ ହୋଇଲ୍ଲ କ୍ଷୀଣ ।
ଲୁଣ ଯେସନେ କଳସିକି ଖାଏ ।
ଆମ୍ଳ ଯେସନେ ସହିଣ ରହେ ।
ଦଧି ଯେସନେ ଘୋଳେ ଯୋଗ୍ୟ ହୋଇ ।
କଦଳୀ ପାଚିଲେ ମିଳାଇ ଯାଇ ॥
ନିଦ୍ରାରେ ଅଚେତ ଯେସନେ ପୁଣ ।
ସପନ ଦେଖିଲେ ନ ରହେ ମନ ।
ତେସନ ପରାୟେ ହୋଇଲୁ ଆମ୍ଭେ ।
ଦିନକ ଯୁଗ ହୋଇଲାଣି ଏବେ ।
ତାହା ଶୁଣି କହେ ବ୍ରଜସୁନ୍ଦରୀ ।
ଦିନେ ମୋ ପୁରକୁ ଅଇଲେ ହରି ।
ମୋର ସଙ୍ଗେ ବସି କଥା ହୋଇଲେ ।
ଉଚିତ ସୁରତି ହସି ବୋଇଲେ ।
ଅଳପ ଦିନ ତୁମ୍ଭ ସଙ୍ଗେ ସଙ୍ଗ ।
ଆମ୍ଭଙ୍କୁ ମନରେ ନୋହିବ ଖଙ୍ଗ । ୯୦ ।
ପଛରେ ଗାଳି ଗୋ ନ ଦେବ କେହି ।
ବହୁତ ଅଳ ତୁମ୍ଭ ସଙ୍ଗେ ହୋଇ ।
ଆମ୍ଭର ଜନମ ଦୁଷ୍ଟ ମାରିବୁ ।
ସନ୍ଥ ଜନଙ୍କୁ ପାଳଣା କରିବୁ ।
ଦେବତା ବ୍ରାହ୍ମଣ କଷ୍ଟ ସାରିବୁ ।
ପୃଥ୍ୱୀ ଭାରକୁ ଉଶ୍ୱାସ କରିବୁ ।
ଏତେ ବୋଲି କୋଳ କରିଣ ନେଲେ ।
ରତି ସୁରତି ନାନା ବନ୍ଧେ ଦେଲେ ।
ବୋଧ କରିଣ କହି କରି ଗଲେ ।
ସେହିଦିନୁ ଦେଖା ନାହାନ୍ତି ମୋରେ ॥
ଏତେ ବୋଲିଣ କହି ତୁନି ହେଲେ ।
ସମସ୍ତେ ରୋଦନ ତହିଁରେ କଲେ ।
ଶୋକ କରିଣ ଯେଝା ଘରେ ଗଲେ ।
ଇନ୍ଦୁରେଖାକୁ କହିଣ ସକଳେ ।
ଇନ୍ଦୁରେଖା ମନେ ବିରସ ହୋଇ ।
ମନରେ ଭାବନ୍ତି ନନ୍ଦ କହ୍ନାଇଁ ।
ତାଙ୍କ ଚରଣେ ମୋର ଚିତ୍ତ ରହେ ।
ଦାସ ଦିନାଇଁ ସେ ପାଦରେ କହେ ।

୯୪-୧—ଏତେ ବୋଲିଣ କୋଳ କରି ନେଲେ (ଝ) ।



# ଷୋଡଶ ଛାନ୍ଦ

ଏଥି ଅନନ୍ତରେ ଅମୂଲ୍ୟ ରସ ।
ପାବଂଶୀ ଅଗେ କହେ ବଣବାସ ।
ବୋଇଲେ ଶୁଣ ଗୋ ଦେବ ଗଉରୀ ।
ପୁଣି ଯାହା କଲେ ଗୋପସୁନ୍ଦରୀ ।
କୃଷ୍ଣ ଯିବାର ସତର ଦିନରେ ।
ସହସ୍ରେ ଗୋପିକା ବିଚାର କଲେ ।
ପୁଞ୍ଜି ପୁଞ୍ଜି ହୋଇ ହେଲେ ବାହାର ।
ଯାଇଁ ମିଳିଲେ ଚନ୍ଦ୍ରରେଖା ପୁର ।
ଦେଖିଲେ ବସିଛି ଦିବ୍ୟସୁନ୍ଦରୀ ।
ସିଂହାସନ ପରେ ଆଉଜା କରି ।
ଶ୍ୟାମ ଗୋବିନ୍ଦ ବୋଲୁଅଛି ତୁଣ୍ଡେ ।
ଫୁଲ ଗଭା ଶୋଭା ଦିଶୁଛି ମୁଣ୍ଡେ ।
ଚିନ୍ତା କରୁଅଛି ଶ୍ରୀହରି ମନ ।
ତାମ୍ବୁଲେ ଭୁଣ୍ଡ ଦିଶେ ରଙ୍ଗବର୍ଣ୍ଣି ।
ମୁଖ ହଲବାରେ ହଲଇ ନୋଥ ।
ବସଣି ଗୁଣା ଶୋଭାପାଏ ସେ ତ ।
କପୋଳେ ସିନ୍ଦୂର ଜନଇ ରବି ।
ଚରଣେ ଅଲତା ନେପୁର ଝଞ୍ଜି ।
କଟୀରେ ପଟନୀ ପିନ୍ଧିଣ ବାମା ।
ମସ୍ତକେ ଅଲକା ଦିଶେ ଉପମା ।
ହସ୍ତରେ ସୁବର୍ଣ୍ଣ କଙ୍କଣ ଶୋହେ ।
କଳା କାଞ୍ଚୁଲି ଗୋ ଜଡ଼ିଛି ଦେହେ ।
ଗୋରୀ ଦେହକୁ ରୂପା ତାଡ଼ ଶୋହେ ।
କୋମଳ ବଚନ ସୁନ୍ଦରୀ କହେ ।
ଅଙ୍ଗୁଷ୍ଠିରେ ମୁଦି ମାଳେ ରତନ ।
ହୀରା ନୀଲା ତହିଁ ବସିଛି ପୁଣ ।
ମୃଗନୟନୀ ରଞ୍ଜନ ନୟନେ ।
ବଦନ ଦିଶଇ ଚନ୍ଦ୍ର ଯେସନେ ।
ତେଜରେ ଅନ୍ଧାର ଆଲୁଅ ହୋଇ ।
ଚନ୍ଦ୍ରାବଳୀ ପ୍ରାୟେ ଦିଶଇ ସେହି ।
ଦେଖି ଗୋପୀମାନେ ଉଲଗ ହେଲେ ।
ସମସ୍ତେ ଯାଇଁ ପାଶରେ ବସିଲେ ।
ବୋଇଲେ ସୁନ୍ଦରି କରିବା କିସ ।
ମଥୁରା ଗଲେ ନ ଆସିଲେ କୃଷ୍ଣ ।
ତାହା ଶୁଣି ଚନ୍ଦ୍ରରେଖା କହିଲେ ।
ସବୁ କଥା ହରି ପାସୋରି ଗଲେ ।
ଯହୁଁଦିନ ଥିଲେ ଆମ୍ଭ ସଙ୍ଗରେ ।
ଗହଳ ହୋଇଥିଲା ଗୋପପୁରେ ।
ମୁରଲୀ ସ୍ୱନରେ ସମସ୍ତେ ବାଇ ।
ରାତ୍ର ଦିବସ ଗୋପରେ ନ ରହି ।
ଏବେ ତ ହେଲା ଭୟ ବୃନ୍ଦାବନ ।
କୃଷ୍ଣ ଯିବାରୁ ଦୁଃଖ ହେଲା ପୁଣ ।
ଦିନେ ମୁଁ ଗଲି ଯମୁନା ଜଳକୁ ।
ଭୟ ଲାଗିଲା ଆସିଲା ବେଳକୁ ।
ବିଚାରିଲି ମନେ ଅରେ ବିଧାତା ।
କି କରିଥିଲେ କାହିଁ ଗଲେ କାହ୍ନା ।
ତରତର ହୋଇ ଅଇଲି ଘର ।
ନୟନରୁ ମୋର ବହିଲା ନୀର ।

୨-୧—ଛଦାହର ଅଛ ଶାହବ ନାହ (କ,ଗ,ଚ)। ୧୨-୨—ସମସ୍ତେ ଯାଇ ପ୍ରବେଶ ହୋଇଲେ (ଘ) ନଦା ବହୁଅଛ ଶାହବ ନାହ (ଙ,ଝ)।

ତାହା ଶୁଣି ଏକ ଗୋପୀ ବୋଇଲା ।
ହୃଦସ୍ଥ ଯେ କଥାମାନ ଦହିଲା ।
ନ ଯାଉ କଷ୍ଟା ରହିଛି ଜୀବନ ।
ଯେବେ ଛାଡ଼ିଗଲେ ପରାଣଧନ ।
ଗୋଷ୍ଠ ଗୋଷ୍ଠକେ କେହ୍ନ ବୁଲାଇବ ।
ରତି ସୁରତରେ ମନ ମୋହିବ ।
ମୟୂର ପ୍ରାୟେ କେ ନାଚିବ ପୁଣି ।
କୋକିଳ ପ୍ରାୟେ କେ କହିବ ବାଣୀ ।
ବେଶ ଭୂଷଣ କେ ଆମ୍ଭଙ୍କୁ ଦେବ ।
ବାଳକ ରୂପ କେ ଯୁବା ହୋଇବ ।
ଲୋଟଣି ଛନ୍ଦେ କେ ବାନ୍ଧିବ ଚୂଳ ।
ଛଳ କେ ନାଚିବ ଆମ୍ଭ ସଙ୍ଗର ।
ମନ କଲେ କେହ୍ନ ଧରିବ ହସ୍ତ ।
ବେଶ କେ କରିବ ଗଲେଣି ସେ ତ ।
ତାହା ଶୁଣି ଆର ଗୋପୀ ବୋଇଲା ।
ଜନନୀ କେମନ୍ତେ ଦେହ ବହିଲା ।
ଆମ୍ଭର ପରାଣ ଯାଉଛି ଛାଡ଼ି ।
କେମନ୍ତେ ନନ୍ଦ ମୁରୁଛିଲେ ହରି ।
ତାହା ଶୁଣି ଆର ଗୋପୀ ବୋଇଲା ।
ହନେ ମୋ ପୁରେ ମାଧୋଇ ମିଳିଲା ।
ବୋଇଲେ ମୋତେ ଗୋ ଶୀତଳ କରି ।
ରତି ସୁରତରେ ତୋଷ ଗୋ ନାରି ।
ମୁଁ ବୋଇଲି ତୁମ୍ଭେ ନାଗରବର ।
କେତେ ଯୁବତୀ ଅଛନ୍ତି ତୁମ୍ଭର ।
ତାହା ଶୁଣି ହସି କୋଳେ ଧଇଲେ ।
ବୋଇଲେ ମନଦୁଃଖ କଷ୍ଟା ମୋରେ ।
ମୁଖେ ଚୁମ୍ବ ଦେଇ ସୁରତି କଲେ ।
ରତି ସାରି କୁଞ୍ଜବନକୁ ଗଲେ ।
ବିଶାଖା ଗୋପାଙ୍ଗଣୀ କହେ ପୁଣି ।
ହନେ ମୋ ପୁରେ ବଜେ କମ୍ବୁପାଣି ।
ଅନ୍ନ ଭୁଞ୍ଜୁଅଛି ବସିଣ ମୁହିଁ ।
ରଜନୀ ପହରେ ଅଛଇ ହୋଇ ।
ବୋଇଲେ ଅଇଲୁଁ ତୁମ୍ଭର ଘର ।
ହଅରଙ୍କୁ ଆଜ ଚରଣ କର ।
ତାହା ଶୁଣି କରି ମୁହିଁ ବୋଇଲି ।
ଦୁଃଖ ଘରେ ରାଜ-କୁଣିଅ ମିଳି ।
ଭାଇ ତ ନାହାନ୍ତି ଘରେ ତୁମ୍ଭର ।
ଦେଠାଇ ଶୋଇଲେ ଗମ୍ଭୀର ଘର ।
ଅନ୍ନ ବ୍ୟଞ୍ଜନ ସରଲାଣି ଆସି ।
କସ ଦେଇଣ ତୁମ୍ଭ ମନ ତୋଷି ।
ବୋଇଲେ ସକଳ ଅଛି ତୁମ୍ଭର ।
ବେନି ଗୋଷ୍ଠ କୁଚ ଅମୃତସାର ।
ଲାବଣ୍ୟ ମୂରତି ଅଟଇ ଦେହ ।
ତୁମ୍ଭଠାରେ ମୋର ବହୁତ ସ୍ନେହ ।
ଏତେ ବୋଲି ମୋତେ ଘରକୁ ନେଲେ
ରତି ସୁରତି ଶେଯ ପରେ କଲେ ।
ମୋ ମନ ତୋଷ କରି ଦେବ ହରି ।
ମୋର ଅଗଣାରେ ସେ ସ୍ନାନ କରି ।
ଝୀନ ପଚନୀ ଆଣି ଦେଲି ମୁହିଁ ।
ପିନ୍ଧି ବସିଲେ ଭୁଞ୍ଜିବାର ପାଇଁ ।
ସର ଲବଣୀ ଛେନା ଦଧି ଦେଲି ।
ଗୋଟିକା ସର ନେଇଁ ପରଶିଲି ।
ଅନ୍ନ ବ୍ୟଞ୍ଜନ ଗୋ ଦେଲି ମୁଁ ନେଇ ।
ଭୋଜନ ସାରିଣ କେଣିକି ଯାଇ ।

୩୪-୨—ମାଧୋଉ ଥଇଲ (ଘ) । ୩୭-୨—ଅଛନ୍ତି ସଙ୍ଗର (ଗ,ଙ) । ୪୬-୨—ମୋର ମନଦୁଃଖ କଷ୍ଟା ବୋଇଲେ (ଚ) । ୪୨-୨—କୁଣିଅ (ଗ,ଚ) । ୪୮-୨—ସ୍ନାହାନ କରି (ଖ,ଘ) ।

ତାହା ଶୁଣି ଚନ୍ଦରେଖା ବୋଇଲା ।
ସମସ୍ତେ ବୃନ୍ଦାବନେ ଥିଲେ ପରା ।
ଯଉଁ ଦିନ ରାଈ ହୋଇଲେ ରାଜା ।
ସମସ୍ତେ ହୋଇଲେ ତାଙ୍କ ପରଜା ।
ବାସୁକି ଆସି ସିଂହାସନ ଦେଲା ।
ବିଶ୍ୱକର୍ମା ଗୃହ ଉପରେ କଲା ।
କୁବେର ଭଣ୍ଡାର ସମର୍ପେ ଆଣି ।
ଇନ୍ଦ୍ର ଚାନ୍ଦୁଆ ଟାଣିଲେକ ପୁଣି ।
ଚାରି ଯୁଗ ଚାରି ଖମ୍ବ ହୋଇଲେ ।
ବେଦବର ଆସି ମର୍ଦ୍ଦଳ ଧରେ ।
କଳା ଧଳା ଛତ୍ର ଚାମର ପୁଣି ।
ଟେକି ଧରିଲେ ଦେବତାଏ ପୁଣି ।
ନାୟିକାମାନେ ଖଟଣି ଖଟନ୍ତି ।
ଗୋପୀମାନେ ସବୁ ଗରବ ହେଲୁଁ ।
ରାଉତ ବେଶ ଗୋଷ୍ଠ ରାଧା ହେଲେ ।
ଶିରରେ ଜରି ପାଗକୁ ବାନ୍ଧିଲେ ।
ମୁକୁଟ ଥୋପି ପାଟ ପରେ ଦେଇ ।
ଇନ୍ଦ୍ର ଫାସିଆ କଣ୍ଠରେ ଖଞ୍ଜାଇ ।
ରତ୍ନ କୁଣ୍ଡଳ ଯେ ଶୋହେ କର୍ଣ୍ଣରେ ।
ପଦକ ହାର ଲମ୍ବଇ ଗଳାରେ ।
ତା' ପରେ ଖଞ୍ଜେ ଚଉସରୀ ନେଇ ।
ଗଳାରେ ଭୂଷଣ ସୁନ୍ଦର ହୋଇ ।
ଦିବ୍ୟ କାଞ୍ଚୁଲା ଯେ ଶରୀରେ ପିନ୍ଧି ।
ଅଙ୍ଗୁଷ୍ଠି ମାନଙ୍କେ ସୁବର୍ଣ୍ଣ ମୁଦି ।
ଗୋଡ଼ ଅଙ୍ଗୁଷ୍ଠିରେ ହସ୍ତେ କଙ୍କଣ ।
କଟିରେ କାଛେଣି ସେ ଶୋଭାବନ ।
ଏମନ୍ତ ବେଶ ହୋଇ ଚନ୍ଦ୍ରାବଳୀ ।
ସିଂହାସନ ପରେ ବିଜୟେ କରି ।

ସେଦିନ କୃଷ୍ଣ ହେଲେ କଟୁଆଳ ।
ବାଳକେ ହୋଇଲେ ଦୂତ କିଙ୍କର ।
ଦାମ ସୁଦାମ ଯେ ମହାମଙ୍ଗଳ ।
ରଥୀ ହୋଇ ରହେ ସିଂହଦୁଆର ।
ବୃନ୍ଦାବତୀ ମନ୍ତ୍ରୀ ଲଳିତା ପାତ୍ର ।
ବିଶାଖା ରଙ୍ଗଦେବୀ ସାଧବ ତ ।
ମଲ୍ଲୀ ମାଳତୀ ଖୁଣ୍ଟିଆ ହୋଇଲେ ।
ସୁଦେବୀ ମରୁଆ ଡାକୁଆ ହେଲେ ।
ଛାମୁ ପଢିଆରୀ ହେଲେ ଦୂତିକା ।
ପୂର୍ଣ୍ଣମାସୀ ଭଣ୍ଡାରରେ ପରୀକ୍ଷା ।
କୁନ୍ଦଲତା ହେଲେ ବଡ଼ଅ ଭାଙ୍ଗି ।
ତୁଙ୍ଗଦେବୀ ପାଣେ ଯେନଣ ଜଗେ ।
ତଳୀ ପରୀକ୍ଷା ଚନ୍ଦ୍ରରେଖା ହେଲେ ।
କାହାଳୀ ଇନ୍ଦୁରେଖା ବଜାଇଲେ ।
ଚାରି ସହସ୍ର ଗୋପୀ ଯାନ୍ତି ପୁଣ ।
ରଥୀ ହୋଇଲେ ଚାରିସସ୍ର ଜାଣ ।
ସିପାଇ ହୋଇଲେ ଦୁଇ ସହସ୍ର ।
ସହସ୍ରେ ନାରୀ ଖଟଣି ବହନ୍ତି ।
ପାଞ୍ଚସସ୍ର ନାରୀ ପରଜା ପୁଣି ।
ପ୍ରେମନ୍ତେ ରାଜା ହେଲେ ଠାକୁରାଣୀ ।
ସ୍ୱର୍ଗ ଦେବତାଏ ପାଶରେ ବସି ।
ଆଜ୍ଞାକାରୀ ହେଲେ ବୈକୁଣ୍ଠବାସୀ ।
ରାଈ ରଜା ବୋଲି ସବେ ବୋଇଲେ ।
ହୁଳହୁଳି ଦେଇ ମଙ୍ଗଳ ଦେଲେ ।
ସେଦିନ କଥା ଗୋ ଦେଖିଛ ଡୋଳେ ।
କେତେ ଉଚ୍ଛବ ଗୋ କୁଞ୍ଜବନରେ ।
କୃଷ୍ଣ କଟୁଆଳ ଛାମୁରେ ଥାନ୍ତି ।
ଯେଣିକି ଦେଖିବ ତେଣିକି ଯାନ୍ତି ।

୭୨-୨ — ଚଉଦା ରତ୍ନେ ହିଙ୍ଗ ଦୁଆରେ (ଗ) ।

ବଡ ମାୟା କଲେ ନନ୍ଦଙ୍କ ପୁଅ ।
ବୃନ୍ଦାବନରେ ସମସ୍ତଙ୍କ ସ୍ନେହ ।
ଦୁଧ ସର ଛେନା ନବାତ ଆଣି ।
ପାଚିଲା କଦଳୀ ପଇଡ ପାଣି ।
ଦିବସ ଲୀଳା ସରିଲା ସେଠାରେ ।
ଭୋଜନ କରାଇ ଛତି ରସରେ ।
ସିଂହାସନ୍ ରାଇ ଉଠିଣ ପୁଣି ।
କୃଷ୍ଣଙ୍କୁ ବୋଇଲେ ନାଗରମଣି ।
ସବୁ ତ ସୁଖ ହୋଇଲା ଆମ୍ଭର ।
ରତି ସୁରତ ଭାବ ବେଳେ କର ।
ସମସ୍ତଙ୍କର ମନ ସ୍ପଷ୍ଟ ହଉ ।
ଏ କଥାମାନ କାଲଯୁଗେ ଥାଉ ।
ସମସ୍ତଙ୍କ ମନ ସନ୍ତୋଷ କର ।
ନିକୁଞ୍ଜ ବନରେ ହୋଉ ବିହାର ।
ବସ୍ତ୍ର ହରଣ ଉଲଗ୍ନ ଯେସନେ ।
ତେସନେକ ହେବ ନିକୁଞ୍ଜ ବନେ ।
ବାସ ଜଳରେ ନୋହିଲାକ ରସ ।
ଅଜ ତ ହୋଇଛି ବୈଶାଖ ମାସ ।
ଚନ୍ଦନ କେଳି ଅଜ କରାଇବ ।
ଦିବସ ପରମ ଶୀତଳ ହେବ ।
ମୋତେ ତୁମ୍ଭେ ଦେବ ସବୁର ସଙ୍ଗ ।
ଏହା ଶୁଣି ନବ ନାଗର ବେଗ ।

ଗୋପୀ ଗୋଷ୍ଠକେ ଗୋବିନ୍ଦ ଗୋଷ୍ଠଏ ।
ଏ ମନ୍ତ୍ର ରୂପେ ହେଲେ ଦେବରାୟେ ।
ସମସ୍ତଙ୍କ ପାଇଁ ଚନ୍ଦନ କୁଣ୍ଡ ।
ଯେତ୍ଥା କେଳି ପରେ ହୋଇଲେ ଗୁଣ୍ଡ ।
ଷୋଲ ସହ୍ର ଘର ଭୁରତେ କରି ।
ସମସ୍ତଙ୍କ ପୁରେ ବଜେକ ହରି ।
ଚନ୍ଦନ କୁଣ୍ଡେ ଅମ୍ଭ ସଙ୍ଗ ପୁଣ ।
ଗୋଷ୍ଠ ଗୋଷ୍ଠକରେ କ୍ରୀଡା ଯେ ପୁଣ ।
ରାଇ ସଙ୍ଗରେ ମଦନମୋହନ ।
ଚନ୍ଦ୍ରାବଳୀ ହସ୍ତ ଧରଣ ପୁଣ ।
ସମସ୍ତଙ୍କ କେଳି ଦେଖିଲେ ଯାଇଁ ।
ଦେଖିଣ ଶ୍ରୀମତୀ ସନ୍ତୋଷ ହୋଇ ।
ରତି ସୁରତି ଗୋବିନ୍ଦ ସଙ୍ଗରେ ।
ରଜନୀ ଶେଷେ ଗଲୁଁ ଯେତ୍ଥା ଘରେ ।
ତହୁଁ ତିନ ମାସ ପନର ଦିନେ ।
ମଥୁରା ଗଲେ ଛାଡ଼ି ନନ୍ଦନାନେ ।
ଗୋପରେ ରହିଲେ ଅଷ୍ଟ ବରଷ ।
ରତି ସୁରତରେ ସମସ୍ତେ ତୋଷ ।
ତିନ ଦିନଠାରୁ ଲୀଳା ହୋଇଲା ।
ଏତେ ଦିନେ ହରି ମଥୁରା ଗଲା ।
ଶୁଣି ଭଗବନ୍ତ ସନ୍ତୋଷ ହେଲେ ।
ଦାସ ଦନାଇ ସେ ପାଦେ ସେବିଲେ ।

୮୧-୨—ପଡତ ପୁଣି (ଘ,ଚ,ଛ,ଜ) । ୮୭-୨—(ଖ,ଗ,ଚ,ଛ,ଝ)ରେ ନାହିଁ, (ଜ) ପାଠ ଗୃହୀତ ହେଲା (ଖ) ପୋଥିରେ ଗୋପୀମାନଙ୍କୁ କରିବ ତେସନେ, (ଘ) ପୋଥିରେ ଷୋହମତ ଲୀଳା ହେଉ ଏ ସ୍ଥାନେ କାଳ୍ପନିକ ପରି ବୋଧ ହେଉଅଛି ।



# ସପ୍ତଦଶ ଛାନ୍ଦ

ଏଥୁ ଅନନ୍ତରେ ଭଗବତୀ କହି ।
ପୁଣି କସ କଲେ ଗୋପର ଗୋଇ । ୧ ।
ଗୋବିନ୍ଦଙ୍କୁ କେତେ ଦିନେ ଦେଖିଲେ ।
ଏ କଥା ମୋତେ କହି ଦେବ ହିରେ ।
ବିରହ କେମନ୍ତେ ଶାନ୍ତ ହୋଇଲା ।
ରାଧା ଠାକୁରାଣୀ କେମନ୍ତ କଲା ।
ଷୋଳ ନାୟିକା ବୃନ୍ଦାବତୀ ପୁଣି ।
ପୂର୍ଣ୍ଣମାସୀ ସଙ୍ଗେ ଦୂତୀ କାମିନୀ ।
ଷୋଳସହସ୍ର ଗୋ ବ୍ରଜସୁନ୍ଦରୀ ।
କେମନ୍ତ କଲେ କହ ତ୍ରିପୁରାରି । ୫ ।
ପ୍ରିୟବତୀଠାରୁ ଶୁଣିଣ ହର ।
ବୋଇଲେ ଗୋପୀ ବିରହେ ବିକଳ ।
ରାତ୍ର ଦିବସରେ ଚନ୍ଦ୍ରା ସବୁର ।
ଶ୍ରୀକୃଷ୍ଣ କଥା ମନେ ଗୁଣି କରି ।
ଏକ ଦିନକରେ ସକଳ ଗୋଇ ।
ନାୟିକାମାନଙ୍କ ସଙ୍ଗରେ ଯାଇଁ ।
ରାଧାଙ୍କୁ ଦେଖିବା ପାଇଁ ବିକଳ ।
ଚନ୍ଦ୍ରଶାଳା ପୁରେ ମିଳି ସକଳ ।
ଦେଖିଲେ ବସିଛନ୍ତି ଠାକୁରାଣୀ ।
ଶ୍ରୀମୁଖଙ୍କୁ ପୋଛି ଜଳକୁ ପୁଣି । ୧୦ ।
ଗହଳ ଦେଖିଣ ଚନ୍ଦ୍ରବଦନୀ ।
ବସିବା ଠାବରୁ ଉଠିଲେ ପୁଣି ।
ବୋଇଲେ ଆଜ ତ ଭାଗ୍ୟ ଦିଶିଲା ।
କୃଷ୍ଣ କି ଗୋପପୁରକୁ ଆସିଲା ।
ନୋହିଲେ କିସ ବାରତା ଶୁଣିଲ ।
ମୋହୋର ଆଗେ ତ କହି ଆଇଲ ।
ଲଳିତା ବୋଇଲେ ନୋହେ ଏମନ୍ତ ।
ଚନ୍ଦ୍ରାରେ ମରିବା ଗୋପୀ ସମସ୍ତ ।
ସତର ଦିନ ଗୋ ହୋଇଲା ଜାଣ ।
ନନ୍ଦ କହ୍ନାଇଁ ଉପେକ୍ଷିଲେ ପୁଣ । ୧୫ ।
ବସିଣ ଦିନ ନ ସରଇ ଏବେ ।
ତୁମ୍ଭଙ୍କୁ କହିଣ ଅଇଲୁଁ ସବେ ।
ପୂର୍ବ ଦିନ ପ୍ରାୟେ ଯମୁନା ଯିବା ।
ଯମୁନା କୂଳେ ମେଳ ସବେ ହେବା ।
ବଂଶୀବଟକୁ କରିବା ଦର୍ଶନ ।
କ୍ରୀଡ଼ା ଥାନମାନ ଦେଖିବା ପୁଣ ।
ଗୋବିନ୍ଦ ପାଦପଦ୍ମରେ ସେବିବା ।
ଚରଣ ଧୂଳି ଅଙ୍ଗରେ ବୋଳିବା ।
ବିରହ ବଡ଼ ହୋଇଲାକ ପୁଣ ।
ମଦନ ପ୍ରହାର କରଇ ଜାଣ । ୨୦ ।
ତୁମ୍ଭେ ତ ଅଛ ଗୋପପୁର ଶିରୀ ।
ତୁମ୍ଭ ସକାଶୁଁ ସକଳ ଗୁଆଳୀ ।
ତୁମ୍ଭେ ଗୋ ଆମ୍ଭଙ୍କୁ ସମ୍ଭାଳ କର ।
ବୃନ୍ଦାବନେ ଯେବେ ଆମ୍ଭଙ୍କୁ ଫେର ।
ତୁମ୍ଭଠାରେ ଅଛି ବହୁତ କାର୍ଯ୍ୟ ।
ବନସ୍ତ ବୁଲିବା କର ଧଇର୍ଯ୍ୟ ।
ଶୁଣିଣ ରାଧିକା ବୋଇଲେ ହସି ।
ସ୍ତିରୀ ପୁରୁଷ ଗୋ ନୋହଇ ସଖି ।

୨-୧ — ଦିନେ ରହିଲେ (ଗ) । ୨୦-୨—ମଦନ ପ୍ରହାର କରିବ ପୁଣ (ଘ) ।

ରଭ ସ୍ୱରଭ ମୁଁ ଲୋଡ଼ଇ ପୁଣ ।
କେମନ୍ତେ ତୋଷ ମୁଁ କରବ ପୁଣ ।
ତାହା ଶୁଣି କର ବଶାଖା କହ ।
କୃଷ୍ଣଠାରୁ ବଂଶୀ ରଖିଲ ସହ ।
ସେ ମୁରଲୀ ଗୋଷ୍ଠ ବଜାଅ ଏବେ ।
ଶାନ୍ତ କରଅ ମୁରଲୀ ଶବଦେ ।
ରାଧିକା ବୋଇଲେ କୋଇଲ ବାଇ ।
କଉଁଠାରେ ବଂଶୀ ସ୍ତିରି ବଜାଇ ।
ମନ୍ଥୀ ବୋଇଲା ଷଟ୍ପଦ୍ ଭ୍ରମର ।
ବଂଶୀ ଛଡ଼ାଇ ରଖିଲ ନାଗର ।
ବଂଶୀ ନ ଦେବାରୁ କୃଷ୍ଣ କରାଶ ।
ଛାଡ଼ି କରି ଗଲେ ମଥୁରା ଦେଶ ।
ଆନ ବୋଇଲା ଗୋପୀ ମନ୍ଦ କଲେ ।
ମୁରଲୀ ନେଇ ମୋତେ ଘଉଡ଼ିଲେ ।
ତାହା ଶୁଣିଣ ଚନ୍ଦ୍ରାବଳୀ କହି ।
ଜ୍ଞାନ ଗୋଚର ଗୋ ଭ୍ରମର ନାହିଁ ।
ମାଇଲେ ବୋଇଲେ ପାଶରୁ ପୁଣ ।
ଖଣେ ଅନ୍ତର ନୋହେ ନନ୍ଦନାନ ।
ଗୋପରେ କେତେ ଦଣ୍ଡ ବସିଥାଇ ।
ମୋର ପୁରେ ନତ୍ୟେ ନନ୍ଦ କହ୍ନାଇଁ ।
ବହାର କରନ୍ତି କେତେ ରୂପରେ ।
ବହୁତ ମାୟା ଜାଣନ୍ତି ନାଗରେ ।
ତାହା ଶୁଣି କର ମାଳତୀ କହେ ।
ଆମ୍ଭଙ୍କୁ ଯେନ ଭୁଲିଲ ତୁମ୍ଭେହେଁ ।
ମନ ଆମ୍ଭର ସନ୍ତୋଷ ହୋଇବ ।
ହନ ସରବ ବରହ ନୋହିବ ।
ଠାକୁର ଗଲେ ଠାକୁରାଣୀ ଅଛ ।
ତୁମ୍ଭଙ୍କୁ ଆମ୍ଭେ କରଅଛୁ ଆଶ ।
ସମସ୍ତଙ୍କଠାରୁ ଏମନ୍ତ ଶୁଣି ।
ସନ୍ତୋଷ ହେଲେ ଚନ୍ଦ୍ରାବଳୀ ପୁଣି ।
ବୋଇଲେ କାଲି ଯିବା ଯମୁନାକୁ ।
ଦର୍ଶନ କରବା ବଂଶୀବଟକୁ ।
ତୁମ୍ଭେ ସମସ୍ତେ ସେଠାରେ ମିଳବ ।
ସ୍ନାନ କର ବାଲୁଙ୍କା ପୂଜବ ।
ନବଗ୍ରହ ଗନ୍ଧ ହଳଦ ଘେନ ।
ପ୍ରବେଶ ହୋଇବ ସବୁ କାମିନୀ ।
ଗୋପେଶ୍ୱରଙ୍କୁ ଦର୍ଶନ କରବା ।
ଦୁଖ ଜଣାଇ ଘରକୁ ଆସିବା ।
ଯେତେ କହ ରାଧା ହୋଇଲେ ତୁନ ।
ଦୂତକା ବୋଇଲା ଶୁଣ ମିତଣି ।
ଯେ ଯାହା ପୁରକୁ ଚଳ ବଦନ ।
ଶୁଣିଣ ଗଲେ ଯେ ଯାହାରେ ପୁଣ ॥
ଆଡ଼ନ୍ତି କରଣ ଭୋଜନ ସାର ।
ରଜନୀ ପ୍ରଭାତେ ସମସ୍ତେ ଚଳ ।
ଯାଇ ଯମୁନା ବଂଶୀ ବଟ ମୂଳେ ।
ମେଳ ହୋଇଣ ଯମୁନାର ଜଳେ ।
ତହିଁ ସ୍ନାନ ସାର ଗୋପନାରୀ ।
ପୂଜା କଲେ ବାଲୁଙ୍କା ଥାପି କର ।
ମନେ ମନାସିଣ ବର ମାଗନ୍ତି ।
ବେଗେ କୃଷ୍ଣଙ୍କୁ ଦଅ ଆଣି ଏଥି ।
ଏବେ ଗଉରୀକାନ୍ତ ରକ୍ଷା କର ।
ଗନ୍ଧ ଚନ୍ଦନ ପୁଷ୍ପ ଦେଲେ ଶିର ।
ତାକୁ କହଣ ଗୋପର ସ୍ୱନ୍ଦରୀ ।
ଗୋପେଶ୍ୱରଙ୍କ ଠାରେ ଯାଇଁ ମିଳ ।
ରାଧା ଦୂତକା ପୂର୍ଣ୍ଣମାସୀ ସଙ୍ଗେ ।
ଷୋଳସହସ୍ର ଗୋପୀ ଯେତ୍ଥା ଭାବେ ।
ଦୁଖ ଜଣାଇ କହଲେ ତାହାଙ୍କୁ ।
ମଥୁରାରୁ ଆଣି ଦଅ କୃଷ୍ଣଙ୍କୁ ।

ଚକ୍ଷା ବେଲପନୀ ନେଇ ଭଡ଼ାଇ ।
ଆମ୍ଭ ଜଣାଣ ଯେନ ଉମାସାଇଁ ।
କେନ୍ତୁ ବୋଲନ୍ତି ଶୁଣ ହେ ଈଶ୍ୱର ।
ବେଗେ ଆଣି ଦିଅ ନନ୍ଦନାଗର ।୫୫।
କେନ୍ତୁ ବୋଲନ୍ତି ଶୁଣ ହେ ଈଶାନ ।
କକ୍ଷା କୃଷ୍ଣଙ୍କୁ କରାଇଲ ଭିନ୍ନ ।
ତୁମ୍ଭେ ଥାଉଁ ଥାଉଁ ହେବ ଶଙ୍କର ।
ନନ୍ଦପୁଅ କକ୍ଷା ହେଲେ ଅନ୍ତର ।
ଆଗେ ଦେଇଣ ଯେ ପଛେ ହରିଲ ।
ଆମ୍ଭମାନଙ୍କୁ ଅନାଥ କରିଲ ।
ତାହା ଶୁଣିଣ ଗୋଷ୍ଠଏ ବୋଇଲେ ।
କୃଷ୍ଣ ଗଲାରୁ ଦିନ ନ ସରିଲା ।
ଏବେ କେମନ୍ତେ ମାଧୋଇ ଅସିବେ ।
ଆମ୍ଭ ବିରହ ଦୁଃଖକୁ ନାଶିବେ ।୬୦।
ଗୋପେ ଗୋବିନ୍ଦ ହୋଇବେ ପ୍ରବେଶ ।
ଏହି ବର ଦିଅ ଦେବ ମହେଶ ।
ତୁମ୍ଭେ ଅକର୍ମ କର୍ମ ଯେ ଦାୟକ ।
ଆମ୍ଭ ଜଣାଣ ଯେନ ଈଶାନଙ୍କ ।
ଯେବେ ହରି ଗୋପକୁ ନ ଆସିବେ ।
ଗୋପେ ଗୋପୀ ଥାଇ କିସ କରିବେ ।
ପୁଣି ଲଳିତା କରଇ ଜଣାଣ ।
ଛେନା ଦୁଧ ସର ଯେବେ ଭୋଜନ ।
ଦେବ ନନ୍ଦସୁତକୁ ଭେଟ କର ।
ସବୁ ଦିନେ କଥା ରହୁ ତୁମ୍ଭର ।୬୫।
ଏତେ ବୋଲିଣ ପାଏ ପଡ଼ି ଶୋଇ ।
ଉଠି କର ଯୋଡ଼ିଣ ଉଭା ହୋଇ ।
ତହୁଁ ରଙ୍ଗଦେବୀ ବୋଲେ ବଚନ ।
କେଣେ ଗଲେ ଆମ୍ଭ କଳାବଦନ ।

କେତେ ନିଷ୍ଠୁର ଅଟ ଉମାପତି ।
ତୁମ୍ଭ ସୁଖ ନ ତୁମ୍ଭଙ୍କୁ ବୁଝୁଛି ।
ତୁମ୍ଭେ ପାର୍ବତୀଙ୍କୁ ଯେନ କୋଳରେ ।
ଥିଲ ନୋହ ହେ କେଉଁଣି ବେଳରେ ।
ଯେନ ବୃଷଭ ପିଠିରେ ଭ୍ରମଣ ।
ଅମ୍ଭେ ପାଇଣ କିପାଁ ହେଲୁ ଭିନ୍ନ ।୭୦।
ତୁମ୍ଭ କଥା ସୁଖ ହୋଏ ତୁମ୍ଭଙ୍କୁ ।
ଆମ୍ଭ ସେବା ଗଲା କହୁଁ ଅଡ଼ାକୁ ।
ତୁମ୍ଭେ ସ୍ତନଗ୍ର ଦେଖି ଲୋଭ କଲ ।
କୋଳ କରିଣ ହିନ କାଳ ନେଲ ।
ଅମ୍ଭେ ପ୍ରଥମ ବୟସରେ ପୁଣ ।
ପତି କହେଦେ ଯାହା ହରି ଜାଣ ।
ଛାଡି କରି ଗଲେ ନନ୍ଦ ସୋଦର ।
ତୁମ୍ଭେ କିପାଁ ଅଛ ବୃନ୍ଦାବନର ।
ତାହା ଶୁଣିଣ ସୁଦେବୀ ବୋଇଲା ।
ଯାଙ୍କ ଦେହ ଗୋ ଦେଖି ନ ସହିଲା ।
ସେ ଯେ ମୁରଲୀ ଧରିଣ ହସ୍ତରେ ।
ଯେତେବେଳେ ବଜାନ୍ତି ଧୀରେ ଧୀରେ ।
ବୃନ୍ଦାବନ ଯାକ ସବୁ କମ୍ପଇ ।
ଯାଙ୍କ ଶ୍ରୁପତି ପୀରଛି ଲାଗଇ ।
ତେଣୁ ବିମନ ହୋଇଲେ ମନରେ ।
କୃଷ୍ଣ ମେଲାଣି ହେଲେ ମଥୁପୁରେ ।
 କୁନ୍ଦଲତା ବୋଇଲା ହସି କରି ।
କଥା ନ କହ କିପାଁ ତ୍ରିପୁରାରି ।
ଅମ୍ଭେ ବିରହ ଜାଲାରେ ମରୁଛୁ ।
ନିଜ କୁଳକୁ ତେଜ୍ୟା କରି ଅଛୁ ।୮୦।
ତୁମ୍ଭେ କକ୍ଷା ଆମ୍ଭଠାରେ ବିମନା ।
ଆମ୍ଭ ତୁମ୍ଭର ସବୁଦିନେ ସିନା ।

୬୮-୧—ଋମାପଠ (କ,ଘ,ଚ,ଛ,ଜ) । ୭୦-୨—ଅମ୍ଭେ ପ୍ରାଣଠ କ୍ଷମା ହେଲୁଁ ଭନ୍ଧ (ଚ) ।

ତୁମ୍ଭେ ସରୁଦିନେ ଗୋପେ ଠାକୁର ।
ଆମ୍ଭମାନଙ୍କ ଦୁଃଖ ଏବେ ହର ।
ଆମ୍ଭେ ସର ଲବଣୀ ଭୁଞ୍ଜାଇବୁଁ ।
ଦୁଧ ଆଣିଣ ଶିରରେ ଢାଳିବୁଁ ।
କନ୍ଦ ନବାତ ସଙ୍ଗରେ କଦଳୀ ।
ପେଡ଼ା ପରଡ଼୍ର ଗୁଡ଼ ଦେବୁଁ ଆଣି ।
ପ୍ରତିଦିନ ସେବା କରିଣ ଥିବୁଁ ।
ଯେବେ ଯଶୋଦା ପୁତ୍ରକୁ ପାଇବୁଁ ॥
ତାହା ଶୁଣି ଭୃଙ୍ଗବିଦ୍ୟା ବୋଇଲା ।
ମହାଦେବହିଁ ପଥର ହୋଇଲା ।
ରାମ ଗୋବିନ୍ଦ ଥିଲା ଦିନେ ପୁଣ ।
ଯାହା ଜଣାଇଲେ କହେ ବଚନ ।
ଏବେ କହିଲେ ନ ଶୁଣେ କାହିଁକି ।
ଆମ୍ଭ କରମ ମନ୍ଦ ତ ଏଣିକି ।
ଆମ୍ଭେ ବିରହ ହେବାରୁ ତରୁଣୀ ।
କାଲ ହୋଇଲେ ଗୋପେଶ୍ୱର ପୁଣି ।
ତାହା ଶୁଣିଣ ଗୋପିକା ବୋଇଲା ।
ଆମ୍ଭେ ମଲେ ତାଙ୍କର କିସ ଗଲା ।୯୦।
ଯେବେ ସ୍ତ୍ରୀ-ହତ୍ୟାକୁ ଭୟ ଥାନ୍ତା ।
କୃଷ୍ଣ ଗୋବିନ୍ଦ ଆମ୍ଭଙ୍କୁ ଭେଟନ୍ତା ।
ଏ ଗୋ ସମସ୍ତ ଦେବତା ବିଗ୍ରହ ।
କଂସ ଅଟଇ ସବୁର ବଇରୀ ।
ତାଙ୍କୁ ମାରିବାକୁ ସର୍ବେ ପାଞ୍ଚିଲେ ।
ରାମ କୃଷ୍ଣଙ୍କୁ ଏଥୁ ଘେନି ଗଲେ ।
ଆମ୍ଭମାନଙ୍କୁ ଦୁଃଖ ଦେଇ ପୁଣ ।
ସୁଖ ଲଭିଲେ ସ୍ୱର୍ଗ-ବାସୀ ଜାଣ ।
ତାହା ଶୁଣିଣ ରାଧିକା ବୋଇଲେ ।
କୃଷ୍ଣ ଯାଇ ମଥୁରାରେ ରହିଲେ । ୯୫ ।
ଦୁଇ ଦିନାର ପାଞ୍ଚଣ ଗୃହିଣି ।
ଏତେ ଦିନ ଗୋପରେ ହିଶ ଆସି ।
ଆମ୍ଭ ସଙ୍ଗରେ ପୀରତି ଯେ କଲେ ।
ଭୋଗ ମଉଜ ଦିନେ ଛାଡ଼ି ଗଲେ ।
ଗୋପେଶ୍ୱରଙ୍କୁ ବୋଇଲେ ରାଧିକା ।
ତୁମ୍ଭେ କପାଁଇ ହୋଇଛ ତାଟକା ।
ତାହିଁ ଗୋପେଶ୍ୱର କହେ ବଚନ ।
ତୁମ୍ଭେ ବିରହ କିମ୍ପା ହୁଅ ପୁଣ ।
ସେ ତ ନନ୍ଦପୁଅ କଥା ସବୁର ।
ତୁମ୍ଭେ ବୋଲ ଯେ ଆମ୍ଭର ଆମ୍ଭର ॥
କେତେଦିନ ମଥୁରାରେ ରହିବେ ।
ଜରାସନ୍ଧ ଭୟରେ ପଳାଇବେ ।
ପୁଣି କୁଶସ୍ଥଳୀ ହେବ ରାଧିକା ।
ଅଷ୍ଟ ବରଷ ନାହିଁ ତୁମ୍ଭ ଦେଖା ।
ଏବେ ଅବନ୍ତୀ ନଗର ଯାଉଛି ।
ବିଦ୍ୟା ସାନ୍ଦୀପନି ଘରେ ପଢୁଛି ।
ପୁଣି ଅଲପ ଦିନରେ ଆସିଣ ।
ମଥୁରାରୁ ଭେଟିବେ ଦୃଢ ଜାଣ ।
ସେ ଗୋ ମନରେ ତୁମ୍ଭଙ୍କୁ ଭାବନା ।
ତୁମ୍ଭେ ଧଇର୍ଯ୍ୟ ହୁଅ ଗୋପାଙ୍ଗନା ॥
ତୁମ୍ଭେ ବାଲୁକା ପୂଜା ନିତି କର ।
ଗନ୍ଧ ଚନ୍ଦନ ପୁଷ୍ପ ଦେଇ ଶିର ।
ନିତି ଯମୁନା ଜଳେ ସ୍ନାନ କର ।
ସୂର୍ଯ୍ୟ ବନ୍ଦାଣ କର ଗୋ ସୁନ୍ଦର ।
ଗୋପୀ ଘେନିଣ ଏ ବନେ ବିହର ।
ରାଜା କରି ଯାଉଛି ଚକ୍ରଧର ।
ଶିରେ ଧବଳ ଛତ୍ରଏ ଟେକାଇ ।
ବୃନ୍ଦାବନରେ ବିହର ଗୋ ରାଇ ।

୮୪-୨—ପେଡ଼ା ବଡ଼ (କ,ଚ,ଛ) ।

ତେବେ ପ୍ରସନ୍ନ ହୋଇବେ କହ୍ନାଇ ।
ଭୋଗ କରିବ ଦ୍ୱାରକାରେ ଯାଇଁ ॥
ଯେବେ ଚିନ୍ତା କରିଣ ନ ଭଜିବ ।
ତେବେ କାରଣ କିଛି ନ ପାଇବ ।
ଏତେ ବୋଲିଣ ଗୋପେଶ୍ୱର ପୁଣ ।
ନିଜ ମନ୍ଦିରୁ ଛଡ଼ାଏ ଆଣିଣ ।
ଲଳିତାର ମୂଳରେ ଦେଲେ ନେଇ ।
ରାଧା ଛାମୁରେ ଟେକିଥିବୁ ତୁହି ।
ହୃଦି ମଣିମା ମଣିମା ଡ଼ାକିବ ।
ରଙ୍ଗଦେବୀ ବିଞ୍ଚଣୀରେ ବିଞ୍ଚିବ ।
ମଲ୍ଲୀ ମାଳତୀ ହେବେ ପଡିହାରୀ ।
ପାତ୍ର ହୋଇବେ ପୂର୍ଣ୍ଣମାସୀ ନାରୀ ।୧୧୯
ବୃନ୍ଦାବନ ସିଂହାସନ ଉପରେ ।
ବିଜେ କରିବ ପ୍ରଭୁ ଯେ ଦିନରେ ।
ଆଜଠାରୁ ଦିନେ ଶୂନ୍ୟ ନୋହିବ ।
ମୋତେ କହି କରି ଗଲେ ମାଧବ ।
ତାହା ଶୁଣି ରାଧା ତୋଷ ହୋଇଲେ ।
ଶିରେ ଧବଳ ଛତ୍ର ଟେକାଇଲେ ।
ଗୋପେଶ୍ୱରଙ୍କୁ ଦରଶନ କରି ।
ନିଜ ପୁରକୁ ଚଳିଲେ ସୁନ୍ଦରୀ ।
ଡାକ ମଣିମା ଶବଦ ହୋଉଛି ।
ଆଗ ପଛେ ଗୋପୀ ଯାଉଅଛନ୍ତି ।୧୨୦।
ରାଧା ଚନ୍ଦ୍ରଶାଳା-ପୁରେ ପ୍ରବେଶ ।
ଗୋପେ ଦେଖିଣ ସମସ୍ତେ ହରଷ ।
ରାଈ ରାଉତ ବେଶ ଉଲ୍ଲଗିଲେ ।
ସଙ୍ଗ ଗୋପୀଏ ମେଲାଣି ହୋଇଲେ ।
ଯାଇଁ ଯେଝା ଘରେ ହେଲେ ପ୍ରବେଶ ।
ରାଈ ରହେ ଚନ୍ଦ୍ରସେଣା ଉଆସ ।
ଶାଶୁ ନଣନ୍ଦ ଦେଖି ଚମତ୍କାର ।
ଦାସ ହନାଇ ସେବେ ନିରନ୍ତର ।



# ଅଷ୍ଟାଦଶ ଛାନ୍ଦ

---

ପାର୍ବତୀ ବୋଲନ୍ତି ଶୁଣ ଈଶ୍ୱର ।
ଗୋପୀମାନଙ୍କର କହ ବସ୍ତ୍ରହର ।
ପୁଣି କସ କଲେ ଗୋପସୁନ୍ଦରୀ ।
ସଂକ୍ଷେପେ କହିବ ତ୍ରିଶୂଳଧାରୀ ।
ଶୁଣି ନୀଳକଣ୍ଠ ସନ୍ତୋଷ ହେଲେ ।
ଗୋପୀମାନଙ୍କ କଥା ଶୁଣାଇଲେ ।
ବୋଇଲେ ଶୁଣ ଗୋ ଦକ୍ଷନନ୍ଦନ ।
ଯାହା କଲେ ପୁଣି ବ୍ରଜକାମିନୀ ।
ଅରନ୍ଧନ ନବମୀ ଘଡ଼ିଏ ଅଛି ।
ରାଧିକା ପୁରରେ ସମସ୍ତ ଗୋପୀ ।୫।
ରାଧାଙ୍କୁ ଦେଖି ଦରଶନ କଲେ ।
ଯମୁନା ଯିବା ବୋଲିଣ ବୋଇଲେ ।
ଦାସୀ ଗଣେ ସଙ୍ଗେ ଚଳିଲେ ପୁଣ ।
ଆଗରେ ଗୋପ ଯେ ସୁନ୍ଦରୀ ଜାଣ ।
ପଛରେ ଅଛନ୍ତି ଷୋଳ ନାୟିକା ।
ମଧ୍ୟେ ବୃନ୍ଦାବତୀ ସଙ୍ଗ ଦୂତିକା ।
ରାଧିକା ସଙ୍ଗେ ପୂର୍ଣ୍ଣିମାସୀ ଜାଣ ।
ଏମନ୍ତେ ଚଳିଲେ ଯମୁନା ପୁଣ ।
ପ୍ରବେଶ ହେଲେ ରାଧିକା ଘାଟରେ ।
ସ୍ନାହାନ କଲେ ଯମୁନା ଜଳରେ ।୧୦।
ଓଦା ବସନରେ ଗୋପସୁନ୍ଦରୀ ।
ବାଲୁକା ପୂଜା ଗୋ ସମସ୍ତେ କରି ।
ବୁଡ଼ି ଯମୁନାରୁ ଆଣିଣ ବାଲି ।
ଦର୍ଶ କରି ତାଙ୍କୁ ପୂଜନ୍ତି ବାଳୀ ।
ଗନ୍ଧ ଚନ୍ଦନ ଅଗର ଦେଇଣ ।
ସିନ୍ଦୂର ଫୁଲ ନାନା ବର୍ଣ୍ଣେ ପୁଣ ।
ଦେଇଣ ବାଲୁକା ପୂଜା ସାରିଲେ ।
କୃଷ୍ଣଙ୍କୁ ବେଗେ ଦଅ ବୋଲି ବୋଲେ ।
ସେଠାରୁ ଉଠିଣ ସକଳ ଗୋଇ ।
ସୂର୍ଯ୍ୟଙ୍କୁ ଦର୍ଶନ କରନ୍ତି ଯାଇ ।
ହରିଦ୍ରା ତଣ୍ଡୁଳ ଦୂବ ଘେନିଣ ।
ନାନା ରଙ୍ଗ ପୁଷ୍ପ ତା ସଙ୍ଗେ ଜାଣ ।
ହୁଳହୁଳି ଦେଇ ବ୍ରଜସୁନ୍ଦରୀ ।
ବୋଇଲେ ଶୁଣ ଛାୟା ମନୋହାରୀ ।।
କୃଷ୍ଣଙ୍କୁ ଦେଲେ ସେଠାରୁ ଚଳିବ ।
ନୋହିଲେ ସେହିଠାରେ ରହିଥିବ ।
କେ ବୋଲେ ସବୁ କଥା ତୁମ୍ଭେ ଜାଣ ।
ଶୂନ୍ୟରେ ଯେଣୁ କରୁଛ ଗମନ ।
ଆମ୍ଭେ ଗୋପନାରୀ ନିରେଖ ହେଲୁଁ ।
କୃଷ୍ଣ ଛଡ଼ିବାରୁ ଝୁରିଣ ମଲୁଁ ।୨୦।
କେ ବୋଲଇ ତୁମ୍ଭେ କହିବ ସତ ।
କେତେ ଦିନରେ ଆସିବେ ଅଚ୍ୟୁତ ।
ଆମ୍ଭଙ୍କୁ ଘେନି ବିହାର କରିବେ ।
ରତି ସୁରତିରେ ମନ ମୋହିବେ
ପଛ ଦିନ ଭାବ କରିବେ ପୁଣ ।
ତୋଷ ହୋଇବୁଁ ପାଇ ନାରାୟଣ ।
ଦୂତିକା ବୋଇଲେ ହେ ଛାୟାପତି ।
କେତେ ଦିନରେ ପାଇବୁଁ ଶ୍ରୀପତି ।

୧୪-୨—ସୃଷ୍ଟ ସଙ୍ଗେ ଦେଇଣ (ଚ) ୨୩-୧—ଦନ ହରିବୁଁ (ଗ)।

କୃଷ୍ଣ ମୁଖ ଦେଖି ଦୁଃଖ ହରବ୍ର ।
ଏ ଜନ୍ମରୁ ପୁଣି ମୁକତ ହେବ୍ରଁ ।
ତାହା ଶୁଣି ବୃନ୍ଦାବତୀ ବୋଇଲେ ।
କେତେ ଜନ୍ମ ଧ୍ୟାଇଣ ମାଧୋଇ ହେଲେ ।
ରାଧିକାପତି ତୁମ୍ଭେ ଦେଖିଛ ପୁଣ ।
ଏ ବନେ ଯାହା କଲେ ନାରାୟଣ ।
ବେଗେ କହଣ ଭେଟ କରାଇବ ।
ମିନତି କର କହୁଅଛୁଁ ସର୍ବ ।
ଲଳିତା ବୋଇଲେ ଶୂନ୍ୟ ପୁରୁଷ ।
ତୁମ୍ଭେ ତ କରୁଛ ରାଜ ହରଷ ।
ବିରହ ବାଧା ଦେଇଣ ମୁରାରି ।
ଛାଡ଼ି କରି ଗଲେ ମଥୁରା ପୁରୀ ।
ହନ ନୋହୁ ଯେବେ ରଜନୀ ହୋନ୍ତି ।
କଳାବଦନ ମଥୁରା କି ଥାନ୍ତି ।
ସକଳ ସୁନ୍ଦରୀ ମିଳି ମଥୁରା ।
ଆଣି ବୃନ୍ଦାବନେ କରନ୍ତୁ ଲୀଳା ।
ବିଶାଖା ବୋଇଲେ ନାହିଁ ଆସୁରୁ ।
ବଡ଼ ହୋଇଲେଣି ଯଶୋଦା-ସୁତ ।
ଲୋକ ନିନ୍ଦା ଅପବାଦ ହୋଇବ ।
ବାଟ ତ ପକାଇ ଦେଲେ ଦଇବ ।
ତାହା ଶୁଣି ରଙ୍ଗଦେବୀ ବୋଇଲେ ।
ନାଗର ଗଲେ ନାଗରୀ ରହିଲେ ।
ରାଧା ବୋଇଲେ ଗୋପନାରୀ ଶୁଣ ।
କେତେ ବିରହ ଗୋ ହୋଉଛ ପୁଣ ।
ସମସ୍ତେ ଶାନ୍ତ ହୁଅ ଗୋ ସୁନ୍ଦରୀ ।
ଭେଟ ହୋଇବେ ପୁଣି ଚକ୍ରଧାରୀ ।
ବୋଇଲେ ଶୁଣ ହେ ଶୂନ୍ୟ ପୁରୁଷ ।
ବିଳମ୍ବ କରନା କର କୃପା-ଲେଶ ।
ଶୂନ୍ୟେ ଚଳ ମାଆ ଶୂନ୍ୟ ବିହାର ।
ବିରହ ବାଧାରେ ସେ ଗୋପନାରୀ ।
ଏତେ ବୋଲି ହାତ ଯୋଡ଼ିଣ କର ।
ଶୂନ୍ୟ ପୁରୁଷଙ୍କୁ କହୁ ଶୀତଳ ।
ଗଗନବିହାରୀ ତହୁଁ ଚଳିଲେ ।
ରାଧା ସୁନ୍ଦରୀ ମୁରଲୀ କାଢ଼ିଲେ ।
ଧବଳ ଛତ୍ର ଟେକାଇଲେ ଶିରେ ।
ପ୍ରବେଶ ହୋଇଲେ ବୃନ୍ଦାବନରେ ।
ସିଂହାସନ ପରେ ବସିଲେ ଯାଇ ।
ଦଣ୍ଡେ ମଜାଶିତ ହୋଇଲେ ତହିଁ ।
ମୁରଲୀ ଗୋଷ୍ଠ ଧରି ଚନ୍ଦ୍ରାବଳୀ ।
ଧୀର ଧୀର କରି ବାଏ ସୁସାର ।
ସମସ୍ତଙ୍କ କର୍ଣ୍ଣେ ଧ୍ୱନି ଶୁଭିଲା ।
ଶବ୍ଦ ହୋଇଣ ଶୀତଳ ବୋହିଲା ।
ବୃନ୍ଦାବନରେ ଯେତେ ଜୀବ ଥିଲେ ।
ହଂସା ରାଗ ଛାଡ଼ି ପୀରତି ହେଲେ ।
ସମସ୍ତଙ୍କ ଦେହୁଁ ଛାଡ଼ିଲେ ତନ୍ଦ୍ରା ।
ବୃନ୍ଦାବନେ କି ବଜେ ନନ୍ଦସୁତା ।
ମୁରଲୀ ଶୁଣିଣ ବ୍ରଜସୁନ୍ଦରୀ ।
ବିରହ ଜାଳାରେ ହୁଅନ୍ତି ଘାରି ।
ରାଧା ସୁନ୍ଦରୀ ସମସ୍ତଙ୍କୁ କହୁ ।
ଅଳପ ହିନେ ଦେଖିବ ମାଧୋଇ ।
ରାଧା ଠାକୁରାଣୀ ବଚନ ଶୁଣି ।
ସମସ୍ତଙ୍କ ମନ ସନ୍ତୋଷ ପୁଣି ।
ସିଂହାସନ ପରୁ ଉଠି ଶ୍ରୀମତୀ ।
କୁଞ୍ଜବନକୁ ବିଜେ କଲେ ସତୀ ।

୬୭-୨—ଖଣ୍ଡ ପୋଥିରେ ରାଧିକାକାନ୍ତ ଅଛି । ଯଡ଼ର ନମକ୍ରେ ରାଧିକାଶ ପାଠ କରାଯାଇ ପାରେ ।
୮୨-୨—ଧୀରେ ଧୀରେ କରି (ପ,ଚ,ଛ) ।

କୁଞ୍ଜବନ ଯେଉ ଦେଖାନ୍ତି ପୁଣି ।
ଯେବଣ ଠାବରେ ଯେଉଁ ବିଧାନ ।୫୦
ଦେଖି ଦେଖିଣ ଗଲେ ତହିଁ ଚଳି ।
ରାହାସ ମଣ୍ଡଳ ସ୍ଥାନରେ ମିଳି ।
ଗୋପୀ ବୋଇଲେ ଦେଖ ଏହୁ ଥାନ ।
ବାସକସଜ୍ଜା ଏହିଠାରେ ପୁଣ ।
କେ ବୋଲେ ଏଠାରେ ପୂର୍ବରେ ହରି
କେତେ ଲୀଳା କଲେ ସଙ୍ଗେ ଅମ୍ଭର ।
କେ ବୋଲେ ବୃନ୍ଦାବତୀ ଘେନିଗଲେ ।
ଅଭିସାର ନିଶିରେ ସେ ଯାହା କଲେ ।
କେ ବୋଲେ ସେଦିନ ପାଇବା କାହିଁ
ଏ ଯୁଗ ଯାକରେ ନୋହିବ ଯେହ୍ନ ॥
କେ ବୋଲେ ସେଦିନ ଭାବପୀରତି ।
ଆଉବେଳେ କି ଉପୁଜିବ ଏଥି ।
କେ ବୋଲଇ ଭାଗ୍ୟ ସେଦିନ ବଡ଼ ।
ସେ ଦିନ ରଜନୀ କେଡ଼େ ସମ୍ଭାର ।
ଗୋପୀ ଗୋଷ୍ଠକେ ଗୋବିନ୍ଦ ଗୋଷ୍ଠଏ ।
ସେଦିନ ପୀରତି ଏମନ୍ତ ହୋଏ ।
ଫୁଲ ଶଯ୍ୟା ହେଲା ସହିତ ପାଇଁ ।
ରତି ସୁରତି ମନ ତୋଷ ହୋଇ ।
ରାହାସ ଉଛବ ହୋଇଲା ପୁଣ ।
ପଶା ଖେଳ ହେଲା ଏଠାରେ ଜାଣ ॥
ରାଧା ମୁରଲୀ ଛଡ଼ାଇଣ ନେଲେ ।
ଲଳିତା ନେପୁର ଯୋଡ଼ି ଘେନିଲେ ।
ପାହୁଡ଼ ନେଲେ ରଙ୍ଗଦେବୀ କାଢି ।
ସୁଦେବୀ ନେଲେ ଗଳା ରତ୍ନମାଳ ।
ବୃନ୍ଦାବତୀ ନେଲେ ପଦକ ହାର ।
କୁଞ୍ଜଲତା ନେଲେ ବସନ ପଟ ।
ମଗୁଆ କଙ୍କଣ ହସ୍ତରୁ ନେଲେ ।
ରତ୍ନ ମୁଦି ଭୃଙ୍ଗଲତା ଘେନିଲେ ।
ଏମନ୍ତେ ସେଦିନ ହୋଇଲା ଖେଳ ।
ଅମ୍ଭ ସଙ୍ଗରେ ମଦନ ଗୋପାଳ । ୬୫ ।
ରଜନୀ ଶେଷରେ ଅନ୍ତର ହେଲେ ।
ଅମ୍ଭେ ସମସ୍ତେ ଗଲୁ ଯେଝା ଘରେ ।
ସେଠାରେ ଦେଖି ଚନ୍ଦ୍ରାବଳୀ ଚଳି ।
ଦୋଳପୂର୍ଣ୍ଣିମୀ ଯାତ୍ରାଠାରେ ମିଳି ।
ଦେଖିଲେ ସେ ସ୍ଥାନ ଅତି ନିର୍ମଳ ।
ରଙ୍ଗବର୍ଣ୍ଣ ଦିଶେ ଯେହ୍ନେ ମନ୍ଦାର ।
ସୁନ୍ଦର ଜ୍ୟୋତି ରଙ୍ଗବର୍ଣ୍ଣ ଦିଶେ ।
ରଙ୍ଗମାଟି ଯେହ୍ନେ ଝଲେ ପ୍ରକାଶେ ।
ଦେଖିଣ ରାଧିକା ବୋଇଲେ ସହି ।
ଏହିଠାରେ ଦୋଳପୂର୍ଣ୍ଣିମୀ ହୋଇ ॥
ସେଦିନ ଯାତ୍ରା ତ ଦେଖିଛ ଡୋଳେ ।
ଦୋଳଗୋବିନ୍ଦ ହେଲେ ନନ୍ଦବାଳେ ।
ଛତି କାହାକୁ ତରାସ ଧରାଇ ।
ଇନ୍ଦ୍ରଗୋବିନ୍ଦ ଗୁନ୍ଦୁଅ ଝଣାଇ ।
ଦୋଳରେ ବସନ୍ତେ ପବନ ବହେ ।
ମନକୁ ଦୋଳ ପହଞ୍ଚାଇ ହୋଏ ।
ଶୁଣିଣ ନନ୍ଦ ଯଶୋଦା ଆଇଲେ ।
ଗୋପୀ ଗୋପାଳ ସମସ୍ତେ ଦେଖିଲେ ।
ଏତେ କହି ଚଳି ଗଲେ ସେଠାରୁ ।
ପାଦ ଚିହ୍ନ ଦେଖି ଶୁଅନ୍ତି ଦୂରୁ । ୭୫ ।
କଉଁ ଗୋପୀ ବୋଲେ ଶୁଣ ରେ ସହି ।
ଏ ଠାବରେ ବସିଥିଲେ ମାଧୋଇ ।
ପାଦ ଚିହ୍ନମାନ ପଡ଼ିଛି ପୁଣ ।
କାହିଁ ଗଲ ଆହେ ପରାଣଧନ ।

କେବଣ ତରୁଣୀ ପଡ଼ଇ ଶୋଇ ।
ପାଦପଦ୍ମ ଧୂଳି ଦେବେ ବୋଲଇ ।
କେବଣ ସୁନ୍ଦରୀ ପଡ଼େ ଭୂମିରେ ।
କୃଷ୍ଣ ପାଦ ଚିହ୍ନ ଧରଣ କରେ ।
ହା ହା କୃଷ୍ଣ ! ବୋଲି ଛାଡ଼ଇ ରଡ଼ି ।
କେଣେ ଗଲ ଅଛ କୁଞ୍ଜବିହାରି ॥
କେବଣ ଗୋପୀ ବିଳାପ କରଇ ।
କେବଣ ଗୋପୀ ପ୍ରେମଭର ହୋଇ ।
କେବଣ ସୁନ୍ଦରୀ ରାଧା ଛାମୁରେ ।
ମଣିମା ଭାବ ଧରଇ ଆଗରେ ।
କେବଣ ଗୋପୀ ଯୋଡ଼ା ବେତ ଘେନି
ଆଡ ହୋଅ ବୋଲି କରଇ ଧ୍ୱନି ।
ଲଳିତା ଧବଳ ଛତ୍ର ଧରଣ ।
ବିଶାଖା କାହାଳ ବଜାଏ ପୁଣ ।
ଇନ୍ଦ୍ରରେଖା ଧର ଅଲଟ ବଞ୍ଚେ ।
ସେଠାରୁ ଚଳନ୍ତି ଗୋପୀ ସମସ୍ତେ ।୮୫।
ବସ୍ତ୍ର ହରଣଠାରେ ହେଲେ ଯାଇଁ ।
କଦମ୍ବମୂଳେ ରତ୍ନବେଦି ଶୋହି ।
ରାଧିକା ସେଠାରେ ପ୍ରଳମ୍ବ କଲେ ।
ସର୍ବସୁନ୍ଦରୀ ତଳରେ ଶୋଇଲେ ।
ଉଠିଣ ଚନ୍ଦ୍ରାବଳୀ ବୋଲେ ପୁଣ ।
ଏଠାରେ ଯାହା କଲେ ନାରାୟଣ ।
ଅମ୍ଭେ ସମସ୍ତେ ଉଲଗ୍ନ ହୋଇଣ ।
ଜଳକ୍ରୀଡାରେ ମାତିଲାଇଁ ପୁଣ ।
ସେଦିନ ହରି ଯଉଁ ଭାବ କଲେ ।
ବସନଯାକ ବୃକ୍ଷରେ ବାନ୍ଧିଲେ । ୯୦ ।
କେତେ କହିବାରୁ ଦେଲେ ଅମ୍ଭଙ୍କୁ ।
ଦେଖିଲେ ମନେ ପଡ଼ଇ ତାହାଙ୍କୁ ।

ସେଠାରୁ ଗୋପ ଗୋପାଳୁଣୀ ଚଳି ।
ନାବକେଳିଠାରେ ଭୁଲିଲେ ମିଳି ।
ଦେଖିଣ ଗୋପୀ ବସିଲେ ସେଠାରେ ।
ପୂର୍ବ କଥାମାନ ବର୍ଣ୍ଣିର ଛଳେ ।
କେ ବୋଲେ ଏହିଠାରେ ନାବକେଳି ।
ଦଧିସ୍ଥି ନାବରେ କେଉଁଠି ଦଉ ।
କେ ବୋଲେ ଘାଟ ସେଦିନ ମାଗିଲେ ।
ନବରଙ୍ଗ କରି ନାବ ବାହିଲେ । ୯୫ ।
ରାଧିକା ବୋଲନ୍ତି ସେଦିନ କଥା ।
କହିଲେ ନ ସରିବ ମନକଥା ।
ଏକାକରି ନାବେ ବସାଇ ନେଲେ ।
ମଝି ନଈରେ ନିଜରୂପ ହେଲେ ।
ରତି ସୁରତି କଲେ ନାବପରେ ।
ସାଉଣି ଲଗାଇ ଦେଲେ କୂଳରେ ।
ମଥୁରା ହାଟେ ବିକା କିଣା କରି ।
ଯମୁନା ଘାଟରେ ସ୍ନାହାନ ସାରି ।
ଘରଠାରେ ଯାଇଁ ହେଲୁ ପ୍ରବେଶ ।
ସେଦିନ କଥା ଗୋ ଏମନ୍ତ ରସ ।୧୦୦।
ତାହା ଶୁଣି ବୃନ୍ଦାବତୀ ବୋଇଲା ।
ସେ କଥାମାନ ଗୋ କେଣିକି ଗଲା ।
ଏବେ ଠାକୁରାଣୀ ବିଚାର କର ।
ଘରକୁ ଯିବା ହେଲାଣି ଉଚ୍ଛୁର ।
ଶାଶୁ ନଣନ୍ଦ ଚଳ ହୋଉଥିବେ ।
ଗୋପନଗରେ ଚହଳ କରିବେ ।
ଶୁଣିଣ ରାଧିକା ତୋଷ ହୋଇଲେ ।
ମୁରଲୀ ଧରି ଅଧରେ ବାଇଲେ ।
ନାଟ ଗୀତରଙ୍ଗ କରଣ ପଥେ ।
ଗୃହନ୍ତି ଯେସନେ ଗହଳ ଥାଟେ ।

୨୮-୨—ପଦ୍ମପାଦ ଧୂଳି (ଖ, ଘ, ଙ, ଛ, ଜ) ।

ଧବଳ ଛତ୍ର ସଙ୍ଗତରେ ଅଛୁ ।
ମଣିମା ଡାକ ଆଗରେ ପଡ଼ୁଛୁ ।
କାହାଳ ବାଜନ୍ତେ ଅପୂର୍ବ ସ୍ୱର ।
ଗୋପରେ ସମସ୍ତେ ଦେଖି ବିସ୍ମର ।
ଧୀର ଧୀର ହୋଇ ଚାଲନ୍ତି ରାଧା ।
ପଞ୍ଚଶର ଯେସନ୍ତେ ଶରୀରେ ବାଧା ।
ରାଜବେଶରେ ହୋଇ ଦିଶେ ପୁଣି ।
ମୁଣ୍ଡ ଗୋଷ୍ଠ ଫୁଲ ଭୂଷଣ ଜାଣି ।
ରତ୍ନ କାଞ୍ଚନ ଉପରେ ପଦକ ।
ଯେସନେ ରବି କରଇ ଝଟକ । ୧୧୦ ।
ଆଗରେ ଅଛନ୍ତି ଷୋଳନାୟିକା ।
ପଛରେ ଷୋଳ ସସ୍ର ଗୋପୀ ଶାଖା ।
ବୃନ୍ଦାବନରୁ ଗୋପ ପର୍ଯ୍ୟନ୍ତେ ।
ଅଳ ଗହଳ ଲାଗିଣ ସମସ୍ତେ ।
ନାନାବେଶରେ ଦିଶୁଛନ୍ତି ହୋଇ ।
କଳା ଧଳା ରଙ୍ଗ ବସନ୍ତ ପରି ।
ଦେଖି ଗୋପଲୋକେ ସନ୍ତୋଷ ହେଲେ
ବୃଦ୍ଧ ବାଳକ ଦେଖିଣ ଅଇଲେ ।
ରାଜହଂସ ପ୍ରାୟେ ଗମନ କରେ ।
ମିଳିଲେ ଯାଇଁ ଚନ୍ଦ୍ରସେଣା ପୁରେ ।୧୧୫।

ଚନ୍ଦ୍ରାବଳୀ ଶାଶୁ ନଣନ୍ଦ ପୁଣି ।
ଦେଖିଣ ବିସ୍ମର କରନ୍ତି ଜାଣି ।
ଏତେ ସମ୍ପତ୍ତି ଯାକୁ ଭୋଗଥିଲା ।
ଗୋପନଗରେ ଯେ ରାଜୁତି କଲା ।
ଏବେ ମୋକୁଳ ହୋଇଲା ଉଜ୍ଜ୍ୱଳ ।
କଥା ଜଣାଇଲା କାଳଯୁଗର ।
ଷୋଳସସ୍ର ଗୋପୀ ଯାହାଙ୍କ ଶାଖା ।
ଶ୍ରୀକୃଷ୍ଣ ଭଣଜା ଯାହାଙ୍କୁ ରକ୍ଷା ।
ପୂର୍ଣ୍ଣିମାସୀ ଯାର ସଙ୍ଗତେ ଅଛୁ ।
ଗୋପେଶ୍ୱର ଯାକୁ ସାହା ହୋଇଛୁ ॥
ତାରଠାରେ ମୁହିଁ ହୋଇଲି ଦୋଷୀ ।
ଏତେ ବିସ୍ମର ରାଧା ଆଗେ ଆସି ।
ମାଆ ଝିଅ ଦୋହେଁ ହୋଇଲେ ଉଭା ।
ଜଟିଳା ଚରଣେ ଓଳଗେ ରାଧା ।
ଚନ୍ଦ୍ରାବଳୀ ପାଦେ ନଣନ୍ଦ ପଡ଼ ।
ମୋ ଦୋଷ କ୍ଷମା କର ଗୋ ସୁନ୍ଦର ।
ରାଧା ରାଜବେଶ ଓହ୍ଲାଗି ହୋଇ ।
ଛତ୍ର କାହାଳ ମନ୍ଦିରେ ବଜାଇ ।
ଗୋପୀମାନେ ଗଲେ ଯେ ଯାହା ଘର ।
ଦାସ ବନାଇ ରହେ ପାଦତଳ ।୧୨୫।



# ଊନବିଂଶ ଛାନ୍ଦ

ଏଥୁ ଅନନ୍ତରେ ଅପୂର୍ବ ରସ ।
ପାର୍ବତୀ ଆଗେ କହେ ବିଶ୍ୱବାସ ।
ଭଗବତୀ ତୁମ୍ଭେ ଶୁଣ ବୋଇଲେ ।
ବୃନ୍ଦାବନେ ରାଜା ରାଧା ହୋଇଲେ ।
ଧବଳ ଛତ୍ର କୃଷ୍ଣ ଦେଇଥିଲେ ।
ରାଜା କରି ପୁଣି ମଥୁରା ଗଲେ ।
ଗଲାବେଳେ କହି ଗଲେ ରାଧାଙ୍କୁ
ଗୋପନଗର ଲାଗିଲା ତୁମ୍ଭଙ୍କୁ ।
କାହାକୁ ମନରେ ଭୟ ନ କରି ।
ବୋଧ କରୁଥିବ ଗୋପସୁନ୍ଦରୀ ।୫।
ବୃନ୍ଦାବନରେ ରାଜା ତୁମ୍ଭେ ହେଲ ।
ଆମ୍ଭେ ଯାଉଁଅଛୁ ମଥୁରାପୁର ।
କଂସକୁ ମାରି ମେଦିନୀ ରଖିବୁ ।
ଦୁଷ୍ଟ ଜବାଡ଼ ସନ୍ଥକୁ ପାଳିବୁ ।
ବିପତ୍ତି ଯେବେ ପ୍ରବେଶ ହୋଇବ ।
ଗୋପେଶ୍ୱରଙ୍କୁ ଯାଇଁ ପଚାରିବ ।
ସେ ପୁଣି କହିବେ ସର୍ବ ବିଚାର ।
ବୃନ୍ଦାବନରେ କରିବ ବିହାର ।
ଏତେ କହି ହରି ମଥୁରା ଗଲେ ।
କଂସକୁ ମାରି ପ୍ରଭୁପଣ କଲେ ।
ସେ କଥା ରାଧା ମନେ ରଖିଥିଲେ ।
ଗୋପେଶ୍ୱରଙ୍କୁ କହିବାକୁ ଦେଲେ ।
ଏବେ ରାଜା ବୃନ୍ଦାବନରେ ରାଈ ।
ଗୋପସୁନ୍ଦରୀ ତାଙ୍କ ବୋଲେ ରହି ।
ଛତ୍ର ଟେକାଇ କାହାଳି ବଜାଇ ।
ମୁରଲୀ ସ୍ୱନେ ଗୋପୀ ମନ ମୋହି ।
କୃଷ୍ଣ ଯଉଁରୂପେ ଗୋପରେ ଥିଲେ ।
ସେହିରୂପେ ରାଧା ଗୋପୀ ପାଳିଲେ ।
ରତ୍ନ ସୁରଙ୍ଗ ଛତ୍ରଣ କେବଳ ।
ଅଉ ସର୍ବ କଥା ଆନନ୍ଦ ଘୋର ।
ତାହା ଶୁଣି ହିମବନ୍ତ ଦୁଲଣୀ ।
ବୋଇଲେ କହ ଅହେ ଶୂଳପାଣି ।
ଏଥୁ ଅନନ୍ତରେ କି କଲେ ଗୋପୀ ।
ଏହା ମୋତେ କହ କଲପଢପି ।
ତା ଶୁଣି କହେ ଶମଶାନବାସୀ ।
ଆରଦିନ ଗୋପୀ ସକଳ ଆସି ।
ରଜନୀ ବେନି ଘଡ଼ି ଅଛି ପୁଣ ।
ଚନ୍ଦ୍ରସେଣା ପୁରେ ମିଳିଲେ ଜାଣ ।
ଶ୍ରୀମତୀଙ୍କ ସଙ୍ଗେ ଘେନ ଚଳିଲେ ।
କଦମ୍ବ ମୂଳରେ ଯାଇ ମିଳିଲେ ।୧୦ ।
ସମସ୍ତ ଗୋପିକା ମିଳଣ ପୁଣ ।
ଯମୁନା ଜଳରେ କଲେ ସ୍ନାହାନ ।
ଓଦା ବସନରେ ବାଲୁକା ପୁଛି ।
ଗନ୍ଧ ଚନ୍ଦନ ଦେଲେ ମନେ ହେଜ ।
ଫୁଲ ଚନ୍ଦନ ମସ୍ତକରେ ଦେଲେ ।
ମନାସିଲା ବର ତାଙ୍କୁ ମାଗିଲେ ।
ବୋଇଲେ ଜଣାଣ ଦେନ ଅମ୍ବର ।
ନନ୍ଦପୁଅକୁ ଦିଅ ଭଡ଼କାଳ ।
ନୋହିଲେ ପ୍ରାଣ ନଷ୍ଟେ ହରାଇବୁ ।
ସ୍ତ୍ରୀହତ୍ୟା ଦୋଷ ତୁମ୍ଭଙ୍କୁ ଦେବୁ ।
ଏତେ କହଣ ଯୋଡ଼ି ବେନି କର ।
ଓଳଗ ହୋଇ ସେଠାରୁ ବାହାର ।୧୫।

ରାଧିକା ଯାଇଁ ପରବେଶ ହେଲେ ।
ସୂର୍ଯ୍ୟଙ୍କୁ ଦେଖି ନମସ୍କାର କଲେ ।
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ପୂରାଇ ।
ସ୍ଥାପନା କଲେ ସୂର୍ଯ୍ୟଙ୍କୁ ଚାହିଁ ।
ବୋଇଲେ ଗଗନବିହାରି ଶୁଣ ।
ବେଗେ କୃଷ୍ଣଙ୍କୁ ଆଣିଦିଅ ପୁଣ ।
ଗୋବିନ୍ଦ ଆମ୍ଭର ଅଟନ୍ତି ଧନ ।
ନେଇଣ ରଖିଛ ଗୁପତେ ପୁଣ ।
ଜାଣା ଗଲା ତୁମ୍ଭ କୁଟିଳ ବୁଦ୍ଧି ।
ଡ଼ାକି ନେଇଗଲେ ଲବଣ୍ୟନିଧି ।
କେତେ ମୋହିନୀ ଜାଣ ଦେବଗଣ ।
ଆମ୍ଭ ପତିଙ୍କୁ କେଣେ ନେଲ ପୁଣ ॥
କେ ବୋଲେ ଦିଇନ ତୁମ୍ଭର ପାଦେ ।
ଯଶୋଦା-ସୁତଙ୍କୁ ଦିଅ ହେ ଏବେ ।
ଗୋପସୁନ୍ଦରୀ ଏତେ କହି ପୁଣ ।
ସେଠାରୁ ଚଳିଗଲେ ତତକ୍ଷଣ ।
ଗୋପେଶ୍ୱରଙ୍କୁ କରନ୍ତି ଦର୍ଶନ ।
ପାର୍ଶ୍ୱେ ପଡ଼ି ଶୋଇ କହେ ବଚନ ।
ମାୟା କମ୍ପାଇ ଲଗାଇଛ ହର ।
ଆମ୍ଭ ଗୁହାରିକି ତଲସ୍ପୃ କର ।
ସବୁ ଦିନେ ତୁମ୍ଭେ ଆମ୍ଭଠାକୁର ।
ତୁମ୍ଭ ଚରଣରେ ଆମ୍ଭେ କିଙ୍କର ।
ବୃନ୍ଦାବନବାସୀ ତୁମ୍ଭେ ତ ଅଟ ।
ଏବେ ଆମ୍ଭର ଫିଟାଅ ସଂକଟ ।
ପାଇଲା ଧନ ହରାଇଲା ଯେସନ୍ତେ ।
ବିକଳ ହୁଅଇ ମନ ତେସନେ ।
ଖାଇବା ଅନ୍ନେ ପଡ଼େ ଯେବେ ଧୂଳି ।
ତେମନ୍ତ ହୋଇଲେ ସେ ବନମାଳୀ ।
ଘୃତ ନୋହିଲେ ଯେମନ୍ତେ ଭୋଜନ ।
ସନ୍ତୋଷ ନୋହଇ ଦେବତା ମନ ॥
ଯୁବା ସ୍ତ୍ରୀପାଶେ ନ ଥିଲେ କାନ୍ତ ।
ଯେମନ୍ତେ ବିରହ ହୁଏ ସେହୁ ତ ।
ତୁମ୍ଭେ ତ ସକଳ କଥାହିଁ ଜାଣ ।
କୃଷ୍ଣଙ୍କୁ ଦେଇ ରଖ ଆମ୍ଭ ପ୍ରାଣ ।
କହି ଚଳିଲେ ସବୁ ଗୋପନାରୀ ।
ଫୁଲବନରେ ଯାଇଁ ବେଗେ ମିଳି ।
ଦେଖିଲେ ଫୁଲ ଫୁଟିଛି ଅପାର ।
ବଉଳ ଚମ୍ପା ମଲ୍ଲୀ ଯୂଈ ସାର ।
ବାସ କରଇ ଅମୂଲ୍ୟ ରତନ ।
ପୁଷ୍ପ ବର୍ଣ୍ଣି ମାନ ଦଶଇ ଚିହ୍ନ ।
ରଙ୍ଗ ବସନ୍ତ ଯେ ଶାମଳ କଳା ।
ନାନା ବର୍ଣ୍ଣେ ପୁଷ୍ପ ତହିରେ ମେଳା ।
ତିନି କୋଣ ଅଟେ ପୁଷ୍ପର ବନ ।
ଦଶ କୋଣକୁ ବାସକରେ ପୁଣ ॥
କଳା ଭ୍ରମର କରନ୍ତି ଭ୍ରମଣ ।
ଦେଖି ଗୋପୀମାନେ ବିରହ ପୁଣ ।
କେ ବୋଲେ ସଙ୍ଗାତ ଶୁଣ ଏଣିକି ।
କଳା ଭ୍ରମର ଗୋ ଫୁଲ ଚୁମ୍ବୁଛି ।
ବାସକୁ ବାଇ ହୋଇଛି ନାଗର ।
କ୍ରୀଡ଼ା କରୁଅଛି ପୁଷ୍ପ ଉପର ।
କେ ବୋଲେ ଦେଖ ଗୋ ପରାଣସହି ।
ନାଗର କେଡ଼େ ଶୋରଧାରେ ରହି ।

୩୫ । ମାୟା କମ୍ପାଇ ଲଗାଇଛ ହର । ଅମ୍ଭ ଗୁହାରକ କର୍ଣ୍ଣ ନ କର ।
୩୬ । ଅମ୍ଭ ଗୁହାରିକି ଲକ୍ଷ୍ୟ ନ କର । ସବୁଦିନେ ତୁମ୍ଭେ ଅମ୍ଭଠାକୁର । (ଡ) ।
୩୬-୨—ଅମ୍ଭ ଗୁହାରି ନଶୁଣ କର୍ଣ୍ଣର (କ) । (ଖ, ଗ, ଘ, ଚ, ଛ ଓ ଝ) ପୋଥିମାନଙ୍କରେ ୩୬ପଦରେ ୨ୟ ଚରଣ ଅଦୌ ନାହିଁ ।

ଉଡ଼ଇ ବସଇ ଫୁଲ ଉପର ।
ଫୁଲର କେଶର ଚୁମ୍ବେ ଅଧର ।
ଫଳ ହୋଇଲେ ଛାଡ଼ି କରି ଯିବ ।
ଯଉଁରୂପେ ତେଜି ଗଲେ ମାଧବ ।
ତା'ଶୁଣି ସୁନ୍ଦରୀ କହେ ମେଦିଣି ।
ଫୁଟନ୍ତ ଫୁଲରେ ନାଗର ମଣି ।
କେମନ୍ତେ ଲୀଳା କରୁଛନ୍ତି ଭ୍ରମର ।
ଫୁଲ ବାସ ସ୍ପର୍ଶି ଆନନ୍ଦ ତାର । ୫୫ ।
କେ ବୋଲଇ ହରି ଏହି ରୂପରେ ।
ଲୀଳା କରୁଥିଲେ ଆମ୍ଭ ସଙ୍ଗରେ ।
ଏବେ ଅନ୍ତର ହୋଇଲେ ଶ୍ରୀହରି ।
ଛାଡ଼ି କରିଗଲେ ମଥୁରା ପୁରୀ ।
କେ ବୋଲେ ଦେଖ ଗୋ ପରାଣସହି ।
ଫୁଲ ଭିତରେ ଭ୍ରମର ଲୁଚଇ ।
ଆମ୍ଭ ମେଳ ଯେହ୍ନେ ନନ୍ଦ କହ୍ନାଇ ।
ପୀରତି ବେଳେ ଦେହେ ଲୁଚି ଯାଇ ।
ତେସନ ପ୍ରତ୍ୟେକ ଫୁଲ-ନାଗର ।
ଫୁଲ ବାସରେ ଭୋଳ ମଧୁକର ।୬୦।
ବୃନ୍ଦାବତୀ ବୋଲେ କଳାଭ୍ରମର ।
ବାସଫୁଲରେ ପୀରତି ଭ୍ରମର ।
ଭ୍ରମେ ଭଣ୍ଡି ଗଲ ଗୋପସୁନ୍ଦରୀ ।
ପୁରୁଣା ଦେଖି ପାସୋରିଲ ନାରୀ ।
ନୂଆରେ ମଲ୍ଲୀ ସେବତୀ ହୋଇଲୁଁ ।
ପୁରୁଣାରେ ଗୋଲ ଫୁଲ ହୋଇଲୁଁ ।
ଛଇଲ-ନାଗର ଅଟୁରେ ତୁହି ।
ଏକା ଭ୍ରମର କେତେ ଫୁଲ ହୋଇ ।
ତା' ଶୁଣି ଦୂତିକା ଥାଇ ବୋଇଲା ।
ଆମ୍ଭଙ୍କୁ ଭଣ୍ଡି ହରି ଯେହ୍ନେ ଗଲା ।୬୫।
ବାହୁଡ଼ି ନଇଲେ ନବନାଗର ।
ଏହିରୂପେ ପ୍ରୀତି ଫୁଲ ଭ୍ରମର ।
ରାଧିକା ବୋଇଲେ କଳା କହ୍ନାଇ ।
ଫୁଲ ବନରେ କିସ ଅଛି ଥୋଇ ।
କଳାଭ୍ରମର ହୋଇଛି ଲାଜ ନାହିଁ ।
ନିୟମ କରିଥିଲୁ ପରା ତୁହି ?
ପୁରୁଷ ପ୍ରୀତି ଯେହ୍ନେ ପାଣି ଗାର ।
ତେସନ ହୋଇଲେ ନନ୍ଦକୁମର ।
ଇନ୍ଦୁରେଖା ବୋଲେ ସେ କଥା ଛାଡ଼ ।
ଫୁଲ ବନେ ପଶି ତୋଳିବା ଫୁଲ ।୭୦।
ଫୁଲମାଳମାନ ଗନ୍ଥା କରିବା ।
ଭୂଷଣ ହୋଇ ଯେଝା ଘର ଯିବା ।
ଶୁଣିଣ ସମସ୍ତ ବ୍ରଜସୁନ୍ଦରୀ ।
ଫୁଲବନରେ ଆସି ଫୁଲ ତୋଳି ।
କଉଁ ଫୁଲ ତୋଳି ପଣନ୍ତେ ରଖି ।
କୃଷ୍ଣ ଅଇଲେ ଦେବା ଚନ୍ଦ୍ରମୁଖି ।
କେ ବୋଲେ ବଡ଼ ବାସ କରେ ଫୁଲ ।
ଯେ ଫୁଲକୁ ସଙ୍ଗେ ନାହିଁ ନାଗର ।
ମଲ୍ଲୀ ସେବତୀ ଚମ୍ପା କେହୁ ତୋଳେ ।
ଶ୍ରୀକୃଷ୍ଣ କଥା କେ ମନରେ ଭାଳେ ।୭୫।
କେଏ ଫୁଲ ତୋଳି ଗୁନ୍ଥନ୍ତି ମାଳ ।
କେ ଫୁଲ ଗନ୍ଥା ଲମ୍ବାଏ ଗଳାର ।
କଉଁ ଗୋପୀ ଫୁଲ ପଣନ୍ତେ ତୋଳେ ।
ମନେ ବିଚାରଇ ନାଗର ଥିଲେ ।
ଏ ଫୁଲ ଭୂଷଣ ହୁଅନ୍ତା ମୁହିଁ ।
ମାଧୋଇ ସଙ୍ଗତେ ମିଳିଲେ ଯାଇଁ ।
କଉଁ ଗୋପୀ ଯାଇ ଯୂଥି ତୋଳଣ ।
ନାଗେଶ୍ୱର ସଙ୍ଗ ତଗର ପୁଣ ।
ତୋଳିଣ ଗୁନ୍ଥଇ ଯତନ କରି ।
ଜୁଡ଼ା ଉପରେ ଗଭା କରେ ନାରୀ ।୮୦।

ଷୋଳ ନାୟିକାଏ ହୋଇଣ ମାଳ ।
ଗୁନ୍ଥିଣ ଭୂଷଣ କଲେ ଶରୀର ।
ଷୋଳସହସ୍ର ଗୋପୀ ଫୁଲ ତୋଳନ୍ତି ।
ନଅ କାହାର ସେ ବେଶ ହୋଅନ୍ତି ।
ବୃନ୍ଦାବତୀ ପାଶେ ସମସ୍ତେ ମିଳି ।
ଅପୂର୍ବ ବେଶ କରାନ୍ତି ସୁନ୍ଦରୀ ।
ପୂର୍ଣ୍ଣିମାସୀଙ୍କ ବେଶ କରାଇଲେ ।
ବସନ୍ତ ବେଶ ଦୂତିକା ହୋଇଲେ ।
ସମସ୍ତେ ତୋଳି ପଞ୍ଚ ବର୍ଣ୍ଣେ ଫୁଲ ।
ଅମୂଲ୍ୟ ହାର ଗୁନ୍ଥି ମାଳ ମାଳ ।୮୫।
ଚନ୍ଦ୍ରାବଳୀ ପାଶେ ମେଳିଲେ ଯାଇ ।
ଫୁଲ ମାଳ ମାଳ ଭେଟିଲେ ନେଇ ।
ବସିଛନ୍ତି ରାଧା ଫୁଲ ବନରେ ।
ମନ ନବେଶି ଶ୍ରୀକୃଷ୍ଣ ପଦ୍ମରେ ।
ବିଚାର କରନ୍ତି ସେ ଦୁଖୀ ହେଲି ।
କେଉଁ ଯୋଗେ ମୁଁ ଯେ ଜାତ ହୋଇଲି ।
ରାଜା ଘରେ ଜେମା ରାଜ-ଦୁଲାଳୀ ।
ଗୋପରେ ଗୋପାଳୁଣୀ ପୁଣି ହେଲି ।
ଅପୁଂସକର ମୁଁ ଧଇଲି ହସ୍ତ ।
ମଦନ ଶର ମୋତେ କଲା ଘାତ ।୯୦।
ତେଣୁ କୃଷ୍ଣ ସଙ୍ଗେ ପୀରତି କଲି ।
ଧନ ନ ସରଲା ଭାଳେଣ ମଲି ।
ଏମନ୍ତ ବିଚାର କରଣ ମନେ ।
ପବନ କହିଲା ଯାଇଣ କର୍ଣ୍ଣେ ।
ଚିନ୍ତା ନ କର ତ୍ରୈଲୋକ୍ୟ-ଜନନୀ ।
ଏକଟେ ଲଭିବୁ କୃଷ୍ଣଙ୍କୁ ପୁଣି ।
ତାହା ଶୁଣି ଚନ୍ଦ୍ରାବଳୀ ହରଷ ।
ଗୋପସୁନ୍ଦରୀ ହୋଇ ଫୁଲ ବେଶ ।
ସମସ୍ତେ ମିଶି ଫୁଲ ବେଶ କଲେ ।
ପଞ୍ଚ ବର୍ଣ୍ଣ ବେଶ ତହିଁ ହୋଇଲେ ।୯୫।
ଫୁଲର ପାଣ୍ଡୋଇ ଫୁଲ ନେପୁର ।
ଫୁଲ ଝୁଣ୍ଟିଆ ଲଗାଏ ଗୋଡ଼ର ।
ଫୁଲର ମୁଦ୍ର ଅଙ୍ଗୁଷ୍ଠିରେ ଶୋଭା ।
ଫୁଲ ଶାଢୀ ଗୋଟି ପିନ୍ଧିଲେ ରାଧା ।
ଫୁଲ କାଞ୍ଚୁଲା ଶରୀରେଣ ଜଡ଼ି ।
ଫୁଲ ମାଳୀମାନ ଗଳାରେ ପଡ଼ି ।
ଫୁଲର ଚୂଡ଼ୀ ଫୁଲ ତାଡ଼ ବନ୍ଦ ।
ଫୁଲର ବସଣି ନୋଥ ସମ୍ବାଦ ।
ଫୁଲର ଗୁଣା ନାସେ ଶୋହେ ପୁଣି ।
କାପ ମଲ କଢ଼ି ଫୁଲରେ ଜାଣି ।୧୦୦।
ଚନ୍ଦ୍ର ଫାସିଆ ଫୁଲରେ ନବାଡ଼ି ।
ଫୁଲ ଝରିକାଠି ଜୂଡା ଉପର ।
ଫୁଲର ଅଳକା ଫୁଲର ଗଭା ।
ଫୁଲରେ ଭୂଷଣ ହୋଇଲେ ରାଧା ।
ଫୁଲରେ ଛତ୍ର ଗୋଟି ସଜ କରି ।
ଫୁଲରେ ଭୂଷଣ ପଦ୍ମ କାହାଳି ।
ଫୁଲର ଆଲଟ ଫୁଲ ବିଞ୍ଚଣି ।
ଏମନ୍ତ ବେଶ କରି ତାଙ୍କୁ ପୁଣି
ଫୁଲବନରୁ ହୋଇଲେ ବାହାର ।
ବୃନ୍ଦାବନେ ଯାଇ ମିଳେ ସତ୍ୱର ।୧୦୫।
ଫୁଲ ଭୂଷଣ ସିଂହାସନ କଲେ ।
ତହିଁ ପରେ ଚନ୍ଦ୍ରାବଳୀ ବସିଲେ ।
ବେନି ଘଡ଼ି ରାଜା ହୋଇଲେ ତହିଁ ।
ରାଜନୀତ ଯେଉଁରୂପରେ ହୋଇ ।
ଦଣ୍ଡ ମଣ୍ଡ ଯେଉଁ ରୂପେ ଭଆଣ ।
ସେହି ରୂପେ ରାଇ ହୁକୁମ ପୁଣ ।

୧୦୪-୨—ଏମନ୍ତ ବେଶ କରି ଠାକୁରାଣୀ (ଗ) ।

ସଖୀ ଭୁଞ୍ଜଣ ସେଠାରୁ ଚଳିଲେ ।
ପଦ୍ମଗନ୍ଧ ମଣାଇଁ ଗୋପୀଙ୍କୁ ନେଲେ ।
ମଣିମା ଡାକ ପଡ଼ିଲା ଅଗରେ ।
ଭାଣ୍ଡ କଲ୍ଲୁବାର ଗୋପୀଙ୍କୁ କରେ ॥
ଲଳିତା ବିଶାଖା ଅଗେ ପଶ୍ଚିମ ।
ଧବଳ ଛତ୍ରଙ୍କ ଧରେ ବୃନ୍ଦକା ।
ଚନ୍ଦ୍ରାବଳୀ ରାଇ ସଙ୍ଗତେ ଚଲେ ।
ଅଗେ ପୂର୍ଣ୍ଣିମାସୀ ଆସନ୍ତି ଧୀରେ ।
କାହାଳ ବଜାଏ ସୁଦେବୀ ପୁଣି ।
ରଙ୍ଗଦେବୀ ପାନ ପଛରେ ଜାଣି ।
ଇନ୍ଦୁରେଖା ହେଲେ ସେ ଦଳ ମନ୍ତ୍ରୀ ।
ଯେତେକ ନାୟିକା ସାମନ୍ତେ ଲେଖି ।
ଆଗରେ ନାୟିକା ପଛରେ ଗୋପୀ ।
ମଧ୍ୟରେ ରାଧିକା ଧୀରେ ଚଳନ୍ତି ।୧୧୮।
ବୃନ୍ଦାବନରୁ ହୋଇଲେ ବାହାର ।
ଚହଲ ଶୁଭଇ ଯେସନେ ଗୋଳ ।
ଗୋପପୁରେ ଯେତେ ତରୁଣୀ ଥିଲେ ।
ଗୋପାଳ ସଙ୍ଗତେ ଦେଖି ଥିଲେ ।
ସ୍ୱର୍ଗର ଦେବତା ମିଳଣ ପୁଣ ।
କୁସୁମ ଫୁଲ ବରଷନ୍ତି ଜାଣ ।
ଅପସରୀମାନେ ନୃତ୍ୟ କରନ୍ତି ।
ଗୋପ ନଗରେ ପ୍ରବେଶ ଶ୍ରୀପତି ।
ଚନ୍ଦ୍ରଶାଳା ପୁରେ ମିଳିଲେ ଯାଇଁ ।
ଫୁଲ ବେଶରେ ଅଙ୍ଗ ଶୋଭା ପାଇ ॥
ଗହଳ ଲାଗେ ଚନ୍ଦ୍ରସେଣା ପୁର ।
ଶାଶୁ ନଣନ୍ଦ ଦେଖିଲେ ସମ୍ଭ୍ରମ ।
ବେଶ ଓଲାଗି ହେଲେ ଚନ୍ଦ୍ରାବଳୀ ।
କ୍ଷୀର ପଡଣା ପିନ୍ଧେ ଅଣି କରି ।
ପଲଙ୍କେ ବସି ବିଡିଅ ଭୁଞ୍ଜିଲେ ।
ମେଲାଣି ମାଗି ଗୋପୀମାନେ ଗଲେ ।
ଯେ ଯାହା ଘରରେ ହେଲେ ପ୍ରବେଶ ।
ଛନ୍ଦ ରସରେ ରାଧା କରେ ଗ୍ରାସ ।
ପଲଙ୍କ ପରେ ଗୋପୀ ନିଦ୍ରା ଗଲେ ।
ଦାସ ଦନାଇଁ ପାଦ ମଣ୍ଡାଳିଲେ ।

୧୧୬-୧—ଚନ୍ଦ୍ରାବତୀ ସହ (ଖ,ଗ,ଡ,ଚ,ଛ) । ୧୧୯-୨—ପ୍ରବେଶ ଶ୍ରୀମତୀ (ଖ,ଘ,ଛ) ।



# ବିଂଶ ଛାନ୍ଦ

ଏଥୁ ଅନନ୍ତରେ ପାର୍ବତୀ କହି ।
ଗୋପୀଙ୍କ ଲୀଳା ତ ବ୍ରହ୍ମାଣ୍ଡେ ନାହିଁ ।୧।
ଯାହା ମୁଁ ଶୁଣି ନ ଥିଲି କର୍ଣ୍ଣରେ ।
ସେ କଥା କହିଲ ମୋହୋ ଆଗରେ ।
ରାଧିକା ତତ୍ତ୍ୱ ମୋତେ ନାହିଁ ଜଣା ।
କୃଷ୍ଣ ଯିବାରୁ ରାଜା ହେଲେ ସିନା ।
କାହାର ନାରୀ ପୂର୍ବରେ ସେ ପୁଣ ।
ପୁଣି ବୃନ୍ଦାବନେ କଉଁ ଉଆଣ ।
ଗଙ୍ଗାଧର ବୋଲେ ଶୁଣ ଗୋ ସହି ।
ଗୋଲୋକ ଦ୍ୱାରୀ ରାଧିକା ଯେ ହୋଇ ॥
ଗୋଲୋକରେ ଯେତେ ସର୍ବେ ଅଯୋନ ।
ବୃନ୍ଦାବନରେ ରାସ ହେବା ଜାଣି ।
ଗୋଲୋକ ତେଜି ଆଇଲେ ତ୍ରିପୁରା ।
ରାଧା ନାମ ଗୋଷ୍ଠ ତାଙ୍କର ପରା ।
କୃଷ୍ଣ କଂସକୁ ମାରିବାକୁ ପୁଣ ।
ଅଷ୍ଟ ବରଷ ଗୋପେ ଲୀଳା ଜାଣ ।
ମଥୁରାକୁ ଗଲେ ଅକ୍ରୁର ସଙ୍ଗେ ।
ସେ କଥାମାନ ତ ଶୁଣିଛ ଆଗେ ।
କୃଷ୍ଣ ଥାଇ ରାଇ ରାଜା ହୋଇଲେ ।
ବୃନ୍ଦାବନ ତାଙ୍କୁ ଦେଇଣ ଗଲେ ।୧୦।
ଏବେ କହିବା ଶୁଣ ଶାକମ୍ବରୀ ।
ଅପୂର୍ବ ରସ ଗୋ ଶୁଣ ସୁନ୍ଦରୀ ।
ସେ ଦିନ ନିଶି ଗୋପରେ ଚହଲ ।
ରାଇ ରାଜା ହେଲେ ଏ ଗୋପପୁର ।
ନିଶି ପାହିଲା ଗୋପୀ ଯେ ଅଇଲେ ।
ଚନ୍ଦ୍ରସେଣୀ ପୁରେ ପ୍ରବେଶ ହେଲେ ।
ସର୍ବ ଗୋପାଙ୍ଗଣୀ ହୋଇଣ ମେଳ ।
ରାଧାଙ୍କୁ ବୋଇଲେ ଯମୁନା ଚାଲ ।
ରାଧିକା ବୋଇଲେ ଶୁଣ ଗୋ ସର୍ବ ।
ଯେଝା ଘରକୁ ଚଳ ଯାଅ ଏବେ ।୧୫।
ଦଧି ଛେନା ସର ଲବଣୀ ଆଣ ।
ପାଚିଲା କଦଳୀ ନଡ଼ିଆ ପୁଣ ।
ଯାହାକୁ ଯାହା ମିଳିବ ଘେନିଣ ।
ସଜ ହୋଇ ଯାଅ ଯମୁନା ପୁଣ ।
ବାଲୁଙ୍କା ପୂଜି ଗୋପେଶ୍ୱର ଯିବା ।
ପୂଜା କରି ବନ ଭୋଜି କରିବା ।
ଆମ୍ଭେ ନେଉଛୁ ଶତ ଭାର ପୁଣ ।
ଆସ ବନ୍ଧନ ହେଲା ନ କରଣ ।
ଶୁଣି ଗୋପୀମାନେ ଗଲେ ଘରକୁ ।
ଛେନା ଦୁଧ ସର ଲବଣୀ ତାଙ୍କୁ ।୨୦।
ସମସ୍ତେ ଘେନି ହୋଇଲେ ବାହାର ।
ପ୍ରବେଶ ଯାଇ ଗୋବର୍ଦ୍ଧନ ତଳ ।
ଶ୍ୟାମ କୁଣ୍ଡ ରାଧା କୁଣ୍ଡ ନିକଟେ ।
ଠୁଳ ହୋଇଲେ ଗୋପିକା ସମସ୍ତେ ।
ଗୋଷ୍ଠିକା ଲବଣୀ ଛେନା ଖାକର ।
ଘେନି ବୃନ୍ଦାବତୀ ଚଳେ ସତ୍ୱର ।
ଦଶ ବିଂଶ ଦ୍ରବ୍ୟ ଦୂତିକା ନେଲେ ।
ଗୋପୀଙ୍କ ସଙ୍ଗରେ ଯାଇ ମିଳିଲେ ।
ଚନ୍ଦ୍ରାବଳୀ ପୁଣି ବାହାର ହୋଇ ।
ପୂର୍ଣ୍ଣିମାସୀ ସଙ୍ଗେ ଅଛନ୍ତି ରହି । ୨୫ ।

୧୪-୧—ହୋଇଲେ ମେଳ (ଖ) । ୧୮-୨—ପୂଜା ସାରି (ଚ) ।

ନିଜ ସେବାକାରୀମାନେ ସଙ୍ଗରେ ।
ଦୁଧ ଘିଅ ମାନ ଚଳେ ଆଗରେ ।
ପାଚିଲା କଦଳୀ ପଇଡ଼ ଗୁଳ ।
ବାହାର ହୋଇଲେ ଗୋପ ସୁନ୍ଦରୀ ।
ଆଗେ ପୌର୍ଣ୍ଣମାସୀ ପଛେ ନଣନ୍ଦ ।
ଧୀର ଧୀର ହୋଇ ଚାଲିବା ମନ୍ଦ ।
ବୃନ୍ଦାବନରେ ହୋଇଲେ ପ୍ରବେଶ ।
ଯହିଁଠାରେ ଛନ୍ତି ଗୋପୀ ସମସ୍ତ ।।
ଗୋବର୍ଦ୍ଧନ ଗିରି ତଳରେ ଯାଇ ।
କେଳି କଦମ୍ବ ଘାଟ ଠାରେ ରହି ।
ଯମୁନାକୁ ଚାହିଁ ସମସ୍ତେ ପୁଣ ।
ହୁଳହୁଳି ଦେଲେ ସକଳେ ଜାଣ ।
ଦନ୍ତ ଘଷିଣ ଯମୁନା ପଶିଲେ ।
ସ୍ନାହାନ ସାରି କୂଳେ ଉଭା ହେଲେ ।
ବାଲୁକା ପୂଜିଲେ ସକଳ ଗୋଈ ।
ଗନ୍ଧ ଚନ୍ଦନ ଫୁଲ ଶିରେ ଦେଇ ।
ସିନ୍ଦୂର କଜ୍ଜଳ ନେଇଣ ଦେଲେ ।
ଛେନା ଗୋଟିକା ପୂଜା ତାଙ୍କୁ କଲେ ।।
କର ଯୋଡ଼ିଣ ଜଣାନ୍ତି ସୁନ୍ଦରୀ ।
ନନ୍ଦସୁତକୁ ଦିଅ ବେଗ କରି ।
ଶଙ୍କର ଗଉରୀ ସୁଦୟା କର ।
ସେବା ଘେନ ବାରେ ପାର୍ବତୀବର ।
ପୂର୍ବରେ ଯହିଁ ରୂପେ ଲୀଳା ହେଲା ।
ସେ କଥା ପ୍ରାପତ କରିଅ ପରା ।
ଏମନ୍ତ ଜଣାଇ ଗୋପକାମିନୀ ।
ସେଠାରୁ ସମସ୍ତେ ଉଠିଲେ ପୁଣି ।
କେଳି କଦମ୍ବ ମୂଳେ ଉଭା ହୋଇ ।
ଓଦା ବସନ ପାଲଟିଲେ ତହିଁ ।।
କ୍ଷୀନ ପଟନୀମାନ ଆଣିଥିଲେ ।
ପିନ୍ଧି ପଟ୍ଟବସ୍ତ୍ର ସମସ୍ତେ ହେଲେ ।
ସିନ୍ଦୂର କଜ୍ଜଳ ଘେନିଣ ପୁଣ ।
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଘେନିଣ ।
ହରିଦ୍ରା ତଣ୍ଡୁଳ ସୁବର୍ଣ୍ଣ ଦୂବ ।
ରଙ୍ଗ ବର୍ଣ୍ଣ ପୁଷ୍ପ ତହିଁ ସଂଯୋଗ ।
ହୁଳହୁଳି ଦେଇ ସକଳ ନାରୀ ।
ବନ୍ଦାପନା କଲେ ଶୂନ୍ୟବିହାରୀ ।
ପୁଷ୍ପ ଚନ୍ଦନ ଧୂପ ଦୀପ ଦେଲେ ।
ଆଳତି କରି ଦୁଃଖ ଜଣାଇଲେ ।।
କେ ବୋଲେ ଦିଅ ହେ କଳାବଦନ ।
ନ ଦେଖି ଆମ୍ଭେ ହେଉଛୁ ଉଛନ ।
କେ ବୋଲେ ଯଶୋଦା-କୁମର ଆସ ।
କୋଳ କରିଣ ଆମ୍ଭ ମନ ତୋଷ ।
ନୟନ ସୁଫଳ ହେଉ ଆମ୍ଭର ।
ଗଗନବିହାରି ସୁଦୟା କର ।
କେ ବୋଲେ ରାତ୍ର ଦିବସ କରୁଛ ।
କଳା ପୁରୁଷକୁ ଲୁଚାଇ ଅଛ ।
ଆମ୍ଭ ନୟନମାନଙ୍କରେ ପୁଣ ।
ପଟଳ ମାଡ଼ିଲେ ଯେସନେ ଜାଣ ।।
ସେହିରୂପେ ହେଲେ ଗୋପ ଗୁଆଳୀ ।
ରାଧା ନ ଥିଲେ ମରନ୍ତୁଣି ଝୁରି ।
କେ ବୋଲେ ତୁମ୍ଭେ ତ ଜାଣ ସକଳ ।
ଆମ୍ଭର ମାଗୁଣି ନନ୍ଦକୁମର ।
ତାଙ୍କୁ ଦେଖିଲେ ସବୁ ସୁଖ ହେବ ।
ରତି ପୂରତି ବିରହ ଯେ ଯିବ ।

୩୦ । ହୋଇବା ପବେଶ (ଘ) । ୪୭ ୧—ଯଶୋଦା କୁମର (ଖ, ଗ, ଘ, ଟ ଛ, ଜ) ।

କେ ବୋଲେ ଶୁଣ ଦନକର ନାଥ ।
ଗୋବିନ୍ଦ କରିଗଲେ କପାଁ ଦୁଖ ।
ବଡ଼ ପ୍ରଭୁ ପଣ ହୋଇଲା ଚେପବେ ।
ଦାସୀ ମାନଙ୍କୁ ଦୂର କଲେ ଭାବେ ।
ସ୍ନେହେ କହୁ ତହିଁ ବ୍ରଜସୁନ୍ଦରୀ ।
ବାସ ପଡ଼ନ୍ତ ଦୁଧ ସର ଭରି । ୬୫ ।
ସୂର୍ଯ୍ୟ ପୂଜା କରି ସାରିଣ ବେଗେ ।
କହୁଣ ସେଠାରୁ ଚଳଲେ ସର୍ବେ ।
ଆଗ ପଛ ହୋଇ ଚାଲନ୍ତି ପୁଣ ।
ପ୍ରଦକ୍ଷିଣ କଲେ ଗିରିଙ୍କ ଜାଣ ।
କୃଷ୍ଣର ପାଦ ଚିହ୍ନମାନ ଦେଖି ।
କର ଯୋଡ଼ିଣ ପ୍ରଣାମ କରନ୍ତି ।
କେ ବୋଲେ ସଙ୍ଗାତ ଏହାଙ୍କୁ ଦେଖ ।
ଯେ ଗିରି ଧରି ଥିଲେ ପ୍ରାଣନାଥ ।
କେ ବୋଲେ ମିତଣି ସେ କାଳ କଥା ।
ଯହିଁ ଦିନ ଗୋପେ ଇନ୍ଦ୍ର ଦେବତା ॥
ବାଦ କରିଣ ବରଷିଲା ଜଳ ।
ଚଡ଼କ ବଜ୍ର ଘୂରୀ ଅତି ଘୋର ।
ସେଦିନ ଯେ ଗିରି ଟେକିଲେ ହରି ।
ସପ୍ତଦିନ ଯେଥେ ବଞ୍ଚିଲୁ ନାରୀ ।
ଯେ ଗିରି ନେଇ ଗୋପ ଘୋଡ଼ାଇଲେ ।
ଦେବଙ୍କ ଗରବ ଭାଙ୍ଗିଲେ ଭଲେ ।
ତାହା ଶୁଣି ବୃନ୍ଦାବତୀ ବୋଇଲେ ।
ସେ କାଳ କଥା ଗୋ ମନେ ପଡ଼ିଲେ ।
ହୃଦୟ ଦହଇ ଆମ୍ଭର ପୁଣ ।
ଯେସନେ ଅଗ୍ନି ଦହେ ଘୃତ ଜାଣ ॥
ଶ୍ରୀମତୀ ବୋଇଲେ ଶୁଣ ଗୋ ତୁମ୍ଭେ ।
ବିରହ ସମ୍ଭାଳ ସୁନ୍ଦରି ଏବେ ।
ଚାଲ ଏଠାରୁ ବେଗେ ଚଳି ଯିବା ।
ଗୋପେଶ୍ୱରଙ୍କୁ ଦର୍ଶନ କରିବା ।
ପୂର୍ଣ୍ଣିମାସୀ ବୋଲେ ଶୁଣ ଗୋ ସହି ।
ଗିରି ପୂଜା ଆଜ କରିବା ସହି ।
କାଲ ଯୁଗେ କଥା ରହିବ ପୁଣ ।
ଗୋବର୍ଦ୍ଧନ ପୂଜା ହେବ ଭିଆଣ ।
ସକଳ ପଦାର୍ଥ ଅଣାଇ ବେଗ ।
ଗୋବର୍ଦ୍ଧନ ପୂଜା କଲେ ଆରମ୍ଭ ।
ପୂଜା ସାରି ସର୍ବ ଗୋପସୁନ୍ଦରୀ ।
ଗିରିବରଙ୍କୁ ପ୍ରଣମିତ କରି ।
ସେଠାରୁ ଚଳିଲେ ସମସ୍ତ ଗୋଈଁ ।
ଧବଳଛତ୍ର ତଳେ ରାଧା ଯାଇ ।
ଗୋପେଶ୍ୱରଙ୍କ ଠାରେ ପରବେଶ ।
ଦର୍ଶନ କରି ଗୋପୀମାନେ ତୋଷ ।
ଯମୁନା ଜଳେ କରାଇଲେ ସ୍ନାନ ।
ଶିରରେ ଦେଲେକ ଫୁଲ ଚନ୍ଦନ ।
ବେଲପତ୍ରୀ ଉଆ ତଣ୍ଡୁଳ ଦେଲେ ।
କରଯୋଡ଼ି ସର୍ବେ ଉଭା ହୋଇଲେ ॥
ବୋଇଲେ ଶୁଣ ଦେବଙ୍କ ଈଶ୍ୱର ।
ବେଗେ ଭେଟ କର ମୁରଲୀଧର ।
ଆମ୍ଭମାନଙ୍କର ବିରହ ତୁଟୁ ।
ସଙ୍କଟ ଫେଡ ହେ ପାର୍ବତୀ-ଚକ୍ଷୁ ।
ଯେତେ ଦେବତା ତୁମ୍ଭଙ୍କୁ ସେବିଲେ ।
ସେବା କରି ପୁଣି ଅମର ହେଲେ ।
ଅପସରାଗଣେ ସେବି ତୁମ୍ଭଙ୍କୁ ।
ସ୍ୱର୍ଗ ପ୍ରାପତ ହୋଇଲା ତାହାଙ୍କୁ ।
ଦଶରଥ ପୁଅ ଶ୍ରୀରାମ ପୁଣ ।
ରାମନାଥ ଲିଙ୍ଗ ପୂଜିଲେ ଜାଣ । ୮୦ ।

୬୦·୧—ଦନାଜର ନାଥ (ଟ) ।

ରାବଣ ମାରି ସୀତାଙ୍କୁ ଆଣିଲେ ।
ସେତୁବନ୍ଧ ବାନ୍ଧି କୀର୍ତ୍ତି ରଖିଲେ ।
ଇନ୍ଦ୍ର ସେବା କଲ ଶତେ ବରଷ ।
ଐରାବନ୍ତ ଗଜ ଦେଲେ ମହେଶ ।
କଂସ ଜଣାଇବୁ ଗୋପର ନାରୀ ।
ଆମ୍ଭଙ୍କ ଦଅ ହେ କୁଞ୍ଜବିହାରୀ ।
ତେବେ ସନ୍ତୋଷ ହେବ ଆମ୍ଭ ମନ ।
ଏହି କଥା ଆମ୍ଭେ ମାଗୁଛୁଁ ପୁଣ ।
କଲା ପୁରୁଷକୁ ପାଇଲେ ତୋଷ ।
ଆମ୍ଭମାନଙ୍କ ଦେହୁଁ ଯିବ କ୍ଲେଶ ।
ରାଧା ବୋଇଲେ ଶୁଣ ତ୍ରିପୁରାରି ।
ଗୋବର୍ଦ୍ଧନଠାରେ ଛତ୍ର ସବୁଙ୍କର ।
ଭେଲଙ୍କ ବରହ ଦେହରୁ ହର ।
ଆମ୍ଭପାଇଁ ତାଙ୍କ ପାଶକୁ ଚଳ ।
କହିବ ତ୍ରୈଲୋକ୍ୟ ଚନ୍ଦ୍ରାମଣିଙ୍କ ।
ସେବକମାନଙ୍କୁ ହୃର କର କି ।
କଲା ବୋଲୁଅ ପତିତପାବନ ।
ଗୋପୀନାଥ ନାମ ବିଖ୍ୟାତ ପୁଣ ।
ଯେତେ କହିବ ଆମ୍ଭପାଇଁ ଯାଇଁ ।
ଆମ୍ଭର ମିନତି ଯେନ ଗୋସାଇଁ ।
ଏତେ ବୋଲି ରାଧା ଶୋଇଲେ ତଳେ ।
ଉଭା ହୋଇଣ ଗୋପୀଙ୍କି ବୋଇଲେ ।
ସକଳ ପଦାର୍ଥ ଆଣ ଗୋ ବେଗେ ।
ପୂଜା କରିଅ ଗୋପେଶ୍ୱର ଆଗେ ।
ଶୁଣି ଗୋପାଳୁଣୀ ହରଷ ହେଲେ ।
ସକଳ ପଦାର୍ଥ ଆଣି ଥୋଇଲେ ।
ପୂଜା ବଢ଼ାଇଲେ ସନ୍ତୋଷ କରି ।
ସେଠାରୁ ଚଳି ଗଲେ ଗୋପନାରୀ ।
ବୃନ୍ଦାବନର ଭିତରେ ପଶିଲେ ।
ସକଳ ପଦାର୍ଥ ଯେନାଇଁ ଗଲେ ।
ସିଂହାସନରେ ରାଇ ରାଜା ହେଲେ ।
ଧବଳ ଛତ୍ର ଅଛି ମସ୍ତକରେ ।
କାହାଳୀ ବଜାଏ କେବଣ ନାରୀ ।
ଆଲଟ ଚାମର କେ କରେ ଧରି ।
ବିଞ୍ଚଣୀ ବିଞ୍ଚନ୍ତି କେଉଁ ସୁନ୍ଦରୀ ।
ମଣିମା ତାଙ୍କ ନିରନ୍ତରେ କରି ।
ରାଇ ରାଜା ଆଜ୍ଞା ଦେଲେକ ପୁଣ ।
ଶତେ ଗୋପାଳୁଣୀ ଯାଅ ବହନ ।
ରମ୍ଭା ପତ୍ର ଆଣ ବନରୁ ତୋଳ ।
ଭୋଜନ କରିବା ସମସ୍ତେ ମିଳ ।
ବନଭୋଜ ଆଜ ବନରେ ହେବ ।
ତାହା ଶୁଣି ଗୋପୀ ଗଲେକ ବେଗ ।
ବନରୁ ପତର ତୋଳ ଆଣିଲେ ।
ଶତେ ଗୋପୀ ପୁଣି ଯମୁନା ଗଲେ ।
ଶତେ କଳସୀ ଯମୁନାରୁ ଜଳ ।
ଯେବଣ ଅଇଲେ ଯାଇଁ ସତ୍ୱର ।
ଶତେ ଗୋପାଳୁଣୀ ଗୋପକୁ ଗଲେ ।
ରାଇ ରାଜା ଆଜ୍ଞା ହୋଇଛି ବୋଲେ ।
ବାଳକ ତରୁଣୀ ବୃଦ୍ଧା ସହିତେ ।
ଯେନାଇଁ ଅଇଲେ ସଙ୍ଗେ ତୁରିତେ ॥
ଯଶୋଦା ରୋହିଣୀ ଆଣିଲେ ପୁଣ ।
ସମସ୍ତେ ମିଳିଲେ ଶ୍ରୀବୃନ୍ଦାବନ ।
ଦେଖିଲେ ରାଜା ଚନ୍ଦ୍ରାବଳୀ ହୋଇ ।
ମଣିମା ତାଙ୍କ ପାଶରେ ପଡ଼ଇ ।
ଧବଳ ଛତ୍ର ଆଲଟ ବିଞ୍ଚଣି ।
କାହାଳୀ ଶବଦେ କମ୍ପେ ମେଦିନୀ ।
ଗୋପରୁ ଯେତେ ଲୋକ ଆସିଥିଲେ ।
ରାଧିକା ରାଜା ହେବାର ଦେଖିଲେ ।

ଯଶୋଦା ରୋହିଣୀ ଦେଖିଣ ପୁଣ ।
ବିଚାର କରନ୍ତି ମନେ ହେଜିଣ ।୧୧୦।
ସ୍ୱର୍ଗ ସମ୍ପତ୍ତି ତ ଏ ଭୋଗ କରେ ।
କମଳା ଙ୍କ ଜାତ ଗୋପ ନଗରେ ।
ତାହା ଜାଣି ରାଧା ସୁନ୍ଦରୀ ପୁଣ ।
ସିଂହାସନରୁ ଉଠିଲେ ବହ୍ନନ ।
ଯଶୋଦା ପାଦେ ଓଲଗିଲେ ଯାଇ ।
କର ଧରିଣ ଯଶୋଦା ତୋଳଇ ।
ସମସ୍ତେ ବସି କରନ୍ତି ଭୋଜନ ।
ଷୋଳ ନାୟିକାସ୍ତେ ପରଶେ ପୁଣ ।
ରାଧିକା ବୃନ୍ଦକା ସେ ପୂର୍ଣ୍ଣିମାସୀ ।
ବୃନ୍ଦାବତୀଙ୍କ ଯେନାଣ ଚରଚ ।୧୧୫।
ଯଶୋଦା ସଙ୍ଗତେ ବସିଲେ ରାଈ ।
ରୋହିଣୀ ସଙ୍ଗେ ବୃନ୍ଦାବତୀ ଯାଇଁ ।
ବୃତୀ ଜଟିଳା ସଙ୍ଗରେ ବସିଲା ।
ପୂର୍ଣ୍ଣିମାସୀ ସର୍ବ ଚରଚ ଦେଲା ।

ଭୋଜନ ସାର ଆଚମନ କଲେ ।
ଷୋଳ ନାୟିକାସ୍ତେ ଭୁଞ୍ଜି ବସିଲେ ।
ସମସ୍ତେ ମିଳି ବନଭୋଜି କରି ।
ଦୁଧ ଛେନା ସର ଗୋଷ୍ଠିକା ଭରି ।
ପଇଡ଼ ନବାତ କଦଳୀ ସଙ୍ଗେ ।
ଆମ୍ବ ପଣସ ଖାଇ ସର୍ବେ ବେଗେ ॥
ଗୋପପୁରକୁ ଚଳିଲେ ବଦ୍ୱନ ।
ଆଗ ପଛରେ ଗୋପ ଗୋପୀ ପୁଣ ।
ମଧ୍ୟରେ ଷୋଳ ନାୟିକା ସଙ୍ଗରେ ।
ଚନ୍ଦ୍ରାବଳୀ ଗଲେ ରାଜବେଶରେ ।
ଗୋପ ନଗରେ ହେଲେ ପରବେଶ ।
କାହାଳୀ ବଜାଇ ଅତି ହରଷ ।
ଧବଳ ଛତ୍ର ତଳେ ରାଧା ବିଜେ ।
ସମସ୍ତେ ମେଲାଣି ହୋଇଣ ବେଗେ ।
ଚନ୍ଦ୍ରସେଣାପୁର ଶ୍ରୀମତୀ ଗଲେ ।
ଦନାଇ ଦାସ ସଙ୍ଗେ ଗୋଡ଼ାଇଲେ ॥



# ଏକବିଂଶ ଛାନ୍ଦ

ଏଥୁ ଅନନ୍ତରେ କହନ୍ତି ହର ।
ଶୁଣ ଗୋ ଗଉରି ଗୋପୀ ବିହାର ।
ଗୋପ ନଗରେ ସମସ୍ତେ ଜାଣିଲେ ।
ରାଧିକା ଏ ପୁରେ ରାଜା ହୋଇଲେ ।
ଯଶୋଦା କହିଲେ ନନ୍ଦଙ୍କୁ ପୁଣ ।
ଆଜ ବୃନ୍ଦାବନ ଦେଖିଲୁଁ ଜାଣ ।
ଗୋପ କାମିନୀ ଆସି ଡାକ ନେଲେ ।
ବନଭୋଜି ଅଛି ବୋଇଲେ ମୋରେ ।
ତାଙ୍କ ସଙ୍ଗେ ଯାଇଁ ଦେଖିଲି ପୁଣ ।
ରାଇ ରାଜା ହୋଇ ବୃନ୍ଦାବନେଣ ।
ନାନା ପଦାର୍ଥ ଭୋଜନ କରିଣ ।
ସମସ୍ତେ ଅଇଲୁଁ ଯେଝା ଭୁବନ ।
ନନ୍ଦ ବୋଇଲେ ସେ ଅଟେ କମଳା ।
କୃଷ୍ଣ ତାହାଙ୍କୁ ରାଜା କରି ଗଲା ।
ତାହା ଶୁଣିଣ ପାର୍ବତୀ ବୋଇଲେ ।
ପୁଣ କସ ଲୀଳା ରାଧିକା କଲେ ।
ଆର ଦିନ ପୁଣି କସ ହୋଇଲା ।
ତାହା ଶୁଣି ମୋର ମନ ବଳିଲା ।
ଈଶ୍ୱର କହନ୍ତେ ପାର୍ବତୀ ଶୁଣି ।
ପ୍ରଭାତୁଁ ଉଠି ସର୍ବ ଗୋପାଳୁଣୀ ।
ଚନ୍ଦ୍ରାବଳୀ ପୁରେ ମିଳିଲେ ଯାଇଁ ।
ଛେନା ଗୋହିକା ସର ସଙ୍ଗେ ନେଇ ।
ସମସ୍ତେ ମେଳ ହୋଇଣ ସ୍ୱଜନୀ ।
ବୃନ୍ଦାବନକୁ ଗଲେ ବେଗ କରି ।
କାଳିନ୍ଦୀ କୂଳେ ପ୍ରବେଶ ହୋଇଲେ ।
ସ୍ନାନ ସାରି ବାଲୁକା ପୂଜିଲେ ।
ମନାସିଲେ ବର ମାଗିଣ ତାଙ୍କୁ ।
ଛେନା ଦୁଧ ସର ଦେଇ ତାହାଙ୍କୁ ।
ସେଠାରୁ ଚଳିଲେ ଗୋପୀ ବନ୍ଦନ ।
ଯାଇଁ ମିଳିଲେ ଶ୍ୟାମକୁଣ୍ଡେ ପୁଣ ।
ଯୁଗଳ କୁଣ୍ଡରେ ସ୍ନାନ କଲେ ।
ଝୀନ ଶାଢ଼ୀମାନ ତନେ ପିନ୍ଧିଲେ ।
ଅର୍ଘ୍ୟ ବଢ଼ାଇଲେ ସୂର୍ଯ୍ୟଙ୍କୁ ପୁଣି ।
ପୂଜା କରିଣ ମାଗିଲେ ମେଲାଣି ।
ସେଠାରୁ ଚଳି ଯାନ୍ତି ଗୋପନାରୀ ।
ଯାନ୍ତି ଗୋପେଶ୍ୱର ଦର୍ଶନ କରି ।
ଛେନା ଗୋହିକା ସର ଯେତେ ଥିଲା ।
ଗୋପେଶ୍ୱରଙ୍କୁ ତାହା ଭୋଗ ହେଲା ।
ସମସ୍ତେ ବସିଣ ଭୁଞ୍ଜିଲେ ପୁଣ ।
ସନ୍ତୋଷ ହୋଇ କଲେ ଆଚମନ ।
ବର ମାଗିଣ ତହୁଁ ଚଳି ଗଲେ ।
ବୃନ୍ଦାବନର ମଧ୍ୟ ସ୍ଥଳୀ ଠାରେ ।
ରାଇ ବେଶ ହୋଇ ସିଂହାସନରେ ।
ବସିଣ ଭୋଜନ କଉଆ କରେ ।
ଧବଳ ଛତ୍ର ଟେକି ଧରେ ଗୋପୀ ।
ଆଲଟ ବିଞ୍ଚଣି ଆଗେ ପଡ଼ୁଛି ।
କାହାଳି ବଜାଏ ଦୃଢକା ପୁଣ ।
ସମସ୍ତ ଗୋପୀ ଅଛନ୍ତି ପାଶେଣ ।

୪-୨—ବୋଇଲେ ରଲେ (ତ) ।

ବୃନ୍ଦାବତୀ କଲେ ମୁରଲୀ ଧୂନି ।
ରାଧିକା ବୋଲଲେ ଶୁଣ କାମିନି । ୨୫ ।
କୃଷ୍ଣର ସନ୍ଦେଶ କସ ପାରୁଛ ।
କେଉଁଠାରେ ଛନ୍ତି ନନ୍ଦର ବଛ ।
ଲଳିତା ବୋଇଲେ ନ ଗଲୁ ଜଣା ।
ବଦଣା ପଢି ଯାଇ ଥିଲେ ଯେ କହ୍ନା ।
ରାଧିକା ବୋଇଲେ ଭେଟିବା ଦୃଢ ।
କେଉଁଠାରେ ଛନ୍ତି ଆମ୍ଭର ନାଥ ।
ତୁମ୍ଭେ ପାଞ୍ଚ ଜଣ ଗୋଗୋଷ୍ଠେ ଚଳ ।
ଦାମ ସୁଦାମ ଯେ ମଧୁ ମଙ୍ଗଳ ।
ଏହାଙ୍କୁ ଡାକିଣ ଆଣ ତୁରିତ ।
ତାଙ୍କୁ ଭେଟିବା ମଥୁରା ପୁରେ ତ । ୩୦ ।
ଶୁଣିଣ ସୁନ୍ଦରୀ ବହନ ଗଲେ ।
କୁଞ୍ଜବନରେ ତାଙ୍କୁ ଭେଟ ହେଲେ ।
ବୋଇଲେ ରାଜ ହୁକୁମରେ ଆସ ।
ଭେଟ ହୋଇଲେ କହିବେ ସନ୍ଦେଶ ।
ଶୁଣି ତିନ ଜଣ ଅଇଲେ ବେଗେ ।
ପ୍ରବେଶ ହେଲେ ରା[illegible] ରାଜା ଆଗେ ।
ରାଧିକା ବୋଇଲେ ଶୁଣ ପଣ୍ଡାଏ ।
ମଥୁରା ପୁରକୁ କର ବିଜୟେ ।
ଦାମ ସୁଦାମ ସଙ୍ଗତରେ ନିଅ ।
ଉଗ୍ରସେନ ରାଜା ଆଗରେ କହ । ୩୫ ।
ବୋଲିବ ପେଷିଲେ ରାଈ ନୃପଙ୍କୁ ।
ବୃନ୍ଦାବନେ ବିଜେ କରି ଅଛନ୍ତି ।
କୃଷ୍ଣଙ୍କୁ ଛାଡ଼ି ଦେବ ତାଙ୍କ ପାଶ ।
ନୋହିଲେ ଏଥିରେ ଦେବ ସନ୍ଦେଶ ।
ଅଛନ୍ତି କି ନାହିଁ ମଥୁରା କୃଷ୍ଣ ।
ଦେଖି ବୁଝିଣ ଆସିବ ତୁରିତ ।

ଭେଟ ଥିଲେ ତାଙ୍କୁ କହିବ ପୁଣି ।
ବୋଲିବ ମଲେଣି ଗୋପ ତରୁଣୀ ।
ଗୋପକୁ ଥରେ ବିଜୟ କରିବ ।
ଦେଖା ଦରଶନ ତାହାଙ୍କୁ ଦେବ । ୪୦ ।
ତୁମ୍ଭେ ଆସିଲୁ ଦିନୁଁ ବଡ ଦୁଖୀ ।
ନ ଗଲେ ମଲେଣି ଗୋପ ଯୁବତୀ ।
ଶୁଣି ତିନି ଜଣ ମଥୁରା ଗଲେ ।
ଉତ୍ତମ ବେଶ ତିନି ଜଣ ହେଲେ ।
ବଉଦିଆ ଛତା କାନ୍ଧରେ ଅଛି ।
ଖଡ଼ ନୋଳ ହସ୍ତେ ଶୋଭା ପାଉଛି ।
କୁସୁମ ଛନ୍ଦେ ବାନ୍ଧିଛନ୍ତି ବାଳ ।
ବେକରେ ପଡ଼ିଛି ରତ୍ନର ହାର ।
ଅଙ୍ଗୁଷ୍ଠିରେ ପୁଣି ସୁବର୍ଣ୍ଣ ମୁଦି ।
ପଇତା ଉଭୁର ହୃଦରେ ଭେଦି । ୪୫ ।
ପାନ ଖିଲିମାନ ତୁଣ୍ଡରେ ଅଛି ।
ପାନ ବଟୁଆ ହସ୍ତେ ଧରିଛନ୍ତି ।
ବେନି ଗୋଡ଼େ ମଖମଲ ପାଣ୍ଡୋଇ ।
ଷୀରୋଦ୍ର ପିନ୍ଧା ଦୋସତା ପିନ୍ଧାଇ ।
ସଜ ହୋଇଣ ହୋଇଲେ ବାହାର ।
ମଥୁରା ପୁରରେ ମିଳି ସତ୍ୱର ।
ପ୍ରବେଶ ହେଲେ ରାଜ ସିଂହଦ୍ୱାର ।
କହିଣ ତତରେ ମିଳିଲେ ଗୃର ।
ସଭା ତଳରେ ପ୍ରବେଶ ହୋଇଲେ ।
ରାମକୃଷ୍ଣ ବସିଛନ୍ତି ସଭାରେ । ୫୦ ।
ଉଗ୍ରସେନ ରାଜା ସହିତେ ପୁଣ ।
ସାତ ବଂଶ ଛନ୍ତି ଯାଦବ ପୁଣ ।
ଗାର୍ଗବ ଋଷି ଅନେକ ବ୍ରାହ୍ମଣ ।
ବିଜେ କରିଛନ୍ତି ସଭାରେ ପୁଣ ।

୨୭-୨ — ବଦ୍ୟା ପଢି ଯାଇଥିଲେକି କାହ୍ନା (କ) ବଦ୍ୟା ପଢ଼ି ଯାଇଥିଲେ ସେ କାହ୍ନା (ଗ) ।

ଉଦ୍ଧବ ବସୁଦେବ ବସିଛନ୍ତି ।
ପାତ୍ର ମନ୍ତ୍ରୀ ଯେ ସାମନ୍ତ ଅଛନ୍ତି ।
ରାମକୃଷ୍ଣଙ୍କୁ ଉଗ୍ରସେନ କହେ ।
କେତେ ଦିନ ଯାଏ ପ୍ରବେଶ ହୋଏ ।
ଅବନ୍ତୀ ନଗର ଅଟଇ କେଡ଼େ ।
କେତେକ ଘର ଅଛନ୍ତି ତହିଁରେ । ୫୬ ।
ସାନ୍ଦୀପନୀ ପଣ୍ଡା କସ କହିଲେ ।
କେତେ ଦିନ ବିଦ୍ୟା ପଢ଼ି ତହିଁରେ ।
ତହୁଁ କସ କଲ କହ ହେ ହରି ।
ଶୁଣିଣ କହିଲେ କୁଞ୍ଜବିହାରୀ ।
ବୋଇଲେ ଶୁଣ ରାଜାଧିରାଜନ ।
ଏଠାରୁ ଗଲୁଁ ଅମ୍ଭେ ତିନ ଜଣ ।
ପାଞ୍ଚ ଦିନେ ଯାଇଁ ସେଠାରେ ହେଲୁ ।
ସାତଦିନ ବିଦ୍ୟା ତହିଁ ପଢ଼ିଲୁ ।
ଦକ୍ଷିଣା ମାଗିଲୁଁ ଗୁରୁଙ୍କୁ ପୁଣ ।
ସେ ବୋଇଲେ ଦିଅ ମଲ୍ଲ ନନ୍ଦନ ।୬୦।
ତାଙ୍କଠାରୁ ଶୁଣି ଚନ୍ଦନ ଗଲୁଁ ।
ଯମ ଭୁବନେ ପ୍ରବେଶ ହୋଇଲୁଁ ।
ଯମଙ୍କୁ କହିଲୁ ସକଳ କଥା ।
ବୋଇଲେ ନାହିଁ ସାନ୍ଦୀପନୀ ସୁତା ।
ଶୁଣହେ ରାଜା ବସୁଦେବ ପୁତ୍ରେ ।
ତାହାଙ୍କୁ ମୁହିଁ ରଖିଛି ଗୁପତେ ।
ମୋର ବ୍ୟାଧି ତୁମ୍ଭେ ଖଣ୍ଡନ କର ।
ଛଡ଼ ଭାଇଙ୍କି ଯେ ନିଅ ତୁମ୍ଭର ।
ଶୁଣନ୍ତେ ବ୍ୟାଧି ହରଣ ହୋଇଲା ।
ଛଡ ଭାଇ ଆଣି ପାଶରେ ଦେଲା ।୬୬।
ତହୁଁ ବରୁଣ ପୁରରେ ମିଳିଲୁ ।
ସାନ୍ଦୀପନୀ ଛଡ଼ ପୁତ୍ର ଆଣିଲୁ ।

ଅବନ୍ତୀ ନଗରେ ହେଲୁଁ ପ୍ରବେଶ ।
ପୁତ୍ର ପାଇବାକୁ ତେତେ ସନ୍ତୋଷ ।
ମେଲାଣି ମାଗି ଆସିଲୁ ସେଠାରୁ ।
କୁଣ୍ଡି ନଗରେ ଉଦ୍ଧବ ଦେଖିଲୁ ।
ଭୀଷ୍ମଙ୍କ ଦୁଲଣୀ ଅଟେ ରୁକ୍ମଣୀ ।
ତାଙ୍କ ନିମନ୍ତେ ସ୍ୱୟମ୍ବର ସିନା ।
ଲକ୍ଷେ ରାଜା ଛନ୍ତି ତାଙ୍କର ପୁରେ ।
ଅମ୍ଭଙ୍କୁ ଦେଖି ଭାଷିଲେ ସକଳେ ।୭୦।
ସେଠାରୁ ସୁରଥ ସଙ୍ଗରେ ପୁଣ ।
ଛଡ ଭାଇଙ୍କି ଭେଟ ଦେଲୁ ଜାଣ ।
ଅମ୍ଭେ ଦୁଇ ଭାଇ ସ୍ୱର୍ଗଙ୍କୁ ଗଲୁଁ ।
ଯଶୋବନ୍ତୀ ପୁରେ ପ୍ରବେଶ ହେଲୁଁ ।
ଗାୟତ୍ରୀ ସାବିତ୍ରୀ ସେ ଚତୁର୍ମୁଖ ।
ଅମ୍ଭଙ୍କୁ ଦେଖିଣ ବଳିତ ସୁଖ ।
ବେଦ ବିଦ୍ୟା ହୋମ ବେଗେ ସେ କଲେ
ଦୁଇ ଭାଇଙ୍କି ଯଜ୍ଞସୂତ୍ର ଦେଲେ ।
ବରତ ହୋଇ ସେଠାରୁ ଅଇଲୁ ।
କାଲି ରଜନୀରେ ପ୍ରବେଶ ହେଲୁ ॥
ସକଳ କଥା କହିଲେ ଶ୍ରୀହରି ।
ମଧୁମଙ୍ଗଳ ସଭା ପରେ ମିଳି ।
ବୋଇଲେ ଶୁଣ ହେ ମଥୁରା ରାଜା ।
ହୁକୁମ କରଛନ୍ତି ରାଇ ରାଜା ।
ପାହାଡ଼ା ପାଡ଼ଣି ହୁକୁମ ଘେନ ।
ଯାହା ଲେଖିଛନ୍ତି କର ଶ୍ରବଣ ।
ବୃନ୍ଦାବନରେ ରାଜା ହେଲା ଧନ୍ଦୁ ।
ଦେଖା ଦରଶନ ନ ଦେଲେ ସେଣୁ ।
ଦୂତ ପଣରେ ଅମ୍ଭଙ୍କୁ ଡେକଲେ ।
ତାହା ଶୁଣି ଉଗ୍ରସେନ କହିଲେ ।୮୦।

୫୬ । ଅବନ୍ତୀ ନଗ୍ର ଅଟେ କେତେଦୂର । କେତେକ ଅଛନ୍ତି ତହିଁରେ ଘର (ଖ) ।

ଆମ୍ଭଙ୍କୁ ତ ଜଣା ନାହିଁ ଏ କଥା ।
କସ ଲେଖିଛନ୍ତି ଔଲୋକ୍ୟମାତା ।
ଆମ୍ଭେ ସବୁ ବନେ ତାଙ୍କର ସିନା ।
ସେ ମୋତେ ରାଜା ପଣ ଦେଲେ କି ନା ।
ଉଠିଣ ପାମ୍ଭେଡ଼ା ପାତ ଶୋଇଲେ ।
ଲେଖା ନେଇଣ ଶିରେ ଲଗାଇଲେ ।
ଋଷି ବୋଇଲେ ଏ କହୁଁ ଭଆଣ ।
କଥା ନ ଚଳି ମାନ କର ପୁଣ ।
ରାଜା ବୋଇଲେ ତୁମ୍ଭେ ହେ ନ ଜାଣ ।
ସେ ରାଜା ଆଗେ ଆମ୍ଭେ ପଛେ ପୁଣ ।
ଯାର ଛାମୁରେ କୃଷ୍ଣ କହୁଥିଲ ।
ହୁକୁମ ମାନନ୍ତି ଶିର ଉପର । ୮୫ ।
ଯାହାର ବୋଲେ ରାହାସ ମଣ୍ଡଳୀ ।
ରାମ କୃଷ୍ଣ ଅଟେ ଯା ଆଜ୍ଞାକାରୀ ।
ପୂର୍ଣ୍ଣମାସୀ ଗୋପେଶ୍ୱର ଦେବତା ।
ଯାହାର ପାଶରେ ନିତ୍ୟେ ଉଗତା ।
ସେ ରାଧା ଚରଣେ ମୋର ଶରଣ ।
ସେ ଲେଖା ଗୋଟି ଯେ ପଢ଼ ଆପଣ ।
ଋଷି ତତ୍‌କ୍ଷଣେ ଲେଖାକୁ ଧଇଲେ ।
ରାଜାଙ୍କ ଆଗରେ ପଢିଲେ ଭଲେ ।
ରାଇ ରାଜାର ମଥୁରା ରାଜାକୁ ।
ଶ୍ରୀମୁଖ ଲେଖା ଲେଖିଲୁ ତୁମ୍ଭଙ୍କୁ । ୯୦ ।
ରାମକୃଷ୍ଣଙ୍କୁ ଏଥୁଁ ନେଇଗଲ ।
ନଷ୍ଟିକ୍ତି ହୋଇଣ ତେଣେ ରଖିଲ ।
ଆମ୍ଭେ ନ ଦେଖି ଝୁରି ମରୁଅଛୁଁ ।
ପଠିଆଇ କମ୍ପା ନ ଦେଲ ତାଙ୍କୁ ।
ଏବେ ଭଲପଣ ଜଣା ଗଲାଣି ।
ଦୂତ ସଙ୍ଗେ ତାଙ୍କୁ ଭେଜିବ ପୁଣି ।
ନୋହିଲେ ଏଥିର ଭାଷା କହିବ ।
ଲକ୍ଷେ ସୁବର୍ଣ୍ଣ ଏହା ସଙ୍ଗେ ଦେବ ।
କନକ ସ୍ନାହାନ ହେବ ଆମ୍ଭର ।
ଅଭିଷେକ ହେବୁଁ ବୃନ୍ଦାବନର ।
ଯେବେ ଏକଥା ତୁମ୍ଭେ ନ କରିବ ।
ତେବେ ଯୁଝିବାକୁ ସଜ ହୋଇବ ।
ତୁମ୍ଭେ ତ ରାଜା ମଥୁରାରେ ଅଛ ।
ଯାଦବଂଶ ଘେନି କୃଷ୍ଣଙ୍କୁ ଖଚ ।
ଆମ୍ଭେ ତ ରାଜା ଅଛୁ ବୃନ୍ଦାବନେ ।
ଷୋଳସସ୍ର ଗୋପୀ ଖଟେ ଚରଣେ ।
ଆମ୍ଭର ସ୍ୱାମୀ ଅଟେ ନାରାୟଣ ।
ନବଲକ୍ଷ ଘର ଗୋପରେ ପୁଣ ।
ଏମନ୍ତ ଲେଖା ସେ ରାଜା ଶୁଣିଲେ ।
ରାମକୃଷ୍ଣଙ୍କୁ ଗୃହିଁଣ ବୋଇଲେ । ୧୦୦ ।
ତୁମ୍ଭ ଯିବାକୁ ଲେଖିଛନ୍ତି ରାଈ ।
ଯିବ କି ରହିବ କହ ଗୋସାଇଁ ।
ଶ୍ରୀକୃଷ୍ଣ ବୋଇଲେ ଯିବାକୁ ଜାଣ ।
ସମୟେ ହେଲେ ଆମ୍ଭେ ଯିବୁ ପୁଣ ।
କାଲି ତ ଆମ୍ଭେ ଆସିଛୁ ଏଥକୁ ।
ବିଚାର କରି ଯିବା ସେ ଠାବକୁ ।
ରାଈ ରାଜାର ଦୂତ ଆସିଛନ୍ତି ।
ଯାହା ମାଗନ୍ତି ଦିଅ ହେ ନୃପତି ।
ଶୁଣି ଭୋଜରାଜା ବୋଇଲେ ପୁଣ ।
ତାଙ୍କ ହୁକୁମ କି ହେବ ମେଣ୍ଟଣ ।୧୦୫।
ଏତେ ବୋଲିଣ ବେଗେ ଉଠିଗଲେ ।
ଭଣ୍ଡାର ଘରେ ପ୍ରବେଶ ହୋଇଲେ ।
ଲକ୍ଷେ ସୁବର୍ଣ୍ଣ ଗଣି ଢାଳିଲେ ।
ଶତେ ଭାରୁଆ ଡାକ ମଗାଇଲେ ।

୮୯-୨—ରାଜାଙ୍କ ଅଙ୍କରେ ପଡିଲେ ଭଲେ (ଚ) । ୧୦୧-୧—ତୁମ୍ଭ ଯିବାକୁ ଛନ୍ଦ ବାଟ ମୁହିଁ (ଚ) ।
୧୦୨-୨—ହୁକୁଅ (ଖ,ଚ) ।

ଦାମ ସୁଦାମ ମଧୁମଙ୍ଗଳଙ୍କୁ ।
ବହୁତ ବୁଝାଇ କହିଲେ ତାଙ୍କୁ ।
ଠାକୁରାଣୀଙ୍କି ମୋର ନମସ୍କାର ।
ମୋଠାରେ ସୁଦୟା ଥିବ ତାଙ୍କର ।
ମୋର ମିନତି ତାଙ୍କ ଆଗେ କହି ।
ମୋଠାରେ ସବୁଦିନେ ଥିବ ସ୍ନେହ ॥
ଖଡ଼ୁ ବୋଳ ନାନା ବେଶ କରଣ ।
କହିଣ ମେଲାଣି କଲେ ବନ୍ଦନ ।
ସେଠାରୁ ତିନ ଜଣ ଚଳିଗଲେ ।
ରାମ କୃଷ୍ଣଙ୍କ ଚରଣେ ନମିଲେ ।
ବୋଇଲେ ବଜେ ବର ଗୋପପୁର ।
ଗୋପୀମାନଙ୍କର ବିରହ ବଡ଼ ।
ରାଧା କହୁଛନ୍ତି ତୁମ୍ଭେ ଯିବାକୁ ।
ଯଶୋଦା ଗୋଡ଼ାଇ ଅଛେ ବାଟକୁ ।
ଝୁରି ମରୁଛନ୍ତି ସକଳେ ପୁଣ ।
ଯାଇଣ ପ୍ରବୋଧି ଅସ ଅପଣ । ୧୧୫ ।
କୃଷ୍ଣ ବୋଇଲେ ବଡ଼ ହିତ ଏଥି ।
ଜରାସନ୍ଧ ଅମ୍ଭ ଶତ୍ରୁ ହୋଇଛି ।
ଲକ୍ଷେ ରାଜା ଯେତେ କଉରବ ହିତ ।
କହିବ ଅମ୍ଭି ନ ପାରେ ଗୋବିନ୍ଦ ।
ପଞ୍ଚ ଗୋଷ୍ଠକେ ଲେଖିଲେ ଶ୍ରୀଧର ।
ମଧୁମଙ୍ଗଳ ହସ୍ତେ ମୁଦି କରି ।
ଉଗ୍ରସେନ ରାଜା ଚିଠାଉ ଦେଲେ ।
ବହୁତ ମିନତି ତହିଁ ଲେଖିଲେ ।
ମେଲାଣି ହୋଇ ତହୁଁ ଚଳି ଗଲେ ।
ବୃନ୍ଦାବନରେ ପ୍ରବେଶ ହୋଇଲେ ॥
ଭାଷା ଲେଖା ଛମୁରେଣ ଦେଇଣ ।
ରାମ କୃଷ୍ଣଙ୍କ କଥା କହି ପୁଣ ।
ଶତେ ଭାରୁଆ ଭାର ଯୋଗ କରି ।
ଦର୍ଶନ କଲେ ରାଜା ଦଣ୍ଡଧାରୀ ।
ସିଂହାସନରୁ ଉଠି ରାଇ ରାଜା ।
ବୋଇଲେ ଭଲ ଗୋ ଗୋପକୁ ଯିବା ।
ଲକ୍ଷେ ସୁବର୍ଣ୍ଣ ସଙ୍ଗତରେ ଦେଇ ।
ଚନ୍ଦ୍ରଶାଳା ପୁରେ ପ୍ରବେଶ ପୁଣି ।
ବ୍ରଜପୁରନ୍ଦଙ୍କି ମେଲାଣି ଦେଲେ ।
ରାଜାଲୋକଙ୍କୁ ପଡ଼ିରେଷେ ଗଲେ ॥
ଗୋପୀମାନେ ସବୁ ମିଳିଲେ ଘର ।
ଦାସ ଦିନାଇଁ ସେବିଲା ପୟର ।

୧୧୧-୧—ଛାମୁରେ ଦେଇଣ (ଖ ଛ) । ୧୨୭-୨—ସେବିଲ ପୟର (କ) ।



# ଦ୍ୱାବିଂଶ ଛାନ୍ଦ

ଉମା ବୋଇଲେ ମହେଶ୍ୱର ଶୁଣ ।
ପୁଣି କସ କଲେ ଗୋପିକାଗଣ । ୧ ।
ଅଭିଷେକ ପୁଣି କରୂପେ ହେଲେ ।
କନକ ସ୍ନାନ କେହୁ କରାଇଲେ ।
କର୍ପୂର ମୃନ୍ଦ ଅଁସି ନୀତ କହିଲେ ।
ଏ କଥା କହ ଦେବ ମୋତେ ଭଲେ ।
କହନ୍ତି ଈଶ୍ୱର ଶୁଣନ୍ତି ଉମା ।
ଯେଣ୍ଟା ଘରେ ଗୋପକାମିନୀ ସିନା ।
କୃଷ୍ଣ ଗୁଣ ଗୁଣି ରଜନୀ ପାହି ।
ଆରଦନ ରାଧା ପୁରକୁ ଯାଇ । ୫ ।
ପଙ୍କ୍ତି ପଙ୍କ୍ତି ହୋଇ ପ୍ରବେଶ ହେଲେ ।
ଚନ୍ଦ୍ରଶାଳା ପୁରେ ଭୁରତେ ମିଳେ ।
ବୋଇଲେ ଚାଲ ଯିବା ଯମୁନାକୁ ।
ସ୍ନାନଦାନ କରି ପୂଜିବା ହରଙ୍କୁ ।
ଗୋପେଶ୍ୱରଙ୍କୁ ଦର୍ଶନ କରିବା ।
ଉଦସୃନାଥ ଅର୍ଘ୍ୟ ବନାଇବା ।
ଏତେ ବୋଲି ଉଠି ସକଳ ଗୋପୀ ।
ଆଗେ ବୃନ୍ଦାବତୀ ସଙ୍ଗରେ ଦୂତୀ ।
ପୂର୍ଣ୍ଣିମାସୀ ସଙ୍ଗେ ରାଧିକା ପୁଣ ।
ତାଙ୍କ ପଛେ ସର୍ବ ଗୋପିକାଗଣ ।୧୦।
ଯମୁନା ଯାଇଣ ହେଲେ ପ୍ରବେଶ ।
ସ୍ନାନଦାନ କଲେ ବଂଶୀବଟ ପାଶ ।
ବାଲୁକା ପୂଜି ତହୁଁ ଚଳ ଗଲେ ।
କାଳିନ୍ଦୀକୂଳେ ପ୍ରବେଶ ହୋଇଲେ ।
ତହିଁ ରବିଙ୍କି ଅର୍ଘ୍ୟ ବନାଇଣ ।
ଗୋପେଶ୍ୱରଙ୍କୁ କଲେ ଦରଶନ ।
ସେଠାରୁ ଚଳିଲେ ବୃନ୍ଦାବନକୁ ।
ପୁଷ୍ପବନରୁ ପୁଷ୍ପ ତୋଳିବାକୁ ।
ସମସ୍ତେ ପଶିଣ ତୋଳିଲେ ଫୁଲ ।
ଫୁଲବନରୁ ହୋଇଲେ ବାହାର ।୧୫।
ଫୁଲମାନ ସବୁ ମାଳ ଗୁନ୍ଥିଲେ ।
ରାଧିକା ପାଶେ ପରବେଶ ହେଲେ ।
ଦେଖି ଚନ୍ଦ୍ରାବଳୀ ମନେ ହରଷ ।
ବୋଇଲେ ଶୁଣ ଗୋ କୃଷ୍ଣ ସନ୍ଦେଶ ।
ଲେଖିଛନ୍ତି ହରି କର୍ପୂର ପ୍ରକାରେ ।
ମଧୁମଙ୍ଗଳ ପଣ୍ଡାଙ୍କ ହସ୍ତରେ ।
ଶୁଣି ସର୍ବ ଗୋପୀ ସନ୍ତୋଷ ହେଲେ ।
ଲେଖା ନେଇଣ ଲଳିତାଙ୍କୁ ଦେଲେ ।
ଚନ୍ଦ୍ରାବଳୀଙ୍କି ଆମ୍ଭର ଚଟାଉ ।
ମନରେ ଦୁଃଖ ନ କରିବ ଆଉ ।୨୦।
ଯହିଁ ଥିଲେ ଅମ୍ଭେ ତୁମ୍ଭର ସିନା ।
ନ ଦେଖି କପାଇଁ ହୁଅ ବିମନା ।
ଦୁଷ୍ଟ ନିବାରଣେ ଆମ୍ଭର ଜାତ ।
ଏବେ ଆମ୍ଭଙ୍କୁ ପଡ଼ିଛି ସଙ୍କଟ ।
କଂସ ଶ୍ୱଶୁର ଜରାସନ୍ଧ ପୁଣ ।
ଆମ୍ଭର ବଇରୀ ସେ ଅଟେ ଜାଣ ।
ଲକ୍ଷେ ରାଜା ଯେନ କରିଛି ମେଳ ।
ଆମ୍ଭଙ୍କୁ ମାରିବ ବୋଲିଣ ଭାଳ ।
ଅମ୍ଭେ ଗଲେ ରାଜା ନ ରହେ କ୍ଷଣେ ।
ସମସ୍ତେ ବୋଲିବେ ଲୁଚିଲେ କେଣେ ॥

ଦିନା କେତେ ପୁଣି ରହି ଏଠାରେ ।
ଗୋପପୁରକୁ ଯିବୁ ଆମ୍ଭେ ଥରେ ।
ବ୍ରଜସୁନ୍ଦରୀଙ୍କି କହି ବୋଧିବ ।
ଗୋପ ନବର ପରଜା ପାଳିବ ।
ପୂର୍ଣ୍ଣିମାସୀଙ୍କି ଯେନ ସଙ୍ଗତରେ ।
ଚନ୍ଦ୍ରା ନ ଛାଡ଼ିଥିବ ନିଶ୍ଚିନ୍ତରେ ।
ତାତ ଜନନୀଙ୍କି କହିବ ମୋର ।
ବୋଲିବ ଗୋବିନ୍ଦ ଆସିବ ତୋର ।
ଏମନ୍ତ ବୋଲି ଲଳିତା କହିଲେ ।
ଦାମ ସୁଦାମଙ୍କ ମୁଖୁ ଶୁଣିଲେ ।
ଶୁଣିଣ ବିରହ ଗୋପର ନାରୀ ।
ହା ହା କୃଷ୍ଣ ବୋଲି ଭୂମିରେ ପଡ଼ି ।
ରୋଦନ କରନ୍ତି ସକଳ ଗୋଈ ।
ଯେସନେ ସମୁଦ୍ର ଉଚ୍ଛୋଳ ହୋଇ ।
କେ ବୋଲଇ କେଣେ ଗଲ ହେ ହରି ।
ଗୋପ ଯୁବତୀଙ୍କି ଅନାଥ କରି ।
କେ ବୋଲେ ବୃନ୍ଦାବନେ ଲୀଳା କରି ।
ଛାଡ଼ି କରି କେଣେ ଗଲ ନାଗର ।
କେ ବୋଲେ ନୟନ-ପିତୁଳା ତୁମ୍ଭେ ।
ଜାଣିଥିଲୁଁ କି ତେଜି ଯିବ ଏବେ ।
କେତେ ଭାବ କେତେ ଦିନକୁ କଲ ।
ଶୁଭ ଦିନକୁ କହି ନ ଆସିଲ ।
ରୋଦନ କରି ବାହୁନନ୍ତି ଗୁଣି ।
ପ୍ରବୋଧ କଲେ ଚନ୍ଦ୍ରାବଳୀ ପୁଣି ।
ଜଣେ ଜଣେ କରି ବୁଝାଇ କହି ।
ଅଳପ ଦିନେ ଆସିବେ ମାଧୋଇ ।
ଅରତ ହେଲେ ନ ସରିବ ଦିନ ।
ବିଦେଶେ ଯାଇଛନ୍ତି କାହ୍ନୁ ପୁଣି ।
ପ୍ରତିଦିନ ରତି ସୁରତି ନୁହେ ।
ଭୋଜନ କି ସମତୁଲରେ ରହେ ।
ସ୍ତ୍ରୀ କି ବାପଘରକୁ ନ ଯାନ୍ତି ।
ପୁରୁଷ ତନ୍ହିଁ କି ଝୁରି ମରନ୍ତି ।
ବାପ ଥାନ୍ତେ ପୁଅ ମରଇ ପୁଣି ।
କେହି କାହା ସଙ୍ଗେ ନ ଯାଏ ଜାଣି ।
ମାଆ ସଙ୍ଗେ ଝିଅ ନ ରହେ ପୁଣି ।
ଜନନୀର କେତେ ସୁଖ ତ ଜାଣି ।
ରୋଦନ ନ କର ଗୋପସୁନ୍ଦରୀ ।
ବଡ଼ ଜଞ୍ଜାଳ ହୋଇଛି ତାଙ୍କର ।
ଦୁଇ ରାଜାଙ୍କୁ ଲକ୍ଷେ ରାଜା ପୁଣି ।
ଘୋଟିଛନ୍ତି ରାହୁ ଚନ୍ଦ୍ରେ ଯେସନ ।
ମାରଣ ଶତ୍ରୁ କାମ୍ୟ ହୋଉ ପୁଣି ।
ଜଗତଜଣା ହୋନ୍ତୁ ନାରାୟଣ ।
ପ୍ରଭୁ ହୋଇଲେ ହେବା ଠାକୁରାଣୀ ।
ଗୋପାଳ ହେଲେ ଗୋପାଳୁଣୀ ଜାଣି ।
ନୀଚ ହୋଇଲେ କେହି ନ ମାନିବ ।
ବଡ଼ ହେଲେ ପୂଜା ଆମ୍ଭଙ୍କୁ ହେବ ।
ସମସ୍ତେ ଧର୍ମ ସୁମରଣା କର ।
ଲକ୍ଷେ ରାଜା ମାରୁ ନନ୍ଦକୁମର ।
ଦୈତ୍ୟଙ୍କୁ ନାଶି ଆମ୍ଭ ପୁର ଆସୁ ।
ରତି ସୁରତି ଦେଇ ମନ ତୋଷୁ ।
ଶ୍ରୀମତି କହିବାରୁ ତୋଷ ହେଲେ ।
ଅଙ୍କିରା ଯାଇ ପ୍ରବେଶ ହୋଇଲେ ।
ଦେଖି ଚନ୍ଦ୍ରାବଳୀ ପାଦେ ଓଳଗ ।
ଋଷି ବୋଇଲେ ହୋଉ ଭକ୍ତି ଭାବ ।

୨୭-୧—ଗୋପ ନଗର (ଖ,ଗ,ଛ) । ୩୧-୧—ବିରହ ଗୋପର ନାରୀ (ଘ,ଛ) । ୩୨-୨—ଯେସନେକି ସିନ୍ଧୁ ଉଚ୍ଛୋଳ ହୋଇ (ଜ) । ୩୮-୧—ଜଣେ ଜଣେ କରି ପ୍ରବୋଧି କହି (ଟ) ।

ନାରାୟଣ ଦଣ୍ଡେ ନ ଛାଡ଼ୁ ତୋତେ ।
ଯୁଗକୁ ଯୁଗ ଥାଅ ଗୋ ସଙ୍ଗତେ ।
ଗୋପ-ସୁନ୍ଦରୀ ସ୍ୱର୍ଗପୁର ଯିବ ।
ଏ ଜନ୍ମ ନାରାୟଣ ସଙ୍ଗେ ଥିବ ।
ରାଧିକା ବୋଇଲେ ହେ ଦେବଋଷି ।
କର୍ଣ୍ଣ ଉପଦେଶ ଅମ୍ଭଙ୍କୁ ଦେ'ସି ।
ସମସ୍ତଙ୍କ କର୍ଣ୍ଣେ କହିବ ଜ୍ଞାନ ।
ଆମ୍ଭର ଭକ୍ତି ଯେଣ ମୁନି ପୁଣ ।
ଶୁଣି ମହାମୁନି ସନ୍ତୋଷ ହେଲେ ।
ରାଧିକା କର୍ଣ୍ଣେ ମହାମନ୍ତ୍ର ଦେଲେ ।
ଗୋପସୁନ୍ଦରୀ ସମସ୍ତଙ୍କୁ ପୁଣ ।
ମନ୍ତ୍ର ଦେଇଣ କଲେକ କାରଣ ।
ବୋଇଲେ ଶୁଣ ଗୋ ଶ୍ରୀମତି ତୁମ୍ଭେ ।
କନକ ସ୍ନାନ କରାଇବା ଆମ୍ଭେ ।
ବେଗେ ଅଣାଅ ଲକ୍ଷେକ ସୁବର୍ଣ୍ଣ ।
ଆଜର ଦିନ ଭଲ ଅଛୁ ପୁଣ ।
ତାହା ଶୁଣି ଚନ୍ଦ୍ରାବଳୀ ଆନନ୍ଦ ।
ବୋଇଲେ ଚଲ ଗୋ ଗୋପିକାବୃନ୍ଦ ।
ଗୋପରେ ଯେତେକ ଅଛନ୍ତି ଜନ ।
ଡାକଣ ଅଣ ଯାଇ ତତକ୍ଷଣ ।
ଯଶୋଦା ରୋହିଣୀ ସଙ୍ଗେ ସମସ୍ତ ।
ଘେନିଣ ବେଗେ ଆସିବ ତୁରିତ ।
ତାଙ୍କଠାରୁ ଶୁଣି ସୁନ୍ଦରୀ ଗଲେ ।
ଗୋପ-ତରୁଣୀ ଗୋପାଳ ଅଣିଲେ ।
ନନ୍ଦ ଯଶୋଦା ରୋହିଣୀଙ୍କ ଘେନି ।
ପ୍ରବେଶ ହେଲେ ବୃନ୍ଦାବନେ ପୁଣି ॥
ଗହଳ ଦେଖି ରାଧା ବେଗେ ଗଲେ ।
ସହସ୍ରେ ସୁନ୍ଦରୀ ସଙ୍ଗରେ ନେଲେ ।
ଚନ୍ଦ୍ରଶାଳା ପୁରେ ମିଳଲେ ଯାଇଁ ।
କବାଟ ଫେଡ଼ଣ ପଶିଲେ ତହିଁ ।
ଲକ୍ଷେକ ସୁବର୍ଣ୍ଣ ଘେନି ବହନ ।
ଧୀର ଧୀର କରି କରେ ଗମନ ।
ବୃନ୍ଦାବନରେ ପରବେଶ ହେଲେ ।
ହୁଳହୁଳ ଦେଖି ସମସ୍ତେ ଦେଲେ ।
ବେଦ ଧ୍ୱନି କଲେ ଅଙ୍ଗିରା ଋଷି ।
ସିଂହାସନ ପରେ ରାଧିକା ବସି ।
ଲକ୍ଷେ ସୁବର୍ଣ୍ଣ ଗୁଡ଼ କଲେ ତହିଁ ।
ମଧ୍ୟରେ ବସିଛନ୍ତି ଚନ୍ଦ୍ରମୁହିଁ ।
କନକ ସ୍ନାନ ହେଲା ଯେତେବେଳେ ।
ସ୍ୱର୍ଗ ଦେବତା ପୁଷ୍ପ ବୃଷ୍ଟି କଲେ ।
ଅପ୍ସରୀ ଗଣ କରନ୍ତି ନୃତ୍ୟ ।
ଦୁନ୍ଦୁଭି ଶବଦ ହେଲା ବହୁତ ।
ହୁଳହୁଳ ଦେଲେ ସକଳ ନାରୀ ।
ଶବଦ ବୃନ୍ଦାବନ ଯାକ ପୂରି ।
ଧବଳ ଛତ୍ର ଚନ୍ଦ୍ରାବଳୀ ଶିରେ ।
ନେଇଣ ଧରିକା ଟେକେ ଉପରେ ।
କାହାଳୀ ବଜାଏ ଲଳିତା ପୁଣି ।
ବଶାଖା ଧରି ବଇଁଶୀ ବଇଁଶଣି ।
ରଙ୍ଗଦେବୀ ତହିଁ ଆଳଟ ଢାଳେ ।
ପଖା ସୁଦେବୀ ପକାଏ ଅଗରେ ।
ମଣିମା ତାଳ ଦଅଇ ମାଳତୀ ।
ସାବଧାନ ହୁଅ ମଲ୍ଲୀ ବୋଲନ୍ତି ।
କୁଞ୍ଜଲତା ତହିଁ ଚଅଁର ଢାଳେ ।
ଖଟଣି ଲୋକେ ଖଟନ୍ତି ଅଗରେ ।

୫୭-୧—ସମସ୍ତଙ୍କ ଦାନେ (ଗ)। ୬୨-୨—ଡାକ ଅଣ ଗୋ ଯାଇ ତତକ୍ଷଣ (ଘ,ଚ)। ୭୯-୧—ବୃନ୍ଦଲତା
(ଖ,ଘ,ଚ)।

ବୃନ୍ଦାବତୀ ପୂର୍ଣ୍ଣିମାସୀ ଯେ ପୁଣ ।
ପରୀକ୍ଷା ପଣ କଲେ ସେହୁ ଦିନ ।୮୦।
ଅଙ୍ଗିରା ଋଷି ବେଦ ଧ୍ୱନି କଲେ ।
ନାୟିକା ମିଳି ସ୍ନାନ କରାଇଲେ ।
କନକ ସ୍ନାନ ଚନ୍ଦ୍ରାବଳୀ ସାରି ।
ସିଂହାସନରୁ ଉଠିଲେକ ନାରୀ ।
ବୃନ୍ଦାବତୀ ବସେ ସିଂହାସନରେ ।
କନକ ସ୍ନାନ କଲେକ ସତ୍ୱରେ ।
ପୂର୍ଣ୍ଣିମାସୀଙ୍କି ସ୍ନାନ କରାଇଲେ ।
ଲଳିତା ବିଶାଖା ସ୍ନାହାନ କଲେ ।
ବାର ନାୟିକାଏ ସ୍ନାହାନ କଲେ ।
କନକ ସ୍ନାନ ସରନ୍ତ ସେଠାରେ ।୮୫।
ଅଙ୍ଗିରା ଋଷିଙ୍କି ଦେଲେ ସୁବର୍ଣ୍ଣ ।
ଦଶ ସହସ୍ର ନେଲେ ଋଷି ପୁଣ ।
ବୃନ୍ଦାବତୀ ଦଶ ସହସ୍ର ନେଲେ ।
ସହସ୍ରେ ଲେଖାଏଁ ନାୟିକା ନେଲେ ।
ପାଞ୍ଚ ସୁନଅଁା ଗୋପୀ ଗୋଟିକେ ।
ବାଣ୍ଟିଣ ଦେଲେ ଚନ୍ଦ୍ରାବଳୀ ହସ୍ତେ ।
ପୂର୍ଣ୍ଣିମାସୀ ବୃତ୍ତି ନେଲେକ ପୁଣ ।
ଚାରି ସହସ୍ର ଲେଖାଏଁ ପ୍ରମାଣ ।
ରାଇ ଯଶୋଦାଙ୍କୁ ଡାକିଣ ପୁଣ ।
ଦୁଇ ସସ୍ତ ଦେଲେ ସୁବର୍ଣ୍ଣ ଜାଣ ।୯୦।
ଆନନ୍ଦ ହୋଇ ବହୁତ କହିଲେ ।
ଶୋକ ନ କର ତୁମ୍ଭେ ଗୋ ମନରେ ।
ଆସିବେ ନନ୍ଦନ ଅଳପ ଦିନେ ।
କପାଇଁ ଦୁଖ କରୁଅଛ ମନେ ।
ଦାମ ସୁଦାମ ମଧୁମଙ୍ଗଳଙ୍କୁ ।
ସୁବର୍ଣ୍ଣ ଦେଇ ମେଲାଣି ତାହାଙ୍କୁ ।
ସମସ୍ତଙ୍କ ମନ ତୋଷ କରଣ ।
ଗୋପେଶ୍ୱରଙ୍କୁ ଦେଇ ସସ୍ତ ପୁଣ ।
ସମସ୍ତଙ୍କୁ ଘେନି ହେଲେ ବାହାର ।
ହୁଳହୁଳି ଦେଲେ କାମିନୀ ମେଳ ।୯୫।
ଆଗେ ଗୋପୀଗଣ ଗମନ କରେ ।
ପଛରେ ନାୟିକା ଚାଲନ୍ତି ଧୀରେ ।
ମଧ୍ୟେ ପୂର୍ଣ୍ଣିମାସୀ ସଙ୍ଗେ ରାଧିକା ।
ବୃନ୍ଦାବତୀ ସଙ୍ଗେ ଦୃଢକା ସାଖା ।
ଗୋପ ତରୁଣୀ ବାଳକ ଯେତେକ ।
ପଛରେ ଚାଲନ୍ତି ସମସ୍ତ ଲୋକ ।
ଧରଣୀ ସୁନ୍ଦର ପାଉଛି ପୁଣି ।
ଉପରେ ଦେବଲୋକ ଦେଖେ ଜାଣି।
ଧବଳ ଛତ୍ର ଧଲେ ଚନ୍ଦ୍ରାବଳୀ ।
ଆଗରେ ଦୁନ୍ଦୁଭି ବଜାନ୍ତି ସେହି ॥
କାହାଳୀ ଲଳିତା ବଜାଏ ଧୀରେ ।
ବୃନ୍ଦାବତୀ ବଂଶୀ ଧରଣ କରେ ।
ମୁରଲୀ ବଜାନ୍ତେ ଲୁବ୍ଧକେ ବନ ।
ସର୍ବ ଜୀବ ଶୁଣି ଥମ୍ଭିତ ପୁଣ ।
ବଚ୍ଛା ବାଳକ କର୍ଣ୍ଣ ଡେରି ରହେ ।
ଯଶୋଦା ଦେବୀ ନନ୍ଦ ଆଗେ କହେ ।
ସ୍ୱର୍ଗ ସମ୍ପନ୍ନ ରାଧା ଭୋଗ କଲା ।
କୃଷ୍ଣର ଯେଣୁ ପ୍ରିୟବତୀ ହେଲା ।
ନନ୍ଦ ବୋଇଲା ଗୋ ନୋହେ ସେମନ୍ତ ।
ସାକ୍ଷାତେ କମଳା ଅଟଇ ସେ ତ ।୧୦୫।
ଯଉଁଦିନ ମୁଁ ଯମୁନାକୁ ଗଲି ।
ସ୍ନାହାନ କରନ୍ତେ ଜଳେ ମିଳିଲ ।

୯୯-୧—ସୁନ୍ଦର ପାଉ ଅଛଇ ଧରଣୀ (ଖ,ଗ) । ୧୦୨-୨—ସବୁ ଜନେ ଶୁଣି ସିରେ ରହନ୍ତି (ଗ) ।
୧୦୪-୧—ସ୍ୱର୍ଗ ସମ୍ପନ୍ନ ରାଧା ଭୋଗ କଲ (କ) ।

ମୋତେ ବରୁଣ ନେଇ ଗଲେ ଆସି ।
ରତ୍ନ ସିଂହାସନେ ବସାଇଲେ ସେ ଟି ।
ନାନା ଭୂଷଣ କରଣ ସଙ୍ଗରେ ।
ବୋଲେ ନାରାୟଣ ନାଭ ତୋ ବୋଲେ
ଆମ୍ଭେ ନନ୍ଦନ ପୂରଇ ଦେଖିବା ।
ତାଙ୍କୁ ଦେଖିଲେ ମୁକତ ହୋଇବା ।
ଯେହୁ ସମୟରେ କୃଷ୍ଣ ମିଳଲେ ।
ବରୁଣ ଦେଖି ଭୂମିରେ ଶୋଇଲେ ।
କର ଯୋଡ଼ିଣ କହେ ରତ୍ନାକର ।
ମୋ ଦୋଷ ଷମାକର ଚକ୍ରଧର ।
ବହୁତ ବନତ ହୋଇଲ ପୁଣି ।
ତା'ରାଣୀ ଅର୍ଘ୍ୟ ବନାଇଲ ଜାଣି ।
ସେଠାରୁ ମେଲାଣି ହୋଇଣ ପୁଣି ।
ପ୍ରବେଶ ହେଲୁ ଗୋପପୁରେ ଜାଣି ।
ସେହୁଦନ ମୁହିଁ ଜାଣିଲୁ ପୁଣି ।
ତୁଷ୍ଟ ନବାରବେ ଭୁମର ବେନ ।
ତୁମ୍ଭେ କପାଁ ମନେ କ୍ଷୁଅ ବମନ ।
ରାଧିକା ଅଟେ ମହାଲକ୍ଷ୍ମୀ ପୁଣ । ୧୧୫ ।
ଯେମନ୍ତ ବଚନ ଯଶୋଦା ଶୁଣି ।
ଶାନ୍ତ ହୋଇଲ ମନେ କୃଷ୍ଣ ଗୁଣି ।

ଚନ୍ଦ୍ରାବଳୀ ଗୋପେ ହେଲେ ପ୍ରବେଶ ।
ଗହଳ ଶବଦେ ପୂରେ ଅକାଶ ।
ଚନ୍ଦ୍ରଶାଳା ପୁରେ ପ୍ରବେଶ ହୋଇ ।
ବେଶ ଭୂଷଣ ଭୂଲ୍ଲିଗିଲେ ତହିଁ ।
ପଞ୍ଚାଶ ସହସ୍ର ସୁବର୍ଣ୍ଣ ପୁଣ ।
ଭଣ୍ଡାରେ ସାଇତ ରଖିଲେ ଜାଣ ।
ଗୋପ-ସୁନ୍ଦରୀଙ୍କି ମେଲାଣି ଦେଲେ ।
ଗୋପ ନଗ୍ର ଲୋକେ ସମସ୍ତେ ଗଲେ ॥
ରାଧିକା ବୃନ୍ଦକା ସେ ପୂର୍ଣ୍ଣିମାସୀ ।
ବୃନ୍ଦାବତୀ ପୁଣି ଅଙ୍ଗିରା ଋଷି ।
ସ୍ବରଜଣ ରାଧା ପୁରରେ ରହି ।
ଭୋଜନ ଛଡ଼ ରସେ କଲେ ତହିଁ ।
ବଡ଼ଅ ତାମ୍ବୂଳ ଭୁଞ୍ଜିଣ ତହିଁ ।
ରତ୍ନପଲଙ୍କରେ ଶୋଇଲେ ଯାଇଁ ।
ଚନ୍ଦ୍ରାବଳୀ ପୁଣି ଭୋଜନ କଲେ ।
ଜଟିଲା ସଙ୍ଗେ ବସି କଥା ହେଲେ ।
ବଡ଼ଅ ଭୁଞ୍ଜି ରାଧା ଠାକୁରାଣୀ ।
ରତ୍ନପଲଙ୍କରେ ପହୁଡ଼େ ପୁଣି । ୧୨୫ ।
ଚରଣ ମଣ୍ଡାଲେ ମିଳଣ ଦାସୀ ।
ସେ ପାଦ ଦନାଇଁ ଦାସ ନବେଶି ।

୧୧୨-୨—ନାନାବସ୍ତ୍ର ଅର୍ଘ୍ୟ ବନାଏ ପୁଣି (ଗ) । ୧୧୩—ସେଠାରୁ ମେଲଣି ହେଲୁ ସତ୍ୱର । ପ୍ରବେଶ ହେଲୁ ଆସି ଗୋପପୁର (ଖ) । ୧୧୪—ସେହୁଦନୁ ବାଳୁ କଥା ଜାଣିଲୁ । କହଁ ହେବଟା ସେ ମନେ ଭଲଇ (ଖ) । ୧୧୫—ଅମର ବୋଲେ ହୋଇଅଛ ଜନ୍ମ । ଏ କଥାରେ ସଖି କୋହ ବିମନ (ଙ) । ୧୧୯—ପଞ୍ଚାଶ ସହସ୍ର ସୁବର୍ଣ୍ଣ ବିତ । ଭଣ୍ଡାରେ ନେଇ ରଖିଲେ ତୁରିତ (ଙ) ।
୧୨୭-୨—ସେ ପାଦେ ଦନାଇ ଦାସ ନବେଶି (ଚ) ।



# ତ୍ରୟୋବିଂଶ ଛାନ୍ଦ

ଏଥି ଅନନ୍ତରେ ଅପୂର୍ବ ରସ ।
ଶୁଣନ୍ତୁ ଗଉରୀ କହେ ମହେଶ ।
କନକ ସ୍ନାହାନ ରାଧିକା କଲେ ।
ଷୋଳ ନାୟିକାଏ ପବିତ୍ର ହେଲେ ।
ବୃନ୍ଦାବତୀ ପୂର୍ଣ୍ଣମାସୀ ସହିତେ ।
କନକ ସ୍ନାହାନ କଲେ ସମସ୍ତେ ।
ତହୁଁ ଭୋଗ କଲେ କହ ହେ ମୋତେ ।
ଶୁନ୍ଦିମାକୁ ବଡ଼ ଶରଧା ଚିତ୍ତେ ।
ଯୋଗଧାରଣା କହୁଛନ୍ତି ପୁଣ ।
ରାଧିକା ଚରିତ ପାବନ୍ଧ ଶୁଣ ।
ରଜନୀ ଶେଷେ ଦିନ ହେଲା ପୁଣ ।
ଚନ୍ଦ୍ରଶାଳା ପୁରେ ଋଷି ବସିଣ ।
ବୋଇଲେ ଅଭିଷେକ ଦିନ ଆଜ ।
ଇନ୍ଦ୍ର ଦେବତାଙ୍କୁ ସୁମର ବେଗ ।
ସକଳ ତୀର୍ଥରୁ ସେ ଜଳ ଦେବେ ।
ତେବେ ଅଭିଷେକ ହୋଇବ ଯେବେ ।
ମୁନିଙ୍କଠାରୁ ଏ ବଚନ ଶୁଣି ।
ପୂର୍ଣ୍ଣମାସୀଙ୍କି ରାଧା କହେ ପୁଣି ।
ତୁମ୍ଭେ ବନ୍ଦେ କର ସ୍ୱର୍ଗପୁରକୁ ।
ସକଳ ତୀର୍ଥ ଜଳ ଆଣିବାକୁ ।
ଯମୁନା ଜଳରେ ଛନ୍ତି ସମସ୍ତ ।
ଯଉଁଦିନୁ ହରି ଗୋପରେ ଜାତ ।
ସେଦିନୁ ଯମୁନାଁ ସକଳ ତୀର୍ଥ ।
ଚାଲ ଯମୁନାକୁ ଯିବା ସମସ୍ତ ।
ବୃନ୍ଦାବତୀ ଆଦି ସଖୀ ସମସ୍ତେ ।
ସ୍ନାହାନ କରିବା ମିଳଣ ଘାଟେ ।
ଯୋଗ ବେଳରେ ଅଣାଇବା ଜଳ ।
ଅଭିଷେକ ହେବ ବୃନ୍ଦାବନର ।
ଯେମନ୍ତ ବିଚାର ମୁନିଙ୍କି କହି ।
ଚନ୍ଦ୍ରଶାଳା ପୁରୁ ବାହାର ହୋଇ ।
ଆଗେ ପୂର୍ଣ୍ଣମାସୀ ପଛେ ରାଧିକା ।
ସଙ୍ଗତେ ବୃନ୍ଦାବତୀ ଯେ ଦୂତିକା
ଅଙ୍ଗିରା ଋଷି ଆଗ ହୋଇ ଗଲେ ।
ଯମୁନା ଜଳରେ ସ୍ନାହାନ କଲେ ।
ନିତ୍ୟ କର୍ମ ଋଷି ସାରନ୍ତି ତହିଁ ।
ମିଳଣ ଘାଟେ ରାଧା ହେଲେ ଯାଇଁ ।
ଗୋପ-ସୁନ୍ଦରୀ ପୁଞ୍ଜ ପୁଞ୍ଜ ହୋଇ ।
ରାଧିକା ପାଶରେ ମିଳିଲେ ଯାଇ ।
ସମସ୍ତ ଗୋପୀ ଯହୁଁ ଠୁଳ ହେଲେ ।
ଯମୁନା ଜଳେ ପଶି ସ୍ନାନ କଲେ ।
ଓଦା ବସନରେ ବାଲୁକା ପୂଜି ।
ଫୁଲ ଚନ୍ଦନ ତାଙ୍କ ଅଙ୍ଗେ ମଣ୍ଡି ।
ହୃଦୟ ବେଦନା କଲେ ଜଣାଣ ।
ସେଠାରୁ ଚଳିଲେ ସକଳ ପୁଣ ।
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ବନାଇ ।
ସୁରୁଜ ବାଣ ପୁଷ୍ପ ତାଙ୍କୁ ଦେଇ ।

୨-୧—କନକ ସ୍ନାହାନ ଯେ ରାଧା କଲେ (ଗ) । ୧୩—ସ୍ନାହାନ କରିବା ମିଳଣ ଘାଟେ । ବୃନ୍ଦାବନ ଘାଟ ବୁଲିବା ଥାଟେ (ଖ) । ୨୦ ୨—ଯମୁନା ଜଳରେ ସ୍ନାହାନ କଲେ (ଗ) । ୨୨ ୨—ସକଳେ ପୁଣ (ଗ) ।

ଦୁଃଖ ଜଣାଇ କଲେ ନିବେଦନ ।
ସେଠାରୁ ଚଳିଲେ ସମସ୍ତ ପୁଣ ।
କୁଞ୍ଜବନରେ ପ୍ରବେଶ ହୋଇଲେ ।
ପଦ୍ମପାଦରେ ନିବେଦନ କଲେ ।
ସେଠାରୁ କେଳି-କଦମ୍ବ ମୂଳରେ ।
କଦମ୍ବ ବୃକ୍ଷ ପ୍ରଦକ୍ଷିଣ କଲେ ।
ସେଠାରୁ ଚଳନ୍ତି ସର୍ବ ସୁନ୍ଦରୀ ।
ଗୋପେଶ୍ୱରଙ୍କ ଠାରେ ଯାଇଁ ମିଳି ।
ଦର୍ଶନ କରି ଜଣାଇଲେ ଦୁଃଖ ।
ବେଲପତ୍ରୀ ଚମ୍ପା ଦେଲେ ବହୁତ ।
କହୁଣ ଚଳିଲେ ସକଳ ଗୋଈ ।
ବୃନ୍ଦାବନରେ ମିଳିଲେକ ଯାଇଁ ।
ଋଷି ଆସିଣ ପ୍ରବେଶ ହୋଇଲେ ।
ସକଳ ଗୋପୀ ମାନ୍ୟ ଧର୍ମ କଲେ ॥
ଋଷି ଯେ ତାଙ୍କୁ ସୁକଲ୍ୟାଣ କଲେ ।
ସକଳ ବଧୂ ତାଙ୍କୁ ବନ୍ଦାଇଲେ ।
ଗୋପ ନଗରେ ଚହଳ ପଡ଼ିଲା ।
ରାଈ ରାଜା ଅଭିଷେକ ହୋଇଲା ।
ଗୋପ ନଗରୁ ସମସ୍ତେ ଆଇଲେ ।
ବୃନ୍ଦାବନରେ ପ୍ରବେଶ ହୋଇଲେ ।
ସ୍ୱର୍ଗରେ ଦେବତା ଗଣ ମିଳିଲେ ।
ବୃନ୍ଦାବନକୁ ସର୍ବେ ଦୃଷ୍ଟି ଦେଲେ ।
ତୀର୍ଥ ଜଳ ଇନ୍ଦ୍ର ଦେଲେକ ଭେଦ ।
ଢ଼କସା ଗନ୍ଧର୍ବ ଆଣିଲା ବେଗି ।
ଚନ୍ଦ୍ରାବଳୀର ସମ୍ମୁଖେ ମିଳିଲା ।
ଇନ୍ଦ୍ର ତୀର୍ଥ ଜଳ ଦେଲେ ବୋଇଲା ।
ଦେଖିଣ ମୁକ୍ତ ହୋଇଲେ ସନ୍ତୋଷ ।
ବୋଇଲେ ଯାଇ ସିଂହାସନେ ବସ ।
ସିଂହାସନ ପରେ ବସିଲେ ରାଧା ।
ଦିବ୍ୟ ବେଶହିଁ ପାଉଅଛି ଶୋଭା ।
ଶୁକଳ ବସ୍ତ୍ର ଜରି ପାଗ ଶିରେ ।
ଧବଳ ଛତ୍ର ଟେକିଲେ ଉପରେ ।
ଆଲଟ ପଙ୍ଖା ବିଞ୍ଚଣି ପଡ଼ଇ ।
ଝୁଲଝୁଲରେ ବନସ୍ତ ପୂରଇ ।
ହରି ଶବଦ ନିରନ୍ତର କଲେ ।
ତୀର୍ଥ ଜଳ ନେଇ ଶିରେ ଢାଳିଲେ ।
ଫୁଲ ଚନ୍ଦନ ଦେଲେ ନେଇ ପୁଣ ।
କୁସୁମ ବୃଷ୍ଟି କଲେ ଦେବଗଣ ।
ଦୁନ୍ଦୁଭି ଶବଦ ସ୍ୱର୍ଗରେ ଶୁଭେ ।
ଚନ୍ଦ୍ରାବଳୀ ଆଗେ କାହାଳୀ ବାଜେ ।
ମୁରଲୀ ଧରି ବୃନ୍ଦାବତୀ ବାଜ୍ୟେ ।
ଯମୁନା ଜଳ ଥକଭରେ ରହେ ।
ସର୍ପ ସଙ୍ଗରେ ମଣ୍ଡୁକା ଶୋଯାଇ ।
କାକ ପେଚ୍ଛ ଏକ ଆସନ ହୋଇ ।
ବ୍ୟାଘ୍ର ସଙ୍ଗତେ ସଙ୍ଗ ହୋଇୟେ ଖେଳ ।
ଶୃଗାଳ ଶଶା ହୋଇୟେ ଏକ ମେଳ ।
ବରେହା କୁକୁର ହୁଅନ୍ତି କଥା ।
ଭାଲୁ ମର୍କଟର ନୁହଇ ବ୍ୟଥା ।
ଶୁଆ ଶାରୀ ରାମ କୃଷ୍ଣ ପଢ଼ନ୍ତି ।
କୋକିଳ ମଧୁର ଭାଷା ରବନ୍ତି ।
ଗାଈ ବଛା ପୁଣ ବୃଷଭ ଜାଣ ।
କର୍ଣ୍ଣ ତେରିଣ ଛିଡ଼ା ହୋଇ ପୁଣ ।
ଯେତେକ ତରୁ ବୃନ୍ଦାବନେ ଥିଲେ ।
ମୁରଲୀ ଶୁଣି ପଲ୍ଲବିତ ହେଲେ ।
ମଳୟ ଯେଜ ବହିଲା ପବନ ।
ଶୀତଳ ହୋଇଲା ସେ ବୃନ୍ଦାବନ ।

୩୪ ୨—ତୁକଭରେ ଉହେ (ଗ,ଜ), ଥକଭରେ ଅହେ (ଡ) । ୪୭-୨—ନୁବାଇ (ନ,ଜ) ।

ଗୋପୀମାନେ ସର୍ବେ ମନେ ହରଷ ।
କୃଷ୍ଣ ଥିଲା ହନେ ଯେମନ୍ତ ରସ ।
ରାଧା ଅଦରଷେକ ହୋଇଣ ପୁଣ ।
ଗୋପୀଙ୍କି ଡାକି ବୋଇଲେ ଗୋ ଶୁଣ ।
ଛେନା ଗୋଟିକା ଗୋ ସର ଲବଣୀ ।
ଭୋଜନ କରିବାକୁ ଅଣ ପୁଣି ।
ଶୁଣିଣ ସନ୍ତୋଷେ ସମସ୍ତେ ଗଲେ ।
ଗୋପନବରେ ପ୍ରବେଶ ହୋଇଲେ ॥
ଯେଝା ମତେ ଯେନ୍ନ ଗୋରସ ପୁଣି ।
ପ୍ରବେଶ ହେଲେ ବୃନ୍ଦାବନେ ଜାଣି ।
ଭୋଜନ କରନ୍ତି ସକଳେ ମିଳି ।
ଆନନ୍ଦ ଦେଖି ହୋଏ ମହାଆଳି ।
ଆଚମନ କରି ସମସ୍ତେ ପୁଣ ।
ହରି ପୂରୋଇ ଗହଳରେ ଜାଣ ।
ସିହଂାସନରୁ ଉଠିଲେ ରାଧିକା ।
ଋଷିଙ୍କ ଚରଣେ ହେଲେ ଭଗନ୍ତା ।
ସକଳ ଗୋପୀଏ ଚରଣେ ପଡ଼ି ।
ଛିଡ଼ା ହୋଇଣ କର ଦୁଇ ଯୋଡ଼ି ।୬୦।
କହିଣ ମୁନି ନିଜ ସ୍ଥାନ ଗଲେ ।
ରାଧିକାଙ୍କୁ ଘେନି ଗୋପୀ ରହିଲେ ।
ସେଠାରୁ ସମସ୍ତେ ସଙ୍ଗ ହୋଇଣ ।
ଗୋପନବରେ ମିଳିଲେକ ପୁଣ ।
ନନ୍ଦ ପୁରରେ ପ୍ରବେଶ ହୋଇଲେ ।
ଦେଖି ଯଶୋବନ୍ତୀ ଆନନ୍ଦ ହେଲେ ।
ଗହଳ ଉଚ୍ଛବ ଲାଗିଲା ପୁର ।
ରାମ କୃଷ୍ଣ ଥିଲେଂ ଯେଉଁ ବେଭାର ।
ରୋହିଣୀ ଅଣି ଗଙ୍ଗା ଜଳ ଦେଲେ ।

ଚରଣ ଧୋଇ ରାଧିକା ବସିଲେ ।୬୫।
ଯଶୋଦା ବୋଇଲେ ଶୁଣ ସୁନ୍ଦରୀ ।
କାହାକୁ ଦେଖି ଅଇଲ ଏ ପୁରୀ ।
ରାମ କୃଷ୍ଣ ଦୋହେଁ ମଥୁରା ଗଲେ ।
ପରାଣ ନେଇ ପଞ୍ଜରା ରଖିଲେ ।
ଆଉ କି ଦେଖିବି କଲା ବଦନ ।
ନ ଯାଇ ରହିଛି ଜୀବନ ପୁଣ ।
କେତେ ସୁଖ ଭାଙ୍ଗି ମଥୁରା ଗଲେ ।
ରାମ ଗୋବିନ୍ଦ ବାହୁଡ଼ି ନଇଲେ ।
ସବୁ ସୁଖ ମୋର କେଣିକି ଗଲା ।
ମାଧବ ବିନା ହିନ ନ ସରଲା । ୭୦ ।
ଅନୁକ୍ଷଣେ ନେତ୍ରୁ ବହୁଛି ବାରି ।
ମୁଖ ନ ଦେଖିଲି ଶୁଣ ସୁନ୍ଦରି ।
ଲବଣୀ ସର ମୋର ନ ସରଲା ।
ରାମ କୃଷ୍ଣ ଡାକି ପାସୋର ଗଲା ।
ସପନ ହେଲେ ଗୋପୀମାନେ ମୋତେ ।
କେହି ନ ବସିଲେ ମୋର ସଙ୍ଗତେ ।
ତୁମ୍ଭର ସୁଦୟା ଆଜ ହୋଇଲା ।
ମୋର ମନ୍ଦିର ଆଜ ଭାଗ୍ୟ କଲା ।
ଗୋପ ସମ୍ପତ୍ତି ଗୋ ଅଟଇ ତୋର ।
ଆମ୍ଭେ ମନରୁ ନୋହିବୁ ଅନ୍ତର । ୭୫ ।
ତାହା ଶୁଣି ଚନ୍ଦ୍ରାବଳୀ ବୋଇଲେ ।
ତ୍ରୈଲୋକ୍ୟନାଥ ମାତା ତୁମ୍ଭେ ଭଲେ ।
ଦର୍ଶନ କଲେ ପାପ କ୍ଷୟ ଯାଇ ।
ଯେମନ୍ତ ବଚନ କହ କିମ୍ପାଇ ।
*ଚିନ୍ତା ନ କର ଠାକୁର-ଜନନୀ ।
ନିକଟେ ଅସିବେ କୁମର ପୁଣି ।

୬୮-୨—ନଯାଇ ରହିଛି କମ୍ପା ଜୀବନ (ଖ) । ୭୨-୨—ପାସୋର ହେସ (ଖ, ଡ, ଚ, ଛ)
୭୪-୨—ହୃଦୟ ହେଲା (ଡ) । ୭୭-୨—ମାଠ ।

ମଧୁମଙ୍ଗଳଙ୍କୁ ଥିଲୁ ପଠାଇ ।
ଆସିବେ ବୋଲି କହିଲେ ଗୋସାଇଁ ।
ବିଦ୍ୟା ପଢ଼ିଣ ବ୍ରାହ୍ମଣ ହେଲେଣି ।
ଜଗତସଙ୍କ ଦର୍ପ କରୁଛି ପୁଣି । ୮୦ ।
ଦର୍ପ ଭାଙ୍ଗିଣ ଏଥିକି ଆସିବେ ।
ଅଳପ ଧନ ଗୋ ସମ୍ଭାଳି ଯିବେ ।
ଶୁଣିଣ ଯଶୋଦା ଉଠି ଆଇଲେ ।
ରାଧା କୋଳ କରି ରୋଦନ କଲେ ।
ଯଶୋଦା ରୋଦନ ଦେଖି ସମସ୍ତେ ।
ମନରେ ଭାଳି ବିସ୍ମରନ୍ତି ଚିତ୍ତେ ।
ହା ହା କୃଷ୍ଣ ବୋଲି ରୋଦନ କଲେ ।
ଭୂମିରେ ଗୋପ-ସୁନ୍ଦରୀ ପଡ଼ିଲେ ।
ରାଧା ବୋଇଲେ ଏ ହେଲା ପ୍ରମାଦ ।
ଏ କଥା ବିସ୍ମରି ଥିଲୁ ଦଇବ । ୮୫ ।
ଦେଖାଇ ହରି କେଣେ ଘେନି ଗଲୁ ।
ଗୋପ ଯୁବତିଙ୍କୁ ଅନାଥ କଲୁ ।
ଏତେ ବୋଲି ରାଧା ପଡ଼ିଲେ ତଳେ ।
ରୋଦନ କରି ଗଡ଼ନ୍ତି ଭୂମିରେ ।
ତାଙ୍କୁ ଦେଖିଣ ବୃନ୍ଦାବତୀ ପୁଣ ।
ସେହି ଭୂମିରେ କଲେକ ଶୟନ ।
ଦୃଢ ଧଇର୍ଯ୍ୟ ହୋଇ ନ ପାରିଲା ।
ରାଧାଚରଣ ଧରିଣ ଶୋଇଲା ।
ଲାଗିଲା ରୋଦନ ନନ୍ଦ ପୁରରେ ।
ସମୁଦ୍ର ଯେସନେ ଗର୍ଜେ କୂଳରେ । ୯୦ ।
ଗୋପପୁରରେ ଯେତେ ଲୋକ ଥିଲେ ।
ସମସ୍ତେ ଆସି ପ୍ରବେଶ ହୋଇଲେ ।
କେ ବୋଲେ ରାଧା ଠାକୁରାଣୀ ମଲା ।
କେ ବୋଲେ ଗୋପ ସମ୍ପଦ ସରିଲା ।
କେ ବୋଲେ ବୃନ୍ଦାବନେ ଥିଲେ ରାଣ୍ଡ ।
କେ ବୋଲେ ଅଭିଷେକ ଦେଖିଲଇଁ ।
କେ ବୋଲେ ଏହିକ୍ଷଣି ମୁଁ ଅଇଲି ।
କେଉଁଣି କଥା କର୍ଣ୍ଣେ ନ ଶୁଣିଲି ।
ନନ୍ଦ ଗୋଗୋଷ୍ଠୁ ଶୁଣିଣ ଅଇଲେ ।
ଦେଖିଲେ ରୋଦନ ଲାଗିଛି ପୁରେ ॥
ପୂର୍ଣ୍ଣିମାସୀକି ବୋଇଲେ ରାଜନ ।
ତୁମ୍ଭେ ଥାଆନ୍ତେ ଏ କିସ ଉଆଣ ।
ଦେଖି ବୋଇଲେ ସମ୍ଭାଳି ନୋହନ୍ତି ।
ଯଶୋଦା ରୋଦନ୍ତେ ସର୍ବେ ରୋଦନ୍ତି ।
ନନ୍ଦଇ ଦେଖିଣ ରୋଦନ କଲେ ।
ପୂର୍ଣ୍ଣିମାସୀ ତାଙ୍କୁ କହିଲେ ଧୀରେ ।
ବୋଇଲେ ରୋଦନ କଲେ କି ହେବ ।
ଯାହା କର୍ମେ ଲେଖିଅଛି ଦଇବ ।
ନନ୍ଦଙ୍କୁ କହି ବୋଧ କଲେ ପୁଣ ।
ରାଧାଙ୍କୁ ବୋଇଲେ ଶୁଣ ବଚନ ।୧୦୦।
ତୁମ୍ଭଙ୍କୁ ହରି ଲେଖିଥିଲେ ଯାହା ।
ମନରୁ ପାସୋର ହେଲା କି ତାହା ।
ସମସ୍ତଙ୍କୁ ଏବେ ଧଇର୍ଯ୍ୟ କର ।
ବେଳ ଉଛୁର ଯିବା ଚାଲି ଘର ।
ଶୁଣି ଚନ୍ଦ୍ରାବଳୀ ଧଇର୍ଯ୍ୟ ହେଲେ ।
ସମସ୍ତ ଗୋପୀଙ୍କି କହି ବୋଧିଲେ ।
ବୃନ୍ଦାଦେବୀ ହୃତି ବୋଧ କରାଇ ।
ଯଶୋଦା ରୋଦନ ସମ୍ଭାଳେ ଯାଇଁ ।
ସମସ୍ତେ ଯନ୍ତୁଁ ଶୋକ ସମ୍ଭାଳିଲେ ।
ନନ୍ଦ ତାହାଙ୍କୁ ବୁଝାଇ କହିଲେ ॥

୭୯-୧—ପଠାଇ (ବ) ।
୯୦-୧ – ନନ୍ଦର ପୁରେ (ଡ) । ୯୮-୧ – ନନ୍ଦହିଁ (ଚ) । ୧୦୦-୨ – ରାଧାଙ୍କୁ କହିଲେ (ଖ,ଜ) ।
୧୦୧-୨ – ପାସୋର ଗଲାକି ତାହା (ଥ) । ୧୦୩-୨—ସମସ୍ତ ଗୋନ୍ଦକ (ଗ) ।

ଗୋପନବରେ ରାଜା କରଗଲେ ।
ଅଇଲା ବେଳେ ମୁଁ କହିଲି ଥରେ ।
ବୋଇଲେ ରାଧା ଠାକୁରାଣୀ ଅଛୁ ।
ଗୋପପୁର ଚନ୍ଦ୍ରା ତାକୁ ଲାଗିଛୁ ।
କହୁଦବନ ଅମ୍ଭେ ମଥୁରା ରହୁ ।
ଗୋପକୁ ଯିବୁ ଶୁଣ ତାତ ଭୁହ ।
ରାଧା ଥିଲା ଯାକ ପ୍ରମାଦ ନାହିଁ ।
ଗୋପପୁରେ ରାଜା ରାଧା ଅଛଇ ।୧୧୦।
ଶୁଣିଣ ରାଧିକା ବୋଇଲେ ପୁଣ ।
ଯଶୋଦା ଶୋକ କ ସନ୍ତେ ପାଷାଣ ।
ମୋହୋର ଦେହ ତରଳ ହୋଇଲା ।
ଧଇର୍ଯ୍ୟ ଦେଲେ ବୁଦ୍ଧି ବଳା ହେଲା ।
ଯଶୋଦା ବୋଇଲେ ଶୁଣ ଗୋ ରାଈ ।
ତୁମ୍ଭଙ୍କୁ ଦେଖିଲେ ହୃଦୟ ଦହି ।
କହାଇ ମୋର କେଣେ ଗଲା ପୁଣ ।
ଗୋପୀଙ୍କ କଷ୍ଟ ଦେଖିଲି ନେତ୍ରେଣ ।
ଏତେ ବୋଲିଣ ପ୍ରବୋଧ ହୋଇଲେ ।
ଅନ୍ନ ବ୍ୟଞ୍ଜନ ଭୁଞ୍ଜ ମୋର ଘରେ ।
ରାଧାଙ୍କୁ ବୋଇଲେ ଚଳ ଗୋ ତୁମ୍ଭେ ।
ସମସ୍ତଙ୍କୁ ଯାଇ ଚରଚ ଏବେ ।
ଶୁଣିଣ ରାଧା ବଦନ ଉଠିଲେ ।
ବୃନ୍ଦାବତୀ ସଙ୍ଗେ ଲଳିତା ଗଲେ ।
ଷୋଳ ନାୟିକା ଦୂତୀ ପୂର୍ଣ୍ଣିମାସୀ ।
ରୋହିଣୀ ଯଶୋଦା ସଙ୍ଗତେ ମିଶି ।
କୋଡିଏ ମିଶି ପରଶିଲେ ଅନ୍ନ ।
ସମସ୍ତେ ଭୁଞ୍ଜି ସନ୍ତୋଷ ଯେ ପୁଣ ।
ଗେ ହ୍ନକା ସର ଲବଣୀ ସହିତେ ।
ଅନ୍ନପୂର୍ଣ୍ଣା ରାଧା ଦେଲେ ଭୁରଛେ ।୧୨୦।
ଯଶୋଦା ରୋହିଣୀ ବୋଧ କରଣ ।
ସକଳ ଲୋକଙ୍କୁ ମେଲାଣି ପୁଣ ।
ଗୋପୀଙ୍କି ବୋଇଲେ ଯାଅ ଘରକୁ ।
ପ୍ରଭାତେ ଯିବ ଅମ୍ଭ ମନ୍ଦିରକୁ ।
କହିଣ ରାଈ ବୃନ୍ଦାବତୀ ଗଲେ ।
ଯେଝା ଘରେ ଯାଇଁ ପ୍ରବେଶ ହେଲେ ।
ଚନ୍ଦ୍ରଶାଳା ପୁରେ ରାଧା ପ୍ରବେଶ ।
ଦାସ ଦଳାଇ ସେବେ ରାଧା ପାଶ ॥

୧୧୭-୨ – ଚରଚ ବେଗେ (ଖ) ।



# ଚତୁର୍ବିଂଶ ଛାନ୍ଦ



ଯେଉଁଥୁ ଅନନ୍ତରେ ଈଶ୍ୱର କହି ।
ଗୋପ ସୁନ୍ଦରୀ କଥା ଶୁଣ ସହି ।
ତହୁଁ ଯାହା କଲେ ସେ ଚନ୍ଦ୍ରାବଳୀ ।
ଶୁଣ ହେମବନ୍ତ ମୋ ମନହାସୀ ।
ରଜନୀ ଶେଷେ କୃଷ୍ଣ ଗୁଣ ଗୁଣି ।
ଦୂତୀ ବୃନ୍ଦାବତୀ ମିଳିଲେ ପୁଣି ।
ଦ୍ୱାରେ ଡାକ ଦେଲେ ଉଠିବା ହୋଉ ।
ନିଶି ପାହିଲା ଗୋ ସୁଯେଣୀ-ବୋହୂ ।
ଦେବ ଆଳେ ଶଙ୍ଖ ଶବଦ ହେଲା ।
କାକ ପକ୍ଷୀ ଯେ ଦ୍ୱାରେ ରଡ ଦେଲା ॥
କୁଳବଧୂଙ୍କର ଭାଗିଲା ନିଦ ।
ବାସି ଆଡତ କଲେ ଉଦବେଗ ।
ପଲଙ୍କ ଶଯ୍ୟା ଗୋ ବାସି ହୋଇଲା ।
ବେଶ ଭୂଷଣ ମଳିଣ ଦିଶିଲା ।
ଗୋପ ନଗରେ ହୋଇଲା ଗହଳ ।
ଦଧି ମନ୍ଥନ ଯେସନେ ଉଲ୍ଲଳ ।
ଗୋଗୋଷ୍ଠୁ ଗୋପାଳମାନେ ଅଇଲେ ।
ଦୁଧ ଭାର ଘେନି ଘରେ ମିଳିଲେ ।
ସକଳ ଜୀବଙ୍କ ଆରମ୍ଭ ଗଳା ।
ପୂର୍ବ ଦିଗରେ ରଙ୍ଗବର୍ଣ୍ଣ ହେଲା ।୧୦।
ଶୁଆ ସାରୀ ରାମ ଗୋବିନ୍ଦ ବୋଲି ।
ସୁଜ୍ଞଜନ ଲୋକେ ଗୋବିନ୍ଦ ଭାଳି ।
ବୃନ୍ଦାବନରେ କୋକିଳ ଶବଦ ।
ପକ୍ଷୀ ଜୀବମାନେ ମନେ ଆନନ୍ଦ ।
ମକ୍ଷୀକା ଉଠି ଘରେ ଘରେ ପଶେ ।
ଇନ୍ଦୁର ଲୁଚିଲେ ଦେଖିଣ ତ୍ରାସେ ।
ପେଚ୍ଚ ଚଢ଼ାଇ କୋରଡ଼େ ରହିଲେ ।
ସର୍ପ ଭୟରେ ମଣ୍ଡୁକୀ ଲୁଚିଲେ ।
ଯମୁନାଜଳ ଗୋ ଦିଶେ ନିର୍ମଳ ।
ସ୍ନାନକୁ ଯିବା ଉଠ ତତକାଳ । ୧୫ ।
ବାଲୁକା ପୂଜା ହୋଉଛି ଉଚ୍ଛୁର ।
ବହୁତ ନିଦ୍ରା କମ୍ପା ଯେ ଭ୍ରମର ।
ଯେତେ ବୋଲିଣ ଡାକନ୍ତି ସୁନ୍ଦରୀ ।
ପୂର୍ଣ୍ଣିମାସୀ ଦେବୀ ଦୁଆରେ ମିଳି ।
ବୋଇଲେ ଉଠ ଗୋ ରାଧା ସୁନ୍ଦରି ।
ଆଜ ତ ନିଦ୍ରା ହୋଇଲାଣି ଭାରି ।
ଆଜ କି ନାଗର ସଙ୍ଗରେ ଅଛ ।
ସକଳ ଚିନ୍ତା କି ଦୂର ହୋଇଛି ।
ମଥୁରା ପୁରୁ ଗୋବିନ୍ଦ କି ଆସି ।
ଭ୍ରମି ପୁରେ କି ବନେ ଆଜ ନିଶି ।୨୦।
ଯେତେ ବୋଲି ଦ୍ୱାରେ ଡାକନ୍ତେ ପୁଣ ।
ପ୍ରବେଶ ହୋଇଲେ ନାୟିକା ଗଣ ।
ଦେଖିଲେ ଚନ୍ଦ୍ରାବଳୀ ଶୋଇଛନ୍ତି ।
ପଲଙ୍କ ଶଯ୍ୟାରୁ ଉଠି ନାହାନ୍ତି ।
ଗହଳ ଶବଦ ଦ୍ୱାରେ ଶୁଭିଲା ।
ଚନ୍ଦ୍ରବଦନୀର ନିଦ୍ରା ଭାଜିଲା ।

୨-୨ — ଶୁଣ ହେ ଗଉଡ ମୋ ମନହାସ୍ତ (ଖ) । ୬-୧ – ଶେଯ୍ୟା ଯେ (ଖ, ଗ) । ୮-୨—ଦଧି ମନ୍ଥନେ(ଗ) ୮ । ଗୋପ ନଗରେ ହୋଳ ହୋଇଲା । ଦଧିମନ୍ଥନ ଯେସନେ ଉଲଗ । (ଡ) । ୧୧-୨ସୁଜ୍ଞଜନମନେ (ଘ,ଛ) । ୨୩ ୧ -- ହେଳ ଶବଦ (ଘ,ଛ) ।

ପଲଙ୍କ ଉପରୁ ଉଠିଲେ ରାଈ ।
ଯନ୍ତ୍ର କଳଣି ଫିଟାଇଲେ ଯାଇ ।
ଦେଖିଲେ ରଜନୀ ଯାଇ ଅଲ୍ପେଲ ।
ପୂର୍ବେ ଦିନକର ଉଦୟ ବେଳ । ୨୫ ।
ବାହାର ଦେଖିଲେ ସମସ୍ତ ଗୋପୀ ।
ଦାସୀ ଗଣ ଯେନ ବାହାର ସତୀ ।
ହଂସଗମନୀ ଧୀରେ ଧୀରେ ଚଳେ ।
ଯମୁନା କୂଳରେ ପ୍ରବେଶ ହେଲେ ।
ଙ୍କାରନ୍ତି ସାର ଯମୁନାରେ ପଶି ।
ରାମ କୃଷ୍ଣ ନାମ ତୁଣ୍ଡରେ ଘୋଷି ।
ସ୍ନାହାନ କଲେ ସକଳ ସୁନ୍ଦରୀ ।
ଓଦା ବସନ ପୂଜା ବିଧି ସାରି ।
ବାଲୁକା ଆଣି ଥାପିଲେ କୂଳରେ ।
ଫୁଲ ଚନ୍ଦନ ନେଇ ଦେଲେ ଶିରେ ॥
ସିନ୍ଦୂର କଜ୍ଜଳ ଗନ୍ଧ ନେଇଣ ।
ଫୁଲ ଦେଇଣ ବେଶ କଲେ ପୁଣ ।
ଛେନା ଗୋଷ୍ଟକା ସର ଭୋଗ ଦେଲେ ।
କର ଯୋଡ଼ିଣ ବିନତି କହିଲେ ।
ବୋଇଲେ ହରଙ୍କି ଦିଅ ଅମ୍ଭର ।
ସ୍ତ୍ରୀ ହତ୍ୟା ହେଲୁଁ ଶୁଣିମା ହର ।
ଯେତେ ବୋଇଲେ ସକଳ ସୁନ୍ଦରୀ ।
ରୋଦନ କଲେ ତହିଁ ବସି କରି ।
ବିରହ ବାଧିଲା ସମସ୍ତ ଦେହେ ।
ଭୂମିରେ ପଡ଼ିଲେ ରୋଦନ କୋହେ ॥
ଯୋଡ଼ ଯୋଡ଼ ହୋଇ ଗଡ଼ନ୍ତି ପୁଣ ।
କେ ବୋଲେ କେଣେ ଗଲେ ନାରାୟଣ ।
କେ ବୋଲେ କହ୍ନାଇ କେଣିକି ଗଲା ।
କଳାବଦନ ମୁଖ ଲୁଚାଇଲା ।
ମୟୂର ଚୂଳ ନ ଦେଖିଲୁ ନେତ୍ରେ ।
ଅମ୍ଭର ଚିତ୍ତ ଯାହା ହୋଇଛି ଏତେ ।
ଯେତେକ ସାକ୍ଷୀ ଦିନକର ନାଥ ।
ବିରହ ହର ହେ କମଳାକାନ୍ତ ।
ଯେତେ ବୋଲି ଗୋପୀ ବିରହ ଜଳେ ।
କୂପରେ ଯେସନେ କଳସୀ ପଡ଼େ ।୪୦।
ଯେମନ୍ତ ବୋଲିଣ ବିଳାପ କଲେ ।
ପୂର୍ଣ୍ଣିମାସୀ ସମସ୍ତଙ୍କୁ ବୋଧିଲେ ।
ସେଠାରୁ ଉଠିଲେ ସକଳ ଗୋଈ ।
ରାଧା ବୃନ୍ଦାବତୀ ଆଗରେ ଯାଇଁ ।
ପୂର୍ଣ୍ଣିମାସୀ ସଙ୍ଗେ ଦୂତିକା ପୁଣ ।
ଷୋଳ ନାୟିକା ତାଙ୍କ ପଛେ ଜାଣ ।
ଗୋପର ସୁନ୍ଦରୀ ସମସ୍ତେ ପଛେ ।
ପ୍ରବେଶ ହୋଇଲେ କାଳିନ୍ଦୀ ତଟେ ।
ଅମଳାଣ ଶାଢ଼ୀ ସମସ୍ତେ ପିନ୍ଧି ।
ଫୁଲବନୁ ଫୁଲ ଆଣିଲେ ବେଗି । ୪୫ ।
ଦୁବ ଗଣ୍ଡୁଳ ଚନ୍ଦନ ରଖିଣ ।
ସୁବର୍ଣ୍ଣ ଥାଳ ସମସ୍ତେ ଧରିଣ ।
ଅର୍ଘ୍ୟ ବନ୍ଦାପନା ସୂର୍ଯ୍ୟଙ୍କୁ କଲେ ।
ନାନା ପୁଷ୍ପ ଦେଇ ବର ମାଗିଲେ ।
ବୋଇଲେ ପ୍ରଜାପତି ଦୟା କର ।
କଳା କହ୍ନାଇକି ଦିଅ ଅମ୍ଭର ।
ପୁଷ୍ପବନରେ ଭ୍ରମର ଉଡ଼ନ୍ତି ।
ଫୁଲ ବୃକ୍ଷେଣ ଛାଡି ନ ଯାବନ୍ତି ।

୨୮-୧ – ତୁଣ୍ଡରେ ଘୋଷି (କ) ।
୩୧-୨ – ଫୁଲ ଚନ୍ଦନ ବେଶ କଲେ ପୁଣ (ଚ) । ୩୮-୧—ମୟୂର ଚୂଳ (ଗ,ଘ,ଛ) । ୩୮-୨—ଚିତ୍ତ ହୋଏ ଏବେ (ଘ) । ୪୧-୨—ଫୁଲକୁ କ୍ଷଣେ ଛାଡ଼ି ନ ଯାଆନ୍ତି (ଖ,ଘ,ଚ,) ଫୁଲ ବୃକ୍ଷକୁ ଛାଡ଼ି ନ ପାରନ୍ତି (ଡ) ।

ଆମ୍ଭଙ୍କୁ କିମ୍ପା ଛାଡ଼ିଲେ ମାଧୋଇ ।
ଯେ କଥା ତୁମ୍ଭେ ବୁଝ ଛାଡ଼ିଯାଉଁ ॥
କେ ବୋଲେ ଗୋବିନ୍ଦ ନିର୍ଘଣ କଲେ ।
ଅନ୍ତର ହୋଇ ମଥୁରା ରହିଲେ ।
ଯେମନ୍ତ ବୋଲି କରନ୍ତି ରୋଦନ ।
ଯମୁନା କୂଳେ ସମୁଦ୍ର ଗର୍ଜନ ।
କେହୁ ଭୂମିରେ ଗଡ଼ି କାନ୍ଦୁଛନ୍ତି ।
ଧରା ଧର ହୋଇ ରାବ କରନ୍ତି ।
ଏମନ୍ତେ ବିଳାପ ସେଠାରେ ପୁଣ ।
ପୂର୍ଣ୍ଣିମାସୀ ବୋଲେ ରାଧିକା ଶୁଣ ।
ବୃନ୍ଦାବତୀଙ୍କି ବୋଇଲେ ସମ୍ଭାଳ ।
ରୋଦନ କଲେ କିସ ହେବ ତାର ।୫୯।
ସେ ଗଲେ ମଥୁରା ତୁମ୍ଭେ ତ ଗୋପେ ।
ରୋଦନ ନ କର ଗୋପୀ ସମସ୍ତେ ।
ଚନ୍ଦ୍ରାବଳୀ ସମସ୍ତଙ୍କୁ ବୋଧିଲେ ।
ପୂର୍ଣ୍ଣିମାସୀ ଘେନି ସେଠାରୁ ଗଲେ ।
କୁଞ୍ଜବନରେ ହୋଇଲେ ପ୍ରବେଶ ।
କୁଞ୍ଜମାନ ଦେଖି ମନେ ବିରସ ।
କେ ବୋଲେ ଏ କୁଞ୍ଜ ବୃନ୍ଦାବତୀର ।
ବୃନ୍ଦାବତୀ ସଙ୍ଗେ ମୁରଲୀଧର ।
କେ ବୋଲେ ଯେ କୁଞ୍ଜରେ ଥାନ୍ତି ରାଈ ।
ମଦନମୋହନ ସଙ୍ଗରେ ରହି ।୬୦।
ନାନା ବିନୋଦ ଗୋ ଯେଥିରେ କରେ
ରତି ସୁରତି ରାଧିକା ସଙ୍ଗରେ ।
ନାନା କଉତୁକ ଯେଥିରେ ଜାଣ ।
କୃଷ୍ଣ ଦେହେ ମିଶେ ଲଳିତା ପୁଣ ।
କେ ବୋଲେ ଏହି କୁଞ୍ଜଘରେ ହରି ।
ବିଶାଖାଙ୍କୁ ଘେନି ବିହାର କରି ।
କେ ବୋଲେ ମଲ୍ଲୀ ମାଳତୀ ଦ'ଜଣ ।
ଯେ କୁଞ୍ଜରେ ଘେନ ନନ୍ଦ-ନନ୍ଦନ ।
ଭାବ-ବିନୋଦଅଛି କରନ୍ତି ଭାବ ।
ଦୁଇ ସୁନ୍ଦରୀର ଅତି ଦୁଲଭ ।୬୧।
ପୂର୍ଣ୍ଣିମାସୀ ବୋଲେ ଶୁଣ ଗୋ ଗୋଈ ।
ରଙ୍ଗଦେବୀ ପୁଣ ଯେ କୁଞ୍ଜେ ରହି ।
ଚଉଷଠି ବନ୍ଧେ କରନ୍ତି ଲୀଳା ।
କେତେ ଭାବ ଜାଣେ ନନ୍ଦର ବଳା ।
ଯେ ଯେଉଁ କୁଞ୍ଜ ଗୋ ଦେଖୁଛ ପୁଣ ।
ତୁଙ୍ଗଦେବୀ ସଙ୍ଗେ ମାଧବ ଜାଣ ।
କୋଳରେ ଘେନି ଭାବ ରସେ ଲୀଳା ।
ମୁଖେ ଚୁମ୍ବ ଦିଅନ୍ତି ଯଶୋଦାବଳା ।
ସେଠାରୁ ସର୍ବ ଗୋପୀ ଚଳିଗଲେ ।
ଆର କୁଞ୍ଜଠାରେ ପ୍ରବେଶ ହେଲେ ॥
ଦୂତିକା ବୋଇଲେ ଶୁଣ ଗୋ ସହି ।
ସୁଦେବୀ କୁଞ୍ଜ ଗୋ ଏହି ବୋଲାଇ ।
ତାଙ୍କ ସଙ୍ଗେ ହରି ରହସ କଲେ ।
ହାସ ରସେ ପ୍ରୀତି ସେ କରେ ଭଲେ ।
କୁଞ୍ଜଲତାର ଏ ଅଟଇ ଥାନ ।
ଯେ କୁଞ୍ଜେ କ୍ରୀଡ଼ା କରେ ଭଗବାନ ।
ସେଠାରୁ ଚଳନ୍ତି ଗୋପ ସୁନ୍ଦରୀ ।
ଆର କୁଞ୍ଜଠାରେ ଯାଇଣ ମିଳି ।
କେ ବୋଲେ ଏ କୁଞ୍ଜେ କଞ୍ଚନ ଥାଇ ।
ମୁରଲୀଧର ନଟବର ହୋଇ ।୬୩।
ତାଙ୍କ ସଙ୍ଗତରେ କରନ୍ତି ପ୍ରୀତି ।
ଭାବ ବିନୋଦେ କରେ ନାନା ରତି ।
ଆର କୁଞ୍ଜେ ଯାଇ ବୁଲନ୍ତି ରାଈ ।
ଏ କୁଞ୍ଜ ଗୋଷ୍ଠ ମରୁଆର ସହି ।

୫୯-୧ — ଭୂମିରେ ପଡ଼ି (ଗ,ଘ,ଙ,ଚ,ଛ,ଜ) । ୬୨-୧—ଏଠାରେ ଜାଣ (ଜ) । ୬୩-୨—ବିହାର କରି (ଜ) ।

ଏଥିରେ ଲୀଳା କରନ୍ତି ଶ୍ରୀନନ୍ଦ ।
ପଶା ଖେଳ ଖେଳେ ଉଚ୍ଛବ କରି ।
ସେଠାରୁ ଚଳିଲେ ଗୋପିକା ଗଣ ।
ଆଉ କୁଞ୍ଜଠାରେ ପ୍ରବେଶ ପୁଣ ।
ଦୂତିକା ବୋଇଲେ ଶୁଣ ମିତଣି ।
ଚନ୍ଦ୍ରରେଖାଙ୍କର ଏ କୁଞ୍ଜ ପୁଣି । ୮୦
ଲବଙ୍ଗଲତା ଯାଙ୍କ ସଙ୍ଗେ ଥାଇ ।
ଦୁଇ ଜଣ ସଙ୍ଗେ ନନ୍ଦ କହ୍ନାଇ ।
ମଧ୍ୟରେ ବସିଥାନ୍ତି ଦେବ ହରି ।
ନାନା ବନୋଦ ତାଙ୍କଠାରେ କରି ।
ଯେତେ କହଣ କୁଞ୍ଜ ବନୁ ଗଲେ ।
ଗୋପେଶ୍ୱରଙ୍କ ପାଶେ ଯାଇ ହେଲେ ।
ଫୁଲ ବେଲପତ୍ରି ନେଇଣ ଥିଲେ ।
ଗୋପଶ୍ୱରଙ୍କ ଶିରେ ଚଢ଼ାଇଲେ ।
କର ଯୋଡ଼ିଣ ଶୋଇଲେ ଆଗରେ ।
ଉଠିଣ ଜଣାନ୍ତି ତାଙ୍କ ଛାମୁରେ । ୮୫ ।
ସୁଦୟା କର ଭଗବନ୍ତ-ବରେ ।
କଳା କହ୍ନାଇଙ୍କି ଦେଖାଅ ଥରେ ।
ତୁମ୍ଭ ବିନୁ ଅନ୍ୟ ଶରଣ ନାହିଁ ।
କେତେ କହିବୁ ନ ଜାଣୁ କି ତୁହି ।
ଏତେ ବୋଲି ତହିଁ ଜଣାଣ କଲେ ।
ସର ଲବଣୀ ଆଣି ଭୋଗ ଦେଲେ ।
ସମସ୍ତେ ସେଠାରୁ ବାଣ୍ଟି ଭୁଞ୍ଜିଲେ ।
ଯମୁନା ଜଳରେ ହସ୍ତ ଧୋଇଲେ ।
ସେଠାରୁ ଗୋପସୁନ୍ଦରୀ ଚଳିଲେ ।
ବୃନ୍ଦାବନରେ ଯାଇ ସେ ମିଳିଲେ । ୯୦ ।
ସିଂହାସନ ପରେ ବସାଇ ରାଈ ।
ଧବଳ ଛତ୍ର ଟେକିଲେକ ନେଇ ।
କାହାଳୀ ବଜାଏ ଲବଙ୍ଗଲତା ।
ଆଲଟ ଚାମର ଧରେ ବନିତା ।
ମଣିମା ଡ଼ାକ ଆଗରେ ଡାକନ୍ତି ।
ଅଡ଼େ ହୁଅ ବୋଲି କେହୁ ବୋଲନ୍ତି ।
ଦୂତୀ ଲଳିତା ପରଷ୍ଟ ସେହନ ।
ପୂର୍ଣ୍ଣିମାସୀ ଯେ କଠୁଅଲ ପୁଣ ।
ଷୋଳ ନାୟିକା ଖଟିଣି ଖଟିଲେ ।
ସବୁ ଗୋପୀ ତହିଁ ପରଜା ହେଲେ ।।
ରଙ୍ଗଦେବୀ ଧରି ମୁରଲୀ ପୁଣ ।
ସୁସର ଶବଦ କଲା ସେ ଜାଣ ।
ଉପରୁ କୁସୁମ ହୋଇଲା ବୃଷ୍ଟି ।
ବୃନ୍ଦାବନ ଯାକ ବାସ ଚହଟ ।
ପାରିଜାତକ ପୁଷ୍ପ ବରଷିଲେ ।
ବୃନ୍ଦାବନ ଯାକ ରଙ୍ଗ ଦିଶିଲେ ।
ଶୋଭା ଦିଶିଲା ବୃନ୍ଦାବନ ପୁଣ ।
ଯେ ବନେ ରାଧା ରାଜା ହୋଯ୍ୟେ ଜାଣ ।
ଦୁଇ ପହର ଯହୁଁ ବେଳ ହେଲା ।
ମନ୍ତ୍ରୀ ଦେବୀ କର ଯୋଡ଼ି କହିଲା ।
ଚାଲ ଗୋ ଯିବା ଯେବେ ନିଜ ଘର ।
ବେଳ ତ ଉଚ୍ଛୁର ଆଜ ଦିନର ।
ସିଂହାସନରୁ ଶୁଣି ରାଈ ଉଠେ ।
ଧବଳ ଛତ୍ର ଧରାଇଣ ମାଥେ ।
ଧୀରି ଧୀରି ହୋଇ କରେ ଗମନ ।
ଆଗେ ନାୟିକା ପଛେ ଗୋପୀଗଣ ।
ମଧ୍ୟରେ ଚାଲେ ରାଧା ଠାକୁରାଣୀ ।
ଶୋଭା ପାଉଅଛି ଧରଣୀ ପୁଣି ।

୮୨-୨—ତାଙ୍କ ସଙ୍ଗେ କରି (ଘ,ଛ) । ୮୪-୨—ଠାରେ ଚଢ଼ାଇଲେ (ଖ,ଜ) । ୮୯-୨—ହାତ ଧୋଇଲେ (ଖ) ।

ଚନ୍ଦ୍ରଶାଳା ପୁରେ ପ୍ରବେଶ ହେଲେ ।
ରତ୍ନ ପଲଙ୍କରେ ଯାଇ ବସିଲେ ।୧୦୫।
ହୁଳହୁଳ ଦେଲେ ଗୋପ-ତରୁଣୀ ।
ବେଶ ଉଲ୍ଲାଗି ହେଲେ ରାଧା ପୁଣି ।
ଭଣ୍ଡାରେ ସାଇତ ସବୁ ରଖିଲେ ।
ବସିଣ ସମସ୍ତେ କଥା ହୋଇଲେ ।
ହୋଇଲେ ପୁଣ ବନାକେତେ ଗଲେ ।
ବନକୁ ଯିବା ଗୋ ଶରଧା ହେଲେ ।
ରାଧା ବୋଇଲେ ମୋତେ ଦେଖୁଥିବ ।
ପାସୋର ଆଉ ମନୁ ନ କରବ ।
ଜଣେ ଜଣେ ହୋଇ ମେଲାଣି ହେଲେ ।
ଯେଝା ଘରକୁ ବୋଲି ଚଳଗଲେ ॥
ବୃନ୍ଦାବତୀ ଦୂତୀ ହେଲେ ମେଲାଣି ।
କହ୍ନ ପୂର୍ଣ୍ଣମାସୀ ଚଳଲେ ପୁଣି ।
ଷୋଳ ନାୟିକା କହ୍ନ କର ଗଲେ ।
ଯେଝା ମନ୍ଦରରେ ପ୍ରବେଶ ହେଲେ ।
ସମସ୍ତେ ଗଲେ ରାଧା ରହେ ଏକା ।
ନିଜ ସଖୀମାନେ ସଙ୍ଗତେ ସାଖା ।

ଚରଣ ଧୋଇ ରାଧା ଘରେ ପଶି ।
ନଣନ୍ଦ ଆସିଣ ଅନ୍ନ ପରଶି ।
ଷଡ଼୍ ରସରେ କଲେକ ଭୋଜନ ।
ସଖୀଗଣମାନେ ସଙ୍ଗରେ ପୁଣ ।୧୧୫।
ଆଚମନ କର ଉଠିଣ ରାଈ ।
ରତ୍ନ ପଲଙ୍କରେ ବସେଲେ ଯାଇଁ ।
ସଖୀଗଣ ଆଣି ବଢ଼ାଥ ଦେଲେ ।
ତାମ୍ବୋଳ ଭୁଞ୍ଜି ସନ୍ତୋଷ ହୋଇଲେ ।
ଶୟନ କଲେ ପଲଙ୍କ ଉପରେ ।
ସଖୀଗଣ ପାଦ ମଞ୍ଚାଳେ ଧୀରେ ।
ଯୋଗ ନିଦ୍ରା ଗଲେ ଗୋଲକବାସୀ ।
ଶୁଣିଣ ପାବଂତୀ ହୋଇଲେ ତୋଷୀ ।
କହ୍ନୁ ବେଲରେ ଭାଙ୍ଗିଲେ ଅଳସ ।
ଜଟିଳା ନଣନ୍ଦ ସଙ୍ଗେ ପ୍ରବେଶ ।୧୨୦।
ଘର ଜଞ୍ଜାଳ କଲେ ଚନ୍ଦ୍ରାବଳୀ ।
ସକଳ ପଦାର୍ଥ ଘର ସମ୍ଭାଳ ।
ଦାସ ଦନାଇ ସେ ପାଦେ ଶରଣ ।
ଅନୁକ୍ଷଣେ ଧ୍ୟାୟେ ରାଧା ଚରଣ ।

୧୧୧-୨—ମେଲଣି ପୁଣି (ଗ) ।



# ପଞ୍ଚବିଂଶ ଛାନ୍ଦ

---

ଏଥୁ ଅନ୍ତରେ ଗୋ ଶୁଣିମା ଉମା ।
ମଥୁରା ଗଲେ ନନ୍ଦ ପୁଅ କାହ୍ନା । ୧ ।
ଯିବାରୁ ଚିନ୍ତା ଗୋପୀମାନେ କରି ।
ପୂର୍ବ କଥାମାନ ମନେ ସୁମରି ।
କେଉଣି କଥା ମନେ ନାହିଁ ଚିନ୍ତା ।
କୃଷ୍ଣ କଥାରେ ମନ କରି ବ୍ୟଥା ।
ଏହା ଶୁଣି କରି ଗଉରୀ ବୋଲେ ।
ପୁଣି ଗୋପୀମାନେ କିସ ସେ କଲେ ।
ତାଙ୍କ କଥା ମୋତେ ବୁଝାଇ କହ ।
ରାଧା କୃଷ୍ଣ କଥା ଶୁଣି ତ ସ୍ନେହ । ୫ ।
ଏକାନ୍ତ ବେଳେ ବନସ୍ତ ଭିତରେ ।
ଈଶ୍ୱର କହେ ଗଉରୀ ଆଗରେ ।
ମଥୁରା ପୁରେ ରାମ କୃଷ୍ଣ ଭୁଲେ ।
ଉଗ୍ରସେନ ସଙ୍ଗେ ଛନ୍ତି ସଭାରେ ।
ସାତବଂଶର ଯାଦବ ଅଛନ୍ତି ।
ଏହି ସମୟେ ନାରଦ ମିଳନ୍ତି ।
ଦେଖିଣ ସମସ୍ତେ ଉଠିଲେ ପୁଣ ।
ବନ୍ଦୋଇ ହୋଇ ନାରଦ ଚରଣ ।
ବସିବାକୁ ନେଇ ଆସନ ଦେଲେ ।
କୁଶଳ ବାରତା ସବୁ ପୁଚ୍ଛିଲେ । ୧୦ ।
ମୁନି ବୋଇଲେ ଅମ୍ଭେ ଅଛୁଁ ଭଲେ ।
ତୁମ୍ଭ କୁଶଳ କହ ନୃପବରେ ।
ଉଗ୍ରସେନ ବୋଲିଲେ ସବୁ କୁଶଳ ।

ରାମକୃଷ୍ଣ ଯେବେ ଛନ୍ତି ମୋହୋର ।
ନାରଦ ବୋଲେ ଦେବ ନରହରି ।
ଦୁଷ୍ଟ ଜନଙ୍କୁ ନାଶ ଦେବ କରି ।
ଜରାସନ୍ଧ ଧାଡ଼ି ତୁମ୍ଭଙ୍କୁ ହେବ ।
ବହୁତ ଜନ ଦୁଃଖୀ କରାଇବ ।
ଅଠର ବେଳ ଯୁଝିବ ସଙ୍ଗରେ ।
ଦେବକାର୍ଯ୍ୟ ଅଛି ବହୁତ ତାରେ ।୧୫।
ଏତେ କହିଣ ମୁନି ଯେ ଉଠିଲେ ।
ସଭା ଭାଗିଲା ସମସ୍ତେହେଁ ଗଲେ ।
ରାମ କୃଷ୍ଣ ସଙ୍ଗେ ମୁନି ଅଇଲେ ।
ବସୁଦେବ ଘରେ ପ୍ରବେଶ ହେଲେ ।
ବଳରାମ ଚଳଗଲେ ଭିତର ।
କୃଷ୍ଣ ରହିଲେ ମୁନିଙ୍କ ସଙ୍ଗର ।
କୃଷ୍ଣ ବୋଇଲେ ଶୁଣିମା ନାରଦ ।
ଗୋପର ଗୋଈ ମନର ବିଚ୍ଛେଦ ।
ତୁମ୍ଭେ ମୁନି ଗୋପପୁରକୁ ଯିବ ।
ଗୋପୀମାନଙ୍କୁ ବୁଝାଇ କହିବ । ୨୦ ।
ତାତ ଜନନୀଙ୍କି ପ୍ରବୋଧ କରି ।
ବୋଲିବ ନିକଟେ ଆସିବେ ହରି ।
ଶୁଣିଣ ନାରଦ ଅଇଲେ ବେଗେ ।
ପ୍ରବେଶ ହୋଇଲେ ଯମୁନା କୂଳରେ ।
ଯମୁନାରେ ପଶି ସ୍ନାହାନ କଲେ ।
ନିତ୍ୟ କର୍ମ ସାରି ଘୋପେ ମିଳଲେ ।

୧-୧—ଏଥୁଅନନ୍ତରେ ଶୁଣ ଗୋ ଉମା (ତ) । ୧୩-୨—ନାଶ ଦେବ ହରି (ଗ,ଜ) ।
୧୪-୧—ତୁମ୍ଭଙ୍କ ଦେବ (ଗ,ଘ,ଚ,ଛ,) । ୧୫-୨—ବହୁତ ଘୋରେ (ଛ) ।
୧୬-୧—ଭିଙ୍ଗିଣ (ଖ) । ୧୭-୨—ବସୁଦେବ ଦ୍ୱାରେ (ଘ) ।

ରଜନୀ ଶେଷେ ଉଠି ଚନ୍ଦ୍ରାବଳୀ ।
ନିଜ କର୍ମ ସାରି ସ୍ନାହାନ କଲି ।
ସଖୀମାନଙ୍କୁ ବୋଇଲେ ରାଧିକା ।
ଦଧି ମନ୍ଥନ ଗୋ କର ଜୀବିକା । ୨୯ ।
ତାଙ୍କଠାରୁ ଶୁଣି ଦାସୀ ଚଳିଲେ ।
ଶକଟେ ଗୋରସ ମେଳି ମନ୍ଥିଲେ ।
ରାଧିକା ପାଶେ ପୂର୍ଣ୍ଣମାସୀ ମିଳେ ।
ସହସ୍ରେ ସୁନ୍ଦରୀ ଗେଣ୍ଠି ସଙ୍ଗରେ ।
ଚନ୍ଦ୍ରାବଳୀ ଦେଖି ହରଷ ହେଲେ ।
ମାନ୍ୟ ଧର୍ମ କରି ବସ ବୋଇଲେ ।
ଏହି ସମୟେ ସହସ୍ରେ ସୁନ୍ଦରୀ ।
ନିଜ ସଖୀଗଣ ଆସିଣ ମିଳି ।
ଦୁଇ ସସ୍ର ନାରୀ ଗୋପିକା ମେଳ ।
ଚନ୍ଦ୍ରଶାଳା ପୁର ହେଲା ଗହଳ । ୩୦ ।
ପୂର୍ଣ୍ଣମାସୀ ବୋଲେ କିସ କରିବା ।
ଗୋପିକା ବୋଇଲେ ଯମୁନା ଯିବା ।
ରାଧା ବୋଇଲେ ଦିନାକେତେ ଗଲେ ।
ବୃନ୍ଦାବନ ପୁଣି ଯିବା ଗୋ ମେଳେ ।
ଏମନ୍ତେ କଥା ହୁଅନ୍ତେଣ ପୁଣ ।
ନାରଦ ଆସି ମିଳିଲେ ତକ୍ଷଣ ।
ଦେଖିଣ ରାଧା ସୁନ୍ଦରୀ ଉଠିଲେ ।
ନାରଦଙ୍କ ପାଦ ତଳେ ଶୋଇଲେ ।
ପୂର୍ଣ୍ଣମାସୀ ପୁଣି ଚରଣେ ପଡ଼ି ।
ଉଠିଣ ଉଭା ହୋଇ କହେ ନାରୀ ॥
ରାଧିକା ଉଠି କର ଯୋଡ଼ି କହି ।
ସୁବର୍ଣ୍ଣ ଝାରିରେ ନୀର ପୂରେଇ ।
ଚରଣ ଦୁଇ ଧୋଇ ମୁନିଙ୍କର ।
କ୍ଷୀନ ବସନରେ ପୋଛି ସତ୍ୱର ।
ବସିବାକୁ ଦିବ୍ୟ ଆସନ ଦେଲେ ।
ଫୁଲ ଚନ୍ଦନ ଦେଇ ସେବା କଲେ ।
ଛେନା ଦୁଧସର ଅଣାଇ ପୁଣ ।
ସୁବର୍ଣ୍ଣ ଥାଳରେ ସମ୍ଭାର ଜାଣ ।
ମୁନି ଭୋଜନ କରନ୍ତି ସନ୍ତୋଷେ ।
ଭୋଜନ ସାରି ଉଠିଲେ ହରଷେ ॥
ଦିବ୍ୟ ଆସନ ଆଣି ରାଇ ଦେଲେ ।
ସନ୍ତୋଷ ହୋଇ ମୁନି ବିଜେ କଲେ ।
ମୁନି ବୋଇଲେ ଶୁଣ ଚନ୍ଦ୍ରାବଳି ।
ମନ ନୀରସ ତୁମ୍ଭର ସୁନ୍ଦରି ।
କହିଁ କଥାକୁ ମନେ ଚିନ୍ତା କରି ।
ସତ କରି କହ ଆମ୍ଭ ଆଗରି ।
ଚନ୍ଦ୍ରାବଳୀ ବୋଲେ ଶୁଣିମା ହୋଉ ।
ଆମ୍ଭର ଦୁଖ ତମ୍ଭା କହ ଆଉ ।
କହିଁ ସୁଖ ଆଉ ଅଛି ହେ ମୁନି ।
ଗୋପରୁ କୃଷ୍ଣ ଗଲେ ଦିନୁ ପୁଣି । ୪୯ ।
ତୁମ୍ଭେ ତ ଜାଣ ପୂର୍ବ କଥାମାନ ।
ବାଲ୍ୟ ଖେଳଠାରେ କଲେ ଯେସନ ।
ସେଦିନେ ବ୍ରଜଭାନୁ ଘରେ ଥିଲି ।
ଏବେ ଗୋପପୁରେ ଆସି ରହିଲି ।
ମନରେ ଚେତିଣ ସେ କାଳ କଥା ।
କୃଷ୍ଣ ସଙ୍ଗରେ ଅଙ୍ଗ ସଙ୍ଗ ଶ୍ରୋତା ।
ସେହି ମନେ ରଖି ମୋ ସଙ୍ଗ ମେଳ ।
ପ୍ରତିଦିନରେ ମଦନ ଗୋପାଳ ।
ରତି ସୁରତିରେ କରନ୍ତି ଲୀଳା ।
ପ୍ରତିଦିନରେ ବିଜେ ନନ୍ଦବାଳା । ୫୦ ।

୩୦-୧ – ଦୁଇ ସସ୍ର ଗୋପ ନାରୀଙ୍କ ମେଳ (ଛ) । ୩୦-୨ – ଚନ୍ଦ୍ରଶାଳାପୁରେ (ଖ,ଚ,ଜ) ।
୫୦-୨ – ପ୍ରତିଦିନ ହେ (ଗ,ଛ) ।

ମୋତେ ବୋଲନ୍ତି ତୋ ପାଶୁ ଅନ୍ତର ।
ନୋହିବ କହୁଛି ତୁମ୍ଭ ଅଗର ।
ନିଷ୍ଠୁର କରି ମୋ ଦେହ ଛୁଇଁଲେ ।
ଏବେ ତ ମଥୁରା ଯାଇ ରହିଲେ ।
ତାଙ୍କ ବଚନ ଯେବେ ମିଥ୍ୟା ହେଲା ।
ଏ ଦେହ ଥିଲେ କିସ ହେବ ପରା ।
ଜୀବନ ଯିବାକୁ କରୁଛି ଲଏ ।
ମଦନ ଜ୍ୱାଳା ଦହୁଅଛି ଦେହେ ।
ଏତେ ଜଞ୍ଜାଳରେ କେତେ ଜୀଇବା ।
ଶ୍ରୀକୃଷ୍ଣ ଲାଗି ପରାଣ ତେଜିବା । ୬୫ ।
ଗଲେ ନଇଲେ ଏ ପୁରୁ କନ୍ଧାଇ ।
ନୂଆ ହନେ ଯେଉଁ ଭୋଗ କରଇ ।
ପୁରୁଷ ହେଲେ କି ଛାଡ଼ଇ ତାକୁ ।
ଏ କଥା ବିଚାର ତୁମ୍ଭ ମନକୁ ।
ତାହା ଶୁଣିଣ ବ୍ରହ୍ମାଙ୍କ କୁମର ।
ବୋଇଲେ ମନେ ନ ଧର ଅନ୍ତର ।
ଜାଣ ତ ଶ୍ରୀହରି ତ୍ରୈଲୋକ୍ୟ-ନାଥ ।
ଦୁଷ୍ଟ ନାଶିବାକୁ ହୋଇଲେ ଜାତ ।
ମେଦିନୀ ଭାର ଉଣାସ କରିବେ ।
ଦେବତାମାନଙ୍କ କଷ୍ଟ ହରିବେ ।୭୦।
ସନ୍ଥ ପାଳଣ ନାମ ଜଗାଇବେ ।
ତେବେ ସିନା ନିଶ୍ଚିନ୍ତ ହେବେ ହେବେ ।
ତୁମ୍ଭେ କିମ୍ପା ଦୁଃଖ ମନରେ ଘେନ ।
ସବୁରି ବାପ ଅଟେ ନାରାୟଣ ।
ଦୁଷ୍ଟ ରାବଣ ହେ ଏଥିରେ ଥିଲା ।
ତିନିପୁର ସାଧି ପ୍ରବଳ ହେଲା ।
ଦଶରଥ ଘରେ ଶ୍ରୀରାମ ରୂପେ ।
ଜନମ ହୋଇଲେ ଯାଇଁ ସାକ୍ଷାତେ ।
ଜନକ ଋଷି ଘରେ ବିଭା ହୋଇ ।
ସୀତା ଶୁଭ୍ରକେଶୀ ସେଥିରୁ ନେଇ ॥
ପିତାସତ୍ୟରେ ବନବାସ ଗଲେ ।
ଦଣ୍ଡକିର ସୀତା ହରିଲା ବଳେ ।
ବାଳିକି ମାରି ସୁଗ୍ରୀ ସଙ୍ଗ କଲେ ।
ସମୁଦ୍ରେ ଜାନରି ବନ୍ଧ ବାନ୍ଧିଲେ ।
ରାବଣ ମାରି ଜାନକୀଙ୍କି ନେଲେ ।
ଦେବଙ୍କ ଦୁଃଖ ନିବାରଣ କଲେ ।
ଜାନକୀ ଯେତେ କଷ୍ଟ ତହିଁ ପାଏ ।
ତୁମ୍ଭର ଦୁଃଖ ଯେ ନାହିଁ ଗୋ ମାଏ ।
ଅଳପ ଦିନ ଯେ ଅସିବ ହରି ।
ମନ ନିବେଶ ପାଦରେ ତାଙ୍କର ।୭୦।
ଅମ୍ଭେ ଅଇଲୁଁ ଏବେ ତୁମ୍ଭ ପୁର ।
କଥାଏ କହିବୁଁ କର ବିଚାର ।
ଯାହା ଦେଖିଲେ ସର୍ବେ ହେବେ ତୋଷ
ସେ କଥା ତୁମ୍ଭଙ୍କୁ ଦେବା ଅବଶ୍ୟ ।
କୃଷ୍ଣଙ୍କୁ ଚିତ୍ରପଟେ ରଖି କରି ।
ପ୍ରତିଦିନରେ ପୂଜା ବିଧି ପରି ।
ଦୁଃଖ ତୁମ୍ଭର ତାଙ୍କୁ ଜଣାଇବ ।
ରାତ୍ରି ଦିବସେ ନେତ୍ରେ ଦେଖୁଥିବ ।
ମାଳା ଘେନି କରି ଜପ କରିବ ।
ଗୋବିନ୍ଦ ନାମ ହୃଦଗତେ ଥିବ ।୭୫।
ତେବେ କୃଷ୍ଣଙ୍କୁ ଗୋ ପାଇବ ନାରୀ ।
ଶୁଣିକରି ରାଧା ଚରଣେ ପଡ଼ି ।
କାରଣ କରିଅ ହେ ମହାମୁନି ।
ଚିତ୍ରପଟ ଦିଅ ଆମ୍ଭଙ୍କୁ ପୁଣି ।
ବ୍ରହ୍ମଜ୍ଞାନ ମାଳ ମାତର ଦିଅ ।
ଶୁଣି ସନ୍ତୋଷ ବ୍ରହ୍ମାଙ୍କର ପୁଅ ।

୭୨ । ତୁମ୍ଭେ କି ଦୁଃଖ ମନରେ ଘେନିବ । ସବୁରି ନାମ ଅଟେ ବାସୁଦେବ (ଙ) । ୬୮-୨—ଶୁଭ୍ରକେଶୀ (ଖ,ଗ,ଘ,ଙ,ଚ,) ।

ବୋଇଲେ ଚିତ୍ରକାର ଡାକ ବେଗେ ।
ମନ୍ଦିରମାନ ଗୋ ସଜାଡ଼ ଏବେ ।
କୃଷ୍ଣଙ୍କୁ ଯାଇଣ ବେଗେ କହିବ ।
ଚିତ୍ରକାର ଶତେ ଘେନି ଆସିବ ।୮୦।
ଶୁଣି ଚନ୍ଦ୍ରାବଳୀ ତୋଷ ହୋଇଲେ ।
ଦାମ ସୁଦାମ ଡକାଇ ଆଣିଲେ ।
ମଧୁମଙ୍ଗଳ ସଜ ହୋଇ ଆସ ।
ରାଧିକା ପାଶରେ ମିଳଣ ତୋଷ ।
ଶ୍ରୀମତୀ ବୋଇଲେ ଶୁଣ ହେ ତୁମ୍ଭେ ।
ମଥୁରା ଯାପ୍ୟେ ଯାଅ କବା ଏବେ ।
କୃଷ୍ଣଙ୍କୁ ଯାଇଣ ବେଗେ କହିବ ।
ଚିତ୍ରକାର ସଙ୍ଗେ ଘେନି ଆସିବ ।
ତାହା ଶୁଣିଣ ନାରଦ ବୋଇଲେ ।
ଆମ୍ଭେ ଚିତ୍ରକାର ହେବା ଗୋ ଭଲେ ॥
ଶୁଣି ପୂର୍ଣ୍ଣିମାସୀ ତାଙ୍କୁ ବୋଇଲା ।
ଏବେ ଆମ୍ଭଠାରେ ସୁଦୟା ହେଲା ।
ଅଣାଅ ଯେବେ ବ୍ରହ୍ମାଙ୍କ କୁମର ।
ରଜନୀ ନଶି ହୋଇବ ଏଥର ।
ଶୁଣି ବ୍ରହ୍ମଋଷି ବୋଇଲେ ଜାଣ ।
ରଜନୀ କାଳେ କରିବା ଭିଆଣ ।
ଏମନ୍ତ ବଚନୁ ହୋଇଲା ରାତ୍ର ।
ସହସ୍ରେ ରୂପକାର ମିଳେ ଆସି ।
ପୂର୍ଣ୍ଣିମାସୀଙ୍କି କହେ ବ୍ରହ୍ମାବେତ୍ତା ।
ତୁମ୍ଭ ମନ୍ଦିରକୁ ଯିବ ଗୋ ମାତା ।୯୦।
ପହିଲେ ତୁମ୍ଭ ମନ୍ଦିରରେ ରୂପ ।
ଚନ୍ଦ୍ରଶିଖର ମାଧବ ସ୍ୱରୂପ ।
ରାଧିକା ସଙ୍ଗରେ ଗୋପସୁନ୍ଦରୀ ।
ନାରଦଙ୍କୁ ଘେନି ସେଠାରେ ମିଳି ।
ନାଟ ଆରମ୍ଭରେ ଚନ୍ଦ୍ରଶିଖର ।
ମାଧବରୂପ ଲେଖିଲେ ପାଶର ।
ସହସ୍ରେ ଗୋପିକା ଘରରେ ଜାଣ ।
ଚନ୍ଦ୍ରଶିଖର ମାଧବ ଭିଆଣ ।
ଦୁଇ ରୂପଙ୍କୁ ଚିତ୍ରପଟେ ଲେଖି ।
ସମସ୍ତଙ୍କ ମନ କରଣ ସୁଖୀ । ୯୫ ।
ଘରେ ଘରେ ପଶି ଦେଖିଲେ ଯାଇଁ ।
ଦୁଇ ରୂପ ଦିବ୍ୟଶୋଭା ଦିଶଇ ।
ମାଧବ ଚନ୍ଦ୍ରଶିଖର ଯେ ତିଭା ।
ତେସନ ପ୍ରାଏ ପୁର ଦିଶେ ଶୋଭା ।
ସେଠାରୁ ଚଳିଗଲେକ ବହନ ।
ଚନ୍ଦ୍ରଶାଳା ପୁରେ ମିଳ ବହନ ।
ରାଧା ମନ୍ଦିରେ ଚିତ୍ରପଟ ଲେଖି ।
ମଦନ ମୋହନ ରୂପ ପ୍ରକାଶି ।
ତାଙ୍କ ସଙ୍ଗେ ବନ୍ଧୁ ଦେବତା ଗଣ ।
ନାଟ ଆରମ୍ଭରେ ଯେମନ୍ତ ଗୁଣ ।୧୦୦।
ସେଠାରୁ ଗୋପୀଙ୍କ ଘରେ ମିଳିଲେ ।
ଚିତ୍ରପଟ ରୂପ ଲେଖନ କଲେ ।
ସହସ୍ରେ ଗୋପୀଙ୍କ ଘରରେ ପୁଣ ।
ମଦନ ମୋହନ ରୂପ ଲେଖନ ।
ଦିବ୍ୟ ମୂରତି ଲେଖି ରୂପକାର ।
ନାଟ ଆରମ୍ଭ ଯେମନ୍ତ ପ୍ରକାର ।
ଦୁଇସସ୍ତ ଚିତ୍ର ବଚିତ୍ର କଲ ।
ମଦନ ମୋହନ ମାଧବ ଘେର ।
ଲାବଣ୍ୟ ମୂରତି ଦେଖିଣ ଶୋଭା ।
ଗୋପର ଗୋଈ ମନେ କଲେ ଲୋଭା ॥

୯୨-୧—ଚନ୍ଦ୍ରଶେଖର (ଖ,ଢ) । ୯୨-୨—ପାଶର (କ) । ୯୯-୨—ଯେମନ୍ତେ (ଘ,ଙ,ଚ) ।
୧୦୨-୧—ଚିତ୍ରକାର (ଚ) ।

ଦୁଇସହସ୍ର ଗୋପୀ ଡାକିଣ ମୁନି ।
ବୋଇଲେ ପୂଜାବିଧି କର ପୁଣି ।
ଚନ୍ଦ୍ରପଟ୍ଟ ଜୀବନ୍ୟାସ ନ ହେବ ।
ବିଗ୍ରହରେ ଦେଖା ଦେବ ମାଧବ ।
ତାହା ଶୁଣି ଗୋପୀ ବହନ ଗଲେ ।
ଯେଝା ଘରେ ଯାଇଁ ପ୍ରବେଶ ହେଲେ ।
ଦଧି ସର ଦୁଧ ଛେନା ଲବଣୀ ।
ନବାତ ପାଚିଲା କଦଳୀ ପୁଣି ।
ଗୁଆ ନଡ଼ିଆ ନେଉଥିଆ ତଣ୍ଡୁଳ ।
ସମସ୍ତଙ୍କ ଘରେ କଲେ ସମ୍ଭାର ।
ପ୍ରବେଶ ହୋଇଲେ ରାଧିକା ପୁରେ ।
କହିଲେ ନାରଦ ଋଷି ଆଗରେ ।
ଚନ୍ଦ୍ରାବଳୀ ସର୍ବ ଆଣିଣ ପୁଣ ।
ଋଷିଙ୍କ ଆଗେ ଦେଲେ ତତକ୍ଷଣ ।
ଦେଖିଣ ନାରଦ ଚରଣ ଧୋଇ ।
ଚନ୍ଦ୍ରପଟ୍ଟଙ୍କୁ ଜୀବଦାନ ଦେଇ ।
ମନ୍ତ୍ର ପଢିଣ ଜୀବନ୍ୟାସ କଲେ ।
ମନ୍ତ୍ର ପୂଜା କରିଣ ଭୋଗ ଦେଲେ ।
ରାଧାଙ୍କୁ ଗୋପାଳ ମନ୍ତ୍ର କହିଲେ ।
ମନ୍ତ୍ର ଉପଦେଶ ସକଳ ଦେଲେ ।
ବେଶ କରିବା ମନ୍ତ୍ର କହିଗଲେ ।
ସ୍ନାନଦାନ ତର୍ପଣ କରିବ ବୋଲେ ।
ମାଳା ଜପିବା ମହାମନ୍ତ୍ର ଦେଲେ ।
ଶୟନ କରିବା ମନ୍ତ୍ର କହିଲେ ।
ଏହିପରି ଦୁଇ ସହସ୍ର ନାରୀ ।
ସମସ୍ତଙ୍କ ପୁରେ ବିଜୟେ କରି ।
ସର୍ବଙ୍କ ଘରରେ ନାଟ ଆରମ୍ଭ ।
ଜୀବନ୍ୟାସ କରି କହିଲେ ସର୍ବ ।
ପୂଜାର ମନ୍ତ୍ର ସମସ୍ତଙ୍କୁ ଦେଲେ ।
ସ୍ନାନଦାନ ବିଧି ତର୍ପଣ କହିଲେ ।
ବେଶ ଭୂଷଣ ଯେଉଁ ମନ୍ତ୍ର ହେବ ।
ବିଧାନ ବିଧି ସକଳ ଯେ ସର୍ବ ।
ପଦ୍ଧତି କହିବେ ଯେଉଁ ପ୍ରକାରେ ।
ସକଳ କଥା କହିଲେ ତାଙ୍କରେ ।
ସମସ୍ତେ ଶୁଣି ଯେଝା ଘରେ ଯାଇଁ ।
ଫୁଲ ଚନ୍ଦନ ଯେ ବେଶ କରାଇ ।
ପୂର୍ଣ୍ଣିମାସୀ ସଙ୍ଗେ ରାଧିକା ମୁନି ।
ଘନଜଣ ଯାଇ ଦେଖିଲେ ପୁଣି ।
ସମସ୍ତଙ୍କ ଘରେ ଶ୍ରୀହରି ଦେଖି ।
ମନରେ ବହୁତ ହୋଇଲେ ସୁଖୀ ॥
ସେ ରାଧା ଗୋପୀ ଚରଣେ ଶରଣ ।
ଦନାଇଁ ଦାସ ହୋଇଲା କାରଣ ।

୧୧୬-୨ – ଋଷିଙ୍କ ଆଗରେ ଦେଲେ ତକ୍ଷଣ (ଡ) । ୧୨୦-୨ – ବିଧି ସମସ୍ତ କହିଲେ (ଘ) ।



# ଷଡ଼ବିଂଶ ଛାନ୍ଦ



ଏଥୁ ଅନନ୍ତରେ ଶୁଣ ଗୋ ଦେବି ।
ନାରଦ ଚରଣେ ସମସ୍ତେ ସେବି ।
ଚନ୍ଦ୍ରାବଳୀ ସଙ୍ଗେ ସହସ୍ରେ ଗୋଈ ।
ପୂର୍ଣ୍ଣିମାସୀ ସଙ୍ଗେ ସହସ୍ରେ ରହି ।
ନାରଦ ବୋଇଲେ ଶୁଣ ଗୋ ତୁମ୍ଭେ ।
ରାଧାଙ୍କୁ ପ୍ରବୋଧ କର ଗୋ ଏବେ ।
ପୂଜା ସୁମରଣ ବେଶ କରବ ।
ଯେତେ ଦିନ ତୁମ୍ଭ ଶରୀର ଥିବ ।
ଚନ୍ଦ୍ରପଟଙ୍କୁ ସୁମରଣା କଲେ ।
ସକଳ ପଦାର୍ଥ ମିଳିବ ଭଲେ । ୫ ।
ସକଳ କହିବେ ଏହୁ ପୁରୁଷ ।
ଆଗତ ଭବିଷ ଯେତେ ଉତ୍ପାତ ।
ଏତେ ବୋଲିଣ ନାରଦ ସୁମରି ।
ସହସ୍ରେ ସୁବର୍ଣ୍ଣମାଳାକୁ ଧରି ।
ରାଧିକାଙ୍କୁ ନେଇ ସେ ମାଳା ଦେଲେ ।
ସମସ୍ତଙ୍କୁ ବାଣ୍ଟି ଦିଅ ବୋଇଲେ ।
ସହସ୍ରେ ଗୋପୀଙ୍କି ବାଣ୍ଟିଣ ଦେଲେ ।
ଗୋଟିଏ ମାଳା ରାଧିକା ରଖିଲେ ।
ମୁନି ବୋଇଲେ ଗୋ ଚନ୍ଦ୍ରବଦନା ।
ମହାମନ୍ତ୍ରେ ମାଳା ଜପିବ ପୁଣି ।୧୦।
ମୁକ୍ତାମାଳା ଦେଲେ ପୂର୍ଣ୍ଣିମାସୀଙ୍କି ।
ରତ୍ନମାଳା ନେଲେ ସହସ୍ରେ ଗୋପୀ ।
ମହାମନ୍ତ୍ର ତାଙ୍କୁ କହିଣ ଗଲେ ।
ଲଳିତା ପୁରେ ପରବେଶ ହେଲେ ।
ବିଶାଖା ଅଛି ଯେ ସେହି ମନ୍ଦିରେ ।
ବିଚାର କରନ୍ତି କୃଷ୍ଣ କଥାରେ ।
ମୁନିଙ୍କି ଦେଖି ଚରଣ ଧୋଇଲେ ।
ଝୀନବସନେ ଚରଣ ପୋଛିଲେ ।
ରତ୍ନ ପଲଙ୍କରେ ବସାଏ ନେଇ ।
ବୋଇଲେ ସୁଫଳ ଦିନ ଅଟଇ । ୧୫ ।
ଶୁଣି ବ୍ରହ୍ମବେତ୍ତା ହୋଇଲେ ତୋଷ ।
ପଲଙ୍କ ଉପରେ ବସି ହରଷ ।
ବୋଇଲେ ଶୁଣ ଗୋ ଗୋପ-ସୁନ୍ଦରି ।
କିସ ବିଚାରେ ଗଲେ ତ ଶ୍ରୀହରି ।
ଏହି ସମୟରେ ବିଶାଖା ମିଳି ।
ମୁନିଙ୍କି ଦେଖି ତଳେ ଶୋଏ ବାଳୀ ।
ଉଠିଣ କର ଯୋଡ଼ି ଉଭା ହେଲା ।
ବିନତି ହୋଇ ବଚନ କହିଲା ।
ଆଜ୍ଞା କଣି ପାଏ ସୁଫଳ ପୁଣି ।
ଦୁଖୀ ନେତରେ ରହିଛୁ ତ ଜାଣି ।
ଅଳପୁଅ କର୍ମେ ଗଙ୍ଗା କି ବିଜେ ।
ଆମ୍ଭଙ୍କୁ ଏମନ୍ତ ପରିଏ ସାଜେ । ୨୦ ।
ଶୁଣିଣ କଳହି ପରମ ତୋଷ ।
ବୋଇଲେ ବିଶାଖା ବସ ଗୋ ପାଶ ।
ତୁମ୍ଭ ସଙ୍ଗରେ ଯେତେ ଗୋପାଳୁଣୀ ।
ତାହାଙ୍କୁ ଘେନାଇ ଆସ ଗୋ ପୁଣି ।
ଆମ୍ଭେ ଆସିବାର ତାଙ୍କୁ କହିବ ।
ଦୂତ ଭେଜିଣ ବେଗେ ଅଣାଇବ ।
ଶୁଣିଣ ବିଶାଖା ସଖୀଙ୍କି କହି ।
ସମସ୍ତଙ୍କୁ ଡାକି ଆଣ ଗୋ ଯାଇଁ ।

ମୁନି ବୋଇଲେ ଗୋ ଲଳିତା ଶୁଣ ।
ତୁମ୍ଭ ସାଖାଗଣ ଡକାଇ ଆଣ ॥
ପାଞ୍ଚ ସାତ ସଖୀ ବହନ ଗଲେ ।
ଦୁଇସସ୍ର ଗୋପୀ ତାଙ୍କ ଆଣିଲେ ।
କେ ବୋଲେ ନାରଦ ଆସି ଅଛନ୍ତି ।
ଦର୍ଶନ କରିବା କଳପଋଷି ।
କେ ବୋଲେ ବିଜେ କଲେ ବ୍ରହ୍ମବେତ୍ତା ।
ଦେଖିଲେ ଦୂର ଯିବ ଦଶା ବ୍ୟଥା ।
କେ ବୋଲେ ନାରଦ କନ୍ଧା ଅଇଲେ ।
ଏମନ୍ତ ବୋଲି ସମସ୍ତେ ଧାଇଁଲେ ।
ସକଳ ଗୋପୀ ଯାଇ ବେଶ ହେଲେ ।
ଲଳିତା ବିଶାଖା ମୁନି ଦେଖିଲେ ।
ଗୋଷ୍ଠ ଗୋଷ୍ଠ ହୋଇ ଚରଣେ ଶୋଇ ।
ସମସ୍ତଙ୍କୁ ଋଷି କଲ୍ୟାଣ ଦେଇ ।
ଗହଳ ହୋଇଲା ଲଳିତା ପୁରେ ।
ପୁଞ୍ଜ ପୁଞ୍ଜ ହୋଇ ବିଚାର କଲେ ।
କେ ବୋଲେ ଆମ୍ଭର ଭାଗ୍ୟ ଦଶିଲା ।
ନାରଦ ଦର୍ଶନ ଆଗ ମିଳିଲା ।
କେ ବୋଲେ କେଉଣେ ଆସିଛନ୍ତି ଋଷି ।
କେ ବୋଲେ ଆମ୍ଭଙ୍କୁ ଦେଖି ଆସିଛି ॥
ଏମନ୍ତେ ଗୋପୀଏ କରେ ବିଚାର ।
ନାରଦ ବୋଇଲେ ଶୁଣ ସକଳ ।
ଗୋବିନ୍ଦ ଗଲେ ତ ତୁମ୍ଭଙ୍କୁ ଛାଡ଼ି ।
ବିରହ ଜଳେ ତୁମ୍ଭେ ଅଛ ବୁଡ଼ି ।
କିସ ବିଚାର କର ଗୋ ସୁନ୍ଦରି ।
ଆମ୍ଭ ଆଗେ କଥା ନ କହ ଫେଡ଼ି ।
ଲଳିତା ବୋଇଲେ ଶୁଣିମା ହୋଉ ।
ଯଉଁ ଦିନୁ ଗଲେ ଗୋପରୁ ପ୍ରଭୁ ।
ସେହି ଦିନୁ ଆମ୍ଭେ ହୋଇଲୁଁ ଦୁଃଖୀ ।
ଗୋବିନ୍ଦ କରି ଗଲେ ନିଗମାଖୀ ।
ଝୁରି ମରୁଅଛୁଁ ସକଳ ଗୋଇ ।
ଜୀବ ଗଲାଣି ପ୍ରାଣ ଅଛି ରହି ।
ନିଲଜ ହୋଇଲୁଁ ଗୋପରେ ଗୋଇ ।
ଛାଡ଼ି କରି ଗଲେ ହଦନୁ ମାଧୋଇ ।
ତାହା ଶୁଣି କରି କହିଲେ ଋଷି ।
ଅପୂର୍ବ ମାଇବାକୁ ଜାତ ଏଥି ।
ଦୁଷ୍ଟ ନାଶ ଗଲେ ଦେବତା ଖୁସି ।
ଧରଣୀ ଭାର ହୋଇବ ଉଣାସି ।
ଆଗେ ଦୈତ୍ୟ ଥିଲା ହିରଣ୍ୟ ବୀର ।
ପୁତ୍ରେକ ଜାତ ପ୍ରହଲ୍ଲାଦ ତାର ।
ବାପ ଈଶ୍ୱରଙ୍କ ବଇରେ ପୁଣି ।
ଇନ୍ଦ୍ରପୁର ଯାଇ ସାଧିଲା ଜାଣି ।
ଧରଣୀ ଭାର ସପୁ ନ ସହିଲା ।
ନାରାୟଣ ଆଗେ ଗୁହାରି କଲା ।
ତାକୁ ମାରିବାକୁ ପାଷାଣ ହରି ।
ପ୍ରହଲ୍ଲାଦ ଭକ୍ତି ହେଲା ତାଙ୍କର ।
ପୁତ୍ରର ଛଳେ ପିତା ନାଶ କଲେ ।
ସ୍ୱର୍ଗେ ଇନ୍ଦ୍ରପଣ ତାହାକୁ ଦେଲେ ।
ଏମନ୍ତେ ଉଣାସ କରନ୍ତେ ମହୀ ।
ସମସ୍ତଙ୍କର ସେ ନନ୍ଦ କହ୍ନାଇ ।
ତୁମ୍ଭେ ଯେ ବୋଲୁଛ ଆମ୍ଭର ପୁଣି ।
ଏ କଥା ତୁମ୍ଭର ନୋହେ ପ୍ରମାଣ ।
ଏବେ ଜରାସନ୍ଧ ଧାଡ଼ି ଦେଇଛି ।
କେମନ୍ତେ ଆସିବେ ନନ୍ଦର ବନ୍ଧୁ ।
ଏହା ଶୁଣି କହି ବିଶାଖା କହି ।
ଯେତେବେଳେ ଗୋପେ ଥିଲେ ମାଧୋଇ

୨୫-୨—ସଖାଗଣେ (ଙ,ଛ) ।

କେତେ ଅସୁର ଏଥି ନାଶ ଗଲେ ।
ଏବେ ଏ ପୁର କ୍ଷମା ନ ଅସିଲେ ।
ତୁମ୍ଭେ ତ ଜ୍ଞାନୀ ଅଟ ବ୍ରହ୍ମବେତ୍ତା ।
କେମନ୍ତେ ଅମ୍ଭେ ହୋଇବୁଁ ଅଚନ୍ତା ।
ଏକଥା ବିଚାରି ଅମ୍ଭଙ୍କୁ କହ ।
ବ୍ରହ୍ମଜ୍ଞାନ ଦେଇ ବୋଧ କରାଅ । ୫୫ ।
ନାରଦ ବୋଇଲେ ଅରତ ନୋହ ।
ଯେମନ୍ତେ ଶାନ୍ତ ହେବ ଦେଖି ଦେହ ।
ଚିତ୍ରପଟରେ ଗୋବିନ୍ଦ ଲେଖାଇ ।
ସମସ୍ତଙ୍କ ପୁରେ ଯିବା ରଖାଇ ।
ଜୀବନ୍ୟାସ କରି ଦେବା ତାହାଙ୍କୁ ।
ଧ୍ୟାନବନ୍ତ କରି ଯିବା ତୁମ୍ଭଙ୍କୁ ।
ତୁମ୍ଭେ ସମସ୍ତେ ଯେଝା ଘର ଯାଅ ।
ମନ୍ଦିର ନିର୍ମଳ ବେଗେ କରାଅ ।
ଉଆ ତଣ୍ଡୁଳ ଗୋ ନଡ଼ିଆ ଗୁଆ ।
ଛେନା କଦଳୀ ଗୋ ନବାତ ଘିଅ ॥
ଦୁଧ ଦହି ସର ଲବଣୀ ଫୁଲ ।
ଚନ୍ଦନ ଗନ୍ଧ ଆଦି ସକଳ ।
ସକଳ ପଦାର୍ଥ ଥୋଇଣ ଅସ ।
ବ୍ରହ୍ମଜ୍ଞାନ ଦେବା ସେ ଉପଦେଶ ।
ତେବେ ତୁମ୍ଭେମାନେ ହେବ କାରଣ ।
ଅଳପ ଦିନେ ଭେଟ ନାରାୟଣ ।
ଶୁଣିଣ ସମସ୍ତେ ତୋଷ ହୋଇଲେ ।
ଯେ ଯାହା ଘରକୁ ବେଗେ ଚଳିଲେ ।
ମନ୍ଦିରମାନ ନିର୍ମାଣ କରିଣ ।
ସକଳ ପଦାର୍ଥ ସଜାଡ଼ି ପୁଣ । ୬୫ ।
ଭୋଗ ଫୁଲ ପାନ ଗୁଆ ଥୋଇଲେ ।
ଗୋଷ୍ଠି ଗୋଷ୍ଠ ହୋଇ ଅସି ମିଳିଲେ ।
ତୁଣ୍ଡରେ ରାମ କୃଷ୍ଣ ନାମ ଗାଏ ।
ମୁନଙ୍କ ପାଶରେ ଯାଇ ବନ୍ଦୋତ୍ସେ ।
ଲଳତା ଉଠି ଘରକୁ ଗଲେ ।
ଠାବ ଠାବ କରି ସବୁ ରଖିଲେ ।
ମୁନଙ୍କ ପାଶେ ପରବେଶ ଯାଇ ।
ବିଶାଖା ଉଠି ନଜଘରେ ଯାଇ ।
ମନ୍ଦିର ଗୋଟିଏ ଯତନ କରି ।
ତହିଁରେ ସବୁ ଦ୍ରବ୍ୟ ନେଇ ଭରି ।୭୦।
ସଖୀଗଣ ସଙ୍ଗେ ଘେନିଣ ପୁଣ ।
ପ୍ରବେଶ ନାରଦ ଋଷି ପାଶେଣ ।
ନାରଦ ବଚନ ହୋଇଣ ଜାଣି ।
ଚିତ୍ରପଟକୁ ସୁମରଣା ପୁଣି ।
ଅସିଣ ମିଳିଲେ ସହସ୍ରେ ରୂପ ।
ତାଙ୍କୁ ଲେଖି କରି କହିଲେ କନ୍ତୁ ।
ବୋଇଲେ ଉଠ ଗୋ ଗୋପସୁନ୍ଦରୀ ।
ଯାଙ୍କୁ ଘେନିଣ ନଜ ଘରେ ଚଳ ।
ମନ୍ଦିରମାନ ଦେଖାଇଣ ଦେବ ।
ଯତନ କରି ରୂପ ଲେଖାଇବ । ୭୫ ।
ଅମ୍ଭ ପାଶରେ ହୋଇବ ପ୍ରବେଶ ।
ଅମ୍ଭେ ଯାଇଣ ଦେବା ଜୀବନ୍ୟାସ ।
ରୂପକାରକୁ ବୋଇଲେ କଳହ ।
ଗୋବିନ୍ଦ ରୂପ ଚିତ୍ରପଟେ ଲିହ ।
ସହସ୍ରେ ମନ୍ଦିରେ ଲେଖିବ ପୁଣି ।
ବାମ ହସ୍ତେ ଗିରି ଧରିବା ଜାଣି ।
ଯେସନେ ଇନ୍ଦ୍ର ବିବାଦ କାଳରେ ।
ଗୋପ ସମ୍ପଦ ରଖେ ହରଷରେ ।
ସେହି ସାଦୃଶରେ ରୂପ ଲେଖିବ ।
ରୂପ ଦେଖିଲେ ମୋହ ଯିବେ ସର୍ବ ॥

୧୪୨ — ଯେଝା ଘରକୁ ବେଗେ ଚଳଇଲେ (ଡ) ।

ଆଉ ରୂପକ ଲେଖିବ ପ୍ରମାଣ ।
ବ୍ରହ୍ମା ଯେସନେ ଦେଖେ ନାରାୟଣ ।
ବତ୍ସ ହରଣ କଲାବେଳେ ପୁଣ ।
ଶଙ୍ଖ ଚକ୍ର ଗଦା ଶ୍ରୀହସ୍ତେ ଜାଣ ।
ଚତୁର୍ଭୁଜ ଅଟେ ଯେ ରୂପ ପୁଣ ।
ବିଶାଖାପୁରେ ଲେଖିବ ପ୍ରମାଣ ।
ବିଶାଖାର ସାଖୀ ସହସ୍ରେ ନାରୀ ।
ସମସ୍ତଙ୍କ ପୁରେ ଲିଖିତ କରି ।
ନାରାୟଣ ରୂପ ଦେଖିଲେ ମୋହ ।
ଶଙ୍ଖ ଚକ୍ର ଗଦା ଅଛି ସେନେହ ।୮୫।
ଏମନ୍ତ ଶୁଣି ରୂପକାର ଗଲେ ।
ଘରେ ଘରେ ପଶି ରୂପ ଲେଖିଲେ ।
ଇନ୍ଦ୍ର ଗୋବିନ୍ଦ ଯଉଁ ରୂପେ ପୁଣ ।
ବାମହସ୍ତେ ଗିରି ଅଛି ପ୍ରମାଣ ।
ସହସ୍ରେ ମନ୍ଦିରେ ସହସ୍ରେ ରୂପ ।
ଲେଖିଲେ ଚିତ୍ରପଟରେ ସ୍ୱରୂପ ।
ଲଳିତା ପୁରେ ଲିଖି ବନ୍ଦୀ କରି ।
ଗୋବିନ୍ଦ ଗୃହପାଶେ ଦେବେ ଧେରି ।
ସେଠାରୁ ବିଶାଖା ପୁରକୁ ଗଲେ ।
ନାରାୟଣ ରୂପ ଲିଖିତ କଲେ ।୯୦।
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତରେ ।
ଚତୁର୍ଭୁଜ ରୂପ ଦେଖି ସକଳେ ।
ମନ ସନ୍ତୋଷ ହୋଇଲା ତାଙ୍କର ।
ସହସ୍ରେ ରୂପ ଲେଖେ ରୂପକାର ।
ସେଠାରୁ ଗୋପୀ ଘରେ ଯାଇଁ ଲେଖେ ।
ନାରାୟଣ ମୂର୍ତ୍ତି ଯଉଁ ସ୍ୱରୂପେ ।
ସହସ୍ରେ ଗୋପାଙ୍ଗଣୀ ଘରେ ରୂପ ।
ଲେଖିଣ ନାରଦ ପାଶେ ପ୍ରବେଶ ।
ନାରଦ ବୋଇଲେ ଯାଅ ଶୂନ୍ୟରେ ।
ଆଉ ଛନ୍ଦ ବନ୍ଦ ଅଛି ଏ ପୁରେ ।୯୫।
ଶୁଣିଣ ରୂପକାର ଚଳି ଗଲେ ।
ଅମର ପୁରରେ ଯାଇଁ ମିଳିଲେ ।
ଲଳିତା ବିଶାଖା ସଙ୍ଗରେ ଗୋଣ୍ଠି ।
ଓଲଗ ହୋଇ ନାରଦଙ୍କୁ କହି ।
ଶୁଣିଣ ନାରଦ ପାଦ ଧୋଇଲେ ।
ଲଳିତା ମନ୍ଦିରେ ପ୍ରବେଶ ହେଲେ ।
ଜୀବନ୍ୟାସ କଲେ ଗୋବିନ୍ଦ ରୂପ ।
ବୋଇଲେ ସଜୀବ ହୁଅ ସ୍ୱରୂପ ।
ଦେଖା ଦରଶନ ଭାବରେ ଦେବ ।
ପୁରତ୍ତ ରତ୍ତ କେବଳ କରିବ ।୧୦୦।
ଏତେ ବୋଲି ପୂଜା ମନ୍ତ୍ରରେ କଲେ ।
ଛେନା ଦୁଧ ସର ସକଳ ଭୁଲେ ।
ଗନ୍ଧ ଚନ୍ଦନ ଧୂପ ଦୀପ ଦେଲେ ।
ଆଲତି ନେଇ ବନ୍ଦାପନା କଲେ ।
ପୂଜାମନ୍ତ୍ର ଲଳିତାରେ କହିଲେ ।
ବେଶ କରିବାର ଶିଖାଇ ଦେଲେ ।
ଧୂପ ଦୀପ ସ୍ନାନ ଯେରୂପେ ହୋଇ ।
ସକଳ ବିଧି ଦେଲେ ତାଙ୍କୁ କହି ।
ନାରାୟଣ ପୂଜା ଗୋପାଲ ମନ୍ତ୍ରେ ।
ବ୍ରହ୍ମଜ୍ଞାନ କହି ଦେଲେ ଗୁପତେ ॥
ତୁଳସୀମାଳ ଗୋଟି ଦେଲେ ନେଇ ।
ବୋଇଲେ ଏଥେ ଜପ କର ତୁହି ।
ସହସ୍ରମାଳା ଦେଲେ ଆଣି କରି ।
ସର୍ବ ଗୋପୀଙ୍କି ଗୋ ଦେବ ସୁନ୍ଦରୀ ।
ତୁମ୍ଭ ସଙ୍ଗ ସଖୀ ଅଛନ୍ତି ସହସ୍ରେ ।
ଦ୍ରାବ ସମସ୍ତଙ୍କୁ ଋଷି ହରଷେ ।
ଗହଳ ହୋଇ ଚଳିଗଲେ ପୁଣ ।
ଘରେ ଘରେ ରୂପ ଦେଖନ୍ତି ଜାଣ ।

କଉଁ ବେଶ କରେ ରଙ୍ଗ ବାସରେ ।
କେ କଳା କାଛ ପିନ୍ଧାଏ ଯତ୍ନରେ ॥
କଉଁ ବସନ୍ତ ପୁଷ୍ପେ ବେଶ କର ।
ବସନ୍ତ ପଡନୀ କାଛେଣୀ କର ।
ଧବଳ ବେଶ କରେ କଉଁ ନାରୀ ।
ନୀଳ ଉଜ୍ଜ୍ୱଳ ବେଶ କଉଁ କର ।
ସମସ୍ତଙ୍କ ଘରେ ଦେଖିଲେ ଫେର ।
ବିଶାଖା ପୁରେ ମୁନି ଯାଇ ମିଳ ।
ଦେଖିଲେ ଦିବ୍ୟପୁର ଗୋଷ୍ଠ ଦ୍ୱାର ।
ଧବଳ ଦିଶଇ ଚୂନ ମନ୍ଦିର । ୧୧୫ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରଣ ।
ବିଜୟେ କରିଛନ୍ତି ନାରାୟଣ ।
ଦେଖି କରି ମୁନି ହରଷ ହେଲେ ।
ଚରଣ ଧୋଇ ନିକଟେ ବସିଲେ ।
ଜୀବନ୍ୟାସ କଲେ ନାରାୟଣଙ୍କୁ ।
ପୂଜା କଲେ ଦିବ୍ୟ ପଦାର୍ଥ ତାଙ୍କୁ ।
ବ୍ରହ୍ମଜ୍ଞାନ ତାଙ୍କୁ ଗୁପତେ କହି ।
ନାରାୟଣ ପୂଜା ମନ୍ତ୍ର କହି ।
ସ୍ଫଟିକ ମାଳା ସମସ୍ତଙ୍କୁ ଦେଲେ ।
ଏ ମାଳ ଜପ କରିବା ବୋଇଲେ ॥
ମହାମନ୍ତ୍ରରେ କର ସୁମରଣା ।
ସମସ୍ତ ଗୋପୀଙ୍କୁ ଶିଖାଇ ସିନା ।
ବିଶାଖାଙ୍କୁ ଘେନି ସଙ୍ଗରେ ଚଳି ।
ଘରେ ଘରେ ପଶି ଦେଖନ୍ତି ଫେରି ।
ନାରାୟଣ ବିଜେ ସମସ୍ତ ପୁରେ ।
ବେଶ ହୋଇଣ ସକଳ ମନ୍ଦିରେ ।
ଦିବ୍ୟରୂପ ସମସ୍ତଙ୍କୁ ମୋହିଲେ ।
ଦେଖିଣ ଗୋପୀ ସନ୍ତୋଷ ହୋଇଲେ ।
ସେଠାରୁ ନାରଦ ଚଳିଣ ଗଲେ ।
ଦାସ ଦିନାଇ ସେବେ ନିରନ୍ତରେ ।୧୨୫।

୧୧୦-୧—ରଙ୍ଗ ପୁଷ୍ପରେ (କ) ।



# ସପ୍ତବିଂଶ ଛାନ୍ଦ

ଶୁଣିଣ ଗରୁଡ଼ ବୋଇଲେ ଶୁଣ ।
ଶ୍ୱର ନାୟିକା ଗଲେ ପରମାଣ ।
ବାରା ନାୟିକା ଯେ ରହିଲେ ଗୋପେ ।
ତାହାଙ୍କୁ ବିଷ କହେ ବ୍ରହ୍ମସୁତେ ।
ଏହା ମତେ ତୁମ୍ଭେ ସଂକ୍ଷେପି କହ ।
ଶୁଣିମାକୁ ମୋର ବଳଇ ସ୍ନେହ ।
ଶୁଣି ତ୍ରିଲୋଚନ ସନ୍ତୋଷ ହେଲେ ।
ଗୋପପୁର କଥା ତାଙ୍କୁ କହିଲେ ।
ବୋଇଲେ ନାରଦ ସେଠାରୁ ଯାଇ ।
ମାଳତୀ ପୁରେ ବିଜେ କଲେ ସେହି ।
ସ୍ନାନ କରୁଛି ଗୋପ ସୁନ୍ଦରୀ ।
ତୀରପାଶେ ସଖୀ ଅଛନ୍ତି ଘେରି ।
ମୁନିଙ୍କି ଦେଖି ତରତରେ ପୁଣ ।
ଓଦା ବସନରେ ଗଲାକ ପୁଣ ।
ସୁବର୍ଣ୍ଣ ଝାରିରେ ଅଣାଇ ନୀର ।
ବେଗେ ଧୋଇଲା ମୁନିଙ୍କ ପୟର ।
ବସିବାକୁ ଦେଲା ସୁବର୍ଣ୍ଣ ପୀଢ଼ା ।
ଚରଣେ ଓଳଗି ହୋଇଲା ଛିଡ଼ା ।
ମୁନି ବୋଇଲେ ଗୋ ବସନ ପିନ୍ଧ ।
ଓଦା ବସନକୁ ପାଲଟ ବେଗ ।
ଅମ୍ଭେ ଯେ ଅସିଛୁଁ ତୁମ୍ଭ ପୁରକୁ ।
ତୁମ୍ଭ ସଙ୍ଗତରେ କଥା ହେବାକୁ ।
ଶୁଣିଣ ମାଳତୀ ବନ୍ଦନ ଗଲା ।
ଅମଲାଣ ଶାଢ଼ୀ ଗୋଟି ପିନ୍ଧିଲା ।
ସଖୀମାନଙ୍କ ସଙ୍ଗତରେ ହୋଇ ।
ମୁନିଙ୍କ ଛାମୁରେ ମିଳିଲା ପୁଣି ।
ଓଳଗି ହୋଇ ମାନ୍ୟ ଧର୍ମ କଲା ।
ମୋ'ପୁରେ ବିଜେ କଷ୍ଟା ବ୍ରହ୍ମବଳା ।
ନାରଦ ବୋଇଲେ ଶୁଣ ଚତୁର ।
ଶ୍ରୀକୃଷ୍ଣ ଗଲେ ତ ମଥୁରା ପୁରୀ ।
ତୁମ୍ଭେ କଷ୍ଟାଇ ବିରସ ହୋଇଛ ।
ନିକଟେ ଆସିବେ ତ୍ରୈଲୋକ୍ୟନାଥ ।
ତୁମ୍ଭଙ୍କୁ ବୋଧ କରିବାକୁ ପୁଣ ।
ଗୋପୀନାଥ ରୂପ ପ୍ରତି ସରେଣି ।
ଲେଖା ଦେଇଯିବା ଚିତ୍ରପଟରେ ।
ଶୁଣିଣ ମାଳତୀ ପଡ଼େ ପାଦରେ ।
ମୁନି ବୋଇଲେ ତୁମ୍ଭ ସଖୀଗଣ ।
ବେଗ କରି ଯାଇ ଡକାଇ ଆଣ ।
ଶୁଣି ମାଳତୀ ଖଟଣି ଚଳିଲେ ।
ସହସ୍ରେ ଗୋପୀଙ୍କୁ ଡ଼ାକି ଆଣିଲେ ।
ବୋଇଲେ ନାରଦ ଆସି ଅଛନ୍ତି ।
ତୁମ୍ଭମାନଙ୍କୁ ଡ଼ାକିବାକୁ ପେଷି ।
ଶୁଣିଣ ସମସ୍ତେ ବେଗେ ଚଳିଲେ ।
ମାଳତୀପୁରେ ପ୍ରବେଶ ହୋଇଲେ ।
ଦେଖିଲେ ବିଜେ କରିଛନ୍ତି ମୁନି ।
ଗୋଟି ଗୋଟି ହୋଇ ଚରଣେ ନମି ।
ମୁନି ଦେଖିଣ ସନ୍ତୋଷ ହୋଇଲେ ।
ରୂପକାରକୁ ସୁମରଣା କଲେ ।
ସହସ୍ରେ ରୂପ ଚିତ୍ରକାର ଆସି ।
ମୁନିଙ୍କ ଛାମୁରେ ସ୍ୱର୍ଗର ବାସୀ ।
ଉଭା ହୋଇଣ ବୋଇଲେ ଶୁଣିମା ।
କିସ କରିବୁ କହି ଦିଅ କି ନା ।

ଗୋପୀମାନଙ୍କ ସଙ୍ଗତରେ ଯାଅ ।
ମାଧବ ରୂପ ମାଧୁର୍ଯ୍ୟେ ଭାଅ ।
ଜନପୁର ଲୋକେ ହୋଇବେ ମୋହ ।
ଏମନ୍ତ ରୂପ ଲେଖ ତୁମ୍ଭେ ଯାଇଁ ।
ଗୋପୀଙ୍କି ବୋଇଲେ ଚଳ ବହନ ।
ମନ୍ଦରମାନ ଦେଖାଇଣ ପୁଣ ।
ଚହପଟ ରୂପ ଲେଖିଣ ବେଗେ ।
ଅସିଣ ମିଳ ତୁମ୍ଭେ ଅମ୍ଭ ଆଗେ ।
ଶୁଣି ଗୋପୀଗଣ ଚଳିଣ ଗଲେ ।
ରୂପକାରଙ୍କୁ ସଙ୍ଗତରେ ନେଲେ ।
ଚନ୍ଦ୍ରଭାଗା ମନ୍ଦରେ ହୋଇଲେ ପ୍ରବେଶ ।
ମାଧବ ରୂପ ଲେଖିଲେ ସନେଶ ।
ଲେଖି ଚିତ୍ରକାର ବେଗେ ଅଇଲେ ।
ମୁନଙ୍କ ପାଶେ ପରବେଶ ହେଲେ ।
ଗୋଷ୍ଠି ଗୋଷ୍ଠି ହୋଇ ଅଇଲେ ଗୋଇ ।
ତାଙ୍କୁ ଦେଖି ମୁନି ସନ୍ତୋଷ ହୋଇ ।
ସ୍ନାହାନ କଲେ ବ୍ରହ୍ମାଙ୍କ କୁମର ।
ଅମଲାଣ ବସ୍ତ୍ର ପିନ୍ଧି ସତ୍ୱର ।
ଗୋପୀଙ୍କି ବୋଇଲେ ଯାଅ ଗୋ ଘର ।
ପୂଜାଦ୍ରବ୍ୟ ବଧ ରଞ୍ଜନା କର ।
ଧୂପ ଅଳଙ୍ଘ ଯେ ଫୁଲ ଚନ୍ଦନ ।
ସକଳ ପଦାର୍ଥ କର ଭିଆଣ ।
ସତେ ବୋଲି ପୁଣି ମାଳଜ୍ଞାପୁରେ ।
ଜୀବନ୍ୟାସ କଲେ ଚହପଟରେ ।
ପୂଜା କଲେ ନେଇ ନଡ଼ିଆ ମୁଗ ।
ପାଚିଲା କଦଳୀ ଛେନା ସଂଯୋଗ ।
ଅଳଙ୍ଘ ଧୂପ ଦୀପ ନେଇ ଦେଲେ ।
ଫୁଲ ଚନ୍ଦନେ ବେଶ କରାଇଲେ ।
ଅମଲାଣ ଖଦ ବାସ ପିନ୍ଧାଇ ।
ନଟବର ବେଶ ତାଙ୍କୁ କରାଇ ।
ସେଠାରୁ ମାଳତୀ ସଙ୍ଗରେ ଘେନ ।
ଘରେ ଘରେ ଯାଇଁ ପ୍ରବେଶ ମୁନ ।
ରୂପ ଲେଖିଣ ଜୀବନ୍ୟାସ କଲେ ।
ପାଟ ପତନୀ କାଛ ପିନ୍ଧାଇଲେ ।
ଫୁଲ ଚନ୍ଦନ ଦେଇ କଲେ ବେଶ ।
ସମସ୍ତଙ୍କ ପୁରେ ଏହି ସାଦୃଶ ।
ସେଠାରୁ ଲଳିତା ପୁରେ ମିଳିଲେ ।
ସହସ୍ରେ ଗୋପୀଙ୍କି ଶୁଦ୍ଧେ ବୋଇଲେ ॥
ପୂଜା ମନ୍ତ୍ର ତାଙ୍କୁ ଶିଖାଇ ଦେଲେ ।
ଆଳତି ଧୂପ ଦୀପ ବେଶ ଭଲେ ।
ସ୍ନାହାନ ତର୍ପଣେ କରାଇ ସବେ ।
ଏମନ୍ତ ବଧରେ ରହିବ ଯେବେ ।
ତେବେ ନାରାୟଣ ପୁଣି ପାଇବ ।
ବ୍ରହ୍ମଜ୍ଞାନ ତାଙ୍କୁ କହିଲେ ସବ ।
ରୁଦ୍ରାକ୍ଷ ମାଳା ସହସ୍ରେକ ଦେଲେ ।
ମହାମନ୍ତ୍ରେ ଜପ କର ବୋଇଲେ ।
ସେଠାରୁ ଉଠି ଭୋଜନ କରଣ ।
ଛେନା ଦୁଧ ସର ଲବଣୀ ପୁଣ ।
ବଢ଼ିଆ ଭୁଞ୍ଜି ତହୁଁ ଚଳି ଗଲେ ।
ସହସ୍ରେ ଗୋପୀଙ୍କି ମେଲାଣି ଦେଲେ ।
ସହସ୍ରେ ରୂପକାର ସଙ୍ଗେ ଘେନ ।
ମଲ୍ଲିକାପୁରରେ ପ୍ରବେଶ ପୁଣି ।
ଅସନେ ମଲ୍ଲିକା ବସିଣ ଥିଲା ।
ମୁନିଙ୍କି ଦେଖି ବନ୍ଦନ ଉଠିଲା ।

୭୩-୨—ମୁନିଙ୍କ ପାଶେ ପ୍ରବେଶ ହୋଇଲେ (ଛ) ମୁନଙ୍କ ପାଶରେ ପ୍ରବେଶ ହେଲେ (ଡ) ।
୭୫-୨—ତାଙ୍କୁ ମୁନି ଦେଖି (ଡ) । ୮୨-୧—ତର୍ପଣ (ଗ) ।

ଚରଣେ ଓଳଗି ଶୋଇଲେ ଯାଇଁ ।
ଉଠିଣ କର ଯୋଡ଼ି ଉଭା ହୋଇ ।
ସୁବର୍ଣ୍ଣ ଝଣ୍ଟିରେ ଯମୁନା ଜଳ ।
ନେଇଣ ଧୋଇଲେ ବେନି ପଦ୍ମୁର ।
ଗଜଦନ୍ତ ହୋଳ ପଲଙ୍କ ପରେ ।
ନେଇ ବସାଇଲେ ବ୍ରହ୍ମା କୁମରେ ।
ମୁନିଙ୍କି ବିନତ ହୋଇ ପୁଛିଲେ ।
କିସ ଅର୍ଥେ ଆଜ ବିଳମ୍ବ ହେଲେ ।
ଗୋପ ନଗର କି ସୁଭାଗ୍ୟ ହେଲା ।
କଳୁଋଷି ଯେ ଏଥି ବିଜେ କଲା ।
କୃଷ୍ଣ କି ଆସିବେ ଗୋପ ନଗର ।
ନୋହିଲେ ଗୋପୀ ଯିବେ ଯମପୁର ।
ଏମନ୍ତ ପ୍ରାୟେ ମୁଁ ମଣଇ ଚିତ୍ତେ ।
ବଳିଙ୍କି ଭଣ୍ଡିଲେ ବ୍ରାହ୍ମଣ ରୂପେ ।
ଦାନରେ ତିନିପୁର ହରି ନେଲେ ।
ଏଡ଼େ ନିଦାରୁଣ ଯେଠାରେ ହେଲେ ।
ବିଚାର ନ କଲେ ଧର୍ମ କଥାକୁ ।
ଅନ୍ଧାର ପୁରେ ରଖିଲେ ତାହାଙ୍କୁ ।
ସେହିରୂପେ କଲେ ଆମ୍ଭମାନଙ୍କୁ ।
ଦଶା ଦେଇ ଗଲେ ବେଳ କାଳକୁ ।
ଦୁଃଖ ଦିନେ ଆମ୍ଭ ପାଶରେ ଥିଲେ ।
ସୁଖ ଦିନକୁ ଛାଡ଼ି କରି ଗଲେ ।
ସତ୍ୟ କଥା ଏହି ରୂପରେ ପୁଣ ।
ନ ମାରି କିମ୍ପାଇ ଦେଲେ କଷଣ ।
ତାଙ୍କଠାରୁ ଶୁଣି ବୋଇଲେ ମୁନି ।
କିମ୍ପାଇ ଆରତ ହୁଅ ତରୁଣି ।
ନନ୍ଦସୁତ ଅଟେ ସତ୍ୟର ପୁଣି ।
ଜନମ ହେଲେ ଦେବକୀଙ୍କ ଯୋନି ।
ଦୁଷ୍ଟ ନାଶ କରି ସନ୍ଥ ପାଳିବେ ।
ମେଦନୀ ଭାର ଉଣାସ କରିବେ ।
ତୁମ୍ଭେ ଅଟଇ ନିତ୍ୟ ଗୋପନାରୀ ।
ତୁମ୍ଭଙ୍କୁ ବୋଧିବେ ନିକଟେ ହରି ।
ଦେଖା ଦରଶନ ତୁମ୍ଭଙ୍କୁ ଦେବେ ।
ଚିନ୍ତା ନ କର ଗୋ ସୁନ୍ଦରି ଏବେ ॥
ଆମ୍ଭେ ଆସିଅଛୁଁ ଯେବଣ ପାଇଁ ।
ଦେଖି ଯିବା କିସ କରନ୍ତି ଗୋଇ ।
ଚିତ୍ରପଟ କରି ମଧୁସୂଦନ ।
ତୁମ୍ଭ ମନ୍ଦିରେ ଲେଖାଇବା ପୁଣ ।
ସାଖୀଗଣ ମାନ ଡ଼ାକାଇ ଆଣ ।
ସମସ୍ତଙ୍କ ପୁରେ ରୂପ ଉଆଣ ।
ଏମନ୍ତ ସମୟେ ସହସ୍ରେ ଗୋଇ ।
ମଲ୍ଲିକା ପୁରରେ ମିଳିଲେ ଯାଇଁ ।
ଦେଖିଲେ ବିଜେ କରିଛନ୍ତି ଋଷି ।
ସମସ୍ତେ ଚରଣେ ନମିଲେ ଆସି ।
ଋଷି ବୋଇଲେ ସୁଲକ୍ଷଣୀ ହୁଅ ।
ଭକ୍ତି ଭାବରେ ତୁମ୍ଭେ ହିନ ନୁଅ ।
ତୁମ୍ଭେ ସମସ୍ତେ ଚଳ ଯେଝା ଘର ।
ରୂପକାରମାନେ ଯିବେ ସଙ୍ଗର ।
ମନ୍ଦିର ମାନ ନିର୍ମଳ କରିଣ ।
ଲେଖାଇବ ମଧୁସୂଦନ ପୁଣି ।
ଫୁଲ ଚନ୍ଦନ ଗନ୍ଧ ଧୂପ ଦୀପ ।
ମାଳତୀ ପୂଜାଦ୍ରବ୍ୟମାନ ରଖ ।
ବେଗେ ଆସିଣ ଆମ୍ଭଙ୍କୁ କହିବ ।
ସାଙ୍ଗ ହୋଇ କରି ଯିବା ଗୋ ସର୍ବ ॥
ଶୁଣି ଗୋପାଙ୍ଗନୀ ସନ୍ତୋଷ ହେଲେ ।
ରୂପକାରଙ୍କୁ ଘେନିଣ ଚଳିଲେ ।

୫୭.୧ – ନୃତ୍ତ କୁମରେ (ଗ) । ୫୭.୧ – ଦନୋଇ (ଗ) ନନୋବ (ଜ) । ୬୨ । ଧରେ ସଙ୍ଗରେ ।

ନାରଦ ବୋଇଲେ ରୂପକାରଙ୍କୁ ।
ଲାବଣ୍ୟ ମଧୁସୂଦନ ରୂପଙ୍କୁ ।
ଲେଖିଥିବ ତୁମ୍ଭେ ଏମନ୍ତ ଭାବେ ।
ବଇଲୋଚନେ ଥିବେ ତାଙ୍କ ସଙ୍ଗେ ।
କୋଟିଏ ଦେବତା ଶ୍ରୁତ ପାଶରେ ।
ନାଟ ଆରମ୍ଭ ଯେମନ୍ତ ପ୍ରକାରେ ।
ମଧ୍ୟରେ ମଧୁସୂଦନ ରହିବେ ।
ଦେଖିଲେ ସକଳ ମୋହିତ ହେବେ ॥
ଶୁଣିଣ ରୂପକାରମାନେ ଗଲେ ।
ମଣ୍ଡଳ ଆକାର କରି ଲେଖିଲେ ।
ମଲ୍ଲିକା ପୁରେ କଲେକ ଲେଖନ ।
ମଧୁସୂଦନ ରୂପ ନାରାୟଣ ।
ନାଟ ଆରମ୍ଭ ମଣ୍ଡଳ ପ୍ରକାରେ ।
ସଦାଶିବ ଛନ୍ତି ତାଙ୍କ ଆଗରେ ।
ବେଦ ପଢି ବାମ କରେ ଅଛନ୍ତି ।
କୋଟିଏ ଦେବତା ସଙ୍ଗେ ଅଛନ୍ତି ।
ବଇଲୋଚନେ ବଜେ ପାଦତଳେ ।
ଏମନ୍ତ ରୂପ ଲେଖିଣ ପୂଜିଲେ ।
ଯାଇଁ ଜଣାଇଲେ ଋଷିଙ୍କ ଠାରେ ।
ଉଠିଣ ମୁନି ଦେଖିଣ ମନ୍ଦିରେ ।
ରୂପ ଦେଖିଣ ସନ୍ତୋଷ ହୋଇଲେ ।
ମଲ୍ଲିକା ଦେଖି ଚରଣେ ଶୋଇଲେ ।
ସମସ୍ତଙ୍କ ପୁରେ ରୂପ ଲେଖିଣ ।
କହିଣ ମୁନିଙ୍କି ଗଲେକ ପୁଣ ।
ଅମର ପୁରେ ହୋଇଲେ ପ୍ରବେଶ ।
ଏଥୁ ଅନନ୍ତରେ ଶୁଣିମା ରସ ।
ଗୋପସୁନ୍ଦରୀ ସକଳ ରଖିଣ ।
ପ୍ରବେଶ ହେଲେ ମୁନି ପାଶେ ପୁଣ ॥
ଦେଖି ବ୍ରହ୍ମ ମୁନି ହରଷ ହେଲେ ।
ଚରଣ ଧୋଇ ମନ୍ଦିରେ ପଶିଲେ ।
ଜୀବନ୍ୟାସ କଲେ ମଧୁସୂଦନ ।
ତାଙ୍କ ସଙ୍ଗତରେ କୋଟିଏ ପୁଣ ।
ଜୀବନ୍ୟାସ ମନ୍ତ୍ର ଦେଲେ ତାହାଙ୍କୁ ।
ବୋଇଲେ ପ୍ରସନ୍ନ ହେବ ଏହାଙ୍କୁ ।
ବୋଧ କରିବ କହିଣ ବଚନ ।
ଯେମନ୍ତ ତୋଷ ହେବେ ଗୋପୀଗଣ ।
ଖଇ ଦହି ଦୁଧ ଛେନା ଶାକର ।
ପୂଜା କଲେ ନେଇ ତାଙ୍କ ଛାମୁର ।
ଧୂପ ଦୀପ ଗନ୍ଧ ଅଲତ ଦେଇ ।
ଫୁଲ ଚନ୍ଦନରେ ବେଶ କରାଇ ।
ଗୋପାଳ ମନ୍ତ୍ର ସମସ୍ତଙ୍କୁ କହି ।
ପୂଜାବିଧି ମାନ ଦେଲେ ଶିଖାଇ ।
ଅଲତ ବନ୍ଦାପନା କହି ଦେଲେ ।
ବେଶ ଭୂଷଣ ସକଳ କହିଲେ ।
ସ୍ନାହାନ ବେଳେ ଦର୍ପଣ କରିବ ।
ପାଟ ପଢଣୀ କାଛ ପିନ୍ଧାଇବ ।
ବ୍ରହ୍ମଜ୍ଞାନ ମନ୍ତ୍ର କହିଲେ ପୁଣ ।
ଯାହା ଜପିଲେ ତୋଷ ନାରାୟଣ ॥
ପୁଷ୍କରମାଳା ସହସ୍ରେକ ଦେଲେ ।
ଗୋଟିଏ ଗୋଟିଏ ସମସ୍ତେ ନେଲେ ।
ମହାମନ୍ତ୍ର ତାଙ୍କୁ ଚେତାଇ ଦେଲେ ।
ଏମନ୍ତ ଜପ କରିବ ବୋଇଲେ ।
ତେବେ ସମସ୍ତେ ପାଇବ କାରଣ ।
ହୃଦ ପଦ୍ମରେ ଚିନ୍ତ ନାରାୟଣ ।
ଏତେ କହିଣ ସେଠାରୁଁ ଉଠିଲେ ।
ଘରେ ଘରେ ଯାଇଁ ରୂପ ଦେଖିଲେ ।
ରୂପମାନଙ୍କୁ ଜୀବନ୍ୟାସ କଲେ ।
ସହସ୍ରେ ପୁରଯାକ ଦେଖି ଗଲେ ।

ସମସ୍ତ ସଜୀବ କରଣ ପୁଣ ।
ଗୋପୀଙ୍କି ପ୍ରବୋଧି ଗଲେ ଆପଣ ।
ମଥୁରା ପୁରରେ ହେଲେ ପ୍ରବେଶ ।
ଦେଖି ଗୋପାଳୁଣୀ ମନେ ହରଷ ।
ମଲ୍ଲିକା ପୁରରୁ ନାରଦ ଗଲେ ।
ମଲ୍ଲିକା ଯାଇ ମାଳତୀ ଭେଟିଲେ ।
ସେଠାରୁ ଦୁଇ ଜଣ ଚଳିଗଲେ ।
ଚନ୍ଦ୍ରସେଣା ପୁରେ ଯାଇ ମିଳିଲେ ।
ଲଳିତା ବିଶାଖା ଅଇଲେ ପୁଣ ।
ଚନ୍ଦ୍ରାବଳୀଙ୍କି କଲେ ମାନ୍ୟ ଧର୍ମ ।୧୧୫।
ପୂର୍ଣ୍ଣିମାସୀ ଦେବୀ ପ୍ରବେଶ ହେଲେ ।
ଯେତେ ଗୋପୀଏ ସମସ୍ତେ ମିଳିଲେ ।
ବୋଇଲେ ନାରଦ ଋଷି ଅସିଣ ।
ଆମ୍ଭମାନଙ୍କୁ କରଣ କାରଣ ।
ମନ୍ତ୍ର ପୂଜା ବେଶ ଶିଖାଇ ଦେଲେ ।
ମହାମନ୍ତ୍ର ଜପ କର ବୋଇଲେ ।
ବ୍ରହ୍ମଜ୍ଞାନ ଦେଲେ ଆମ୍ଭମାନଙ୍କୁ ।
ରୂପ ପ୍ରତିଘରେ ଦେଖିବା ତାଙ୍କୁ ।
ଯମୁନା ସ୍ନାହାନ କରଣ ଯିବା ।
ଚନ୍ଦନପଙ୍କ ରୂପ ବେଶ କରିବା । ୧୨୦ ।
ଉଠିଣ ସକଳେ ଯମୁନା ଗଲେ ।
ସ୍ନାହାନ କରି ବାଲୁକା ପୂଜିଲେ ।
ସୂର୍ଯ୍ୟ ପୂଜା ବନ୍ଦାପନା କରଣ ।
ଗୋପେଶ୍ୱରଙ୍କୁ କଲେ ଦରଶନ ।
ବୃନ୍ଦାବନ ଫେରି କୁଞ୍ଜକୁ ଗଲେ ।
ଫୁଲବନରୁ ଫୁଲମାଳ ତୋଳେ ।
ଛଡ଼ି ସସ୍ତ୍ର ଗୋପୀ ସଙ୍ଗରେ ଘେନି ।
ଗୋପ ନଗ୍ରରେ ପରବେଶ ପୁଣି ।
ଦେଖି ଘରକୁ ଚନ୍ଦ୍ରେ ଚଳିଗଲେ ।
ଦନାଇ ଦାସେ ସେ ପାଦେ ସେବିଲେ ॥

୧୧୧-୧—ସଞ୍ଜୀବ (ଗ,ଙ,ଚ) ।



# ଅଷ୍ଟବିଂଶ ଛାନ୍ଦ



ଏଥି ଅନନ୍ତରେ ପାର୍ବତୀ କହି ।
ପୁଣି କିସ କଲେ ଗୋପର ଗୋଈ । ୧ ।
ସେ କଥା ମୋତେ ବୃଝାଇଣ କହ ।
ଶୁଣିମାତ୍ରୁ ମନେ ବଢ଼ି ସେନେହ ।
ଶୁଣିକରି ଗଙ୍ଗାଧର କହନ୍ତି ।
ମରୁଆ ଦେଖିଣ ନାରଦ ତପୀ ।
ଯମୁନା ଜଳେ ପାଦ ଧୋଇଦେଲେ ।
ଝୀନ ବସନରେ ପାଦ ପୋଛିଲେ ।
ପଦ୍ମ ଆସନ ପୀଢ଼ା ଆଣି ଦେଲା ।
ଏଥିରେ ବସ ହେ ବ୍ରହ୍ମାଙ୍କ ବଳା । ୫ ।
ଯାଇଁଣ ନାରଦ ବସିଲେ ତହିଁ ।
ମରୁଆ ଦେବୀ ଚରଣେ ନମଇ ।
ତେତେବେଳେ ବେଳ ପଡ଼ିଏ ଜାଣ ।
ସ୍ନାହାନ କରି ନାହିଁ ଦେବୀ ପୁଣ ।
ହରିଦ୍ରା ଗନ୍ଧ ନବଗ୍ରହ ଥୋଇ ।
ଘର ଜଞ୍ଜାଳ କରୁଥିଲା ସେହି ।
ଏହି ସମୟେ ଋଷି ମିଳ ପୁଣ ।
ଦେଖିଣ ବିଳମ୍ବ ହୋଇଲା ଜାଣ ।
ସହସ୍ରେ ଗୋପିକା ସଙ୍ଗେ ତାଙ୍କର ।
ସ୍ନାହାନ ନିମନ୍ତେ ମିଳଲେ ପୁର । ୧୦ ।
ଦେଖିଲେ ବିଜେ କରିଛନ୍ତି ମୁନି ।
ଆଗରେ ସୁନ୍ଦରୀ ଅଛନ୍ତି ପୁଣି ।
ସର୍ବ ଗୋପାଳୁଣୀ ଚରଣେ ସେବେ ।
କରଯୋଡ଼ି ଉଭା ଆଗରେ ବେଗେ ।
ତପୀ ସମସ୍ତଙ୍କୁ କଲ୍ୟାଣ କଲେ ।
ଅଇ ସୁଲକ୍ଷଣୀ ହୁଅ ବୋଇଲେ ।
ଏହି ସମୟରେ ଗୋପସୁନ୍ଦରୀ ।
କୁଞ୍ଜଲତା ଯେନ ଭୁବନେ ମିଳ ।
ସହସ୍ରେ ସୁନ୍ଦରୀ ସଙ୍ଗରେ ଛନ୍ତି ।
ସ୍ନାହାନ ନିମନ୍ତେ ହରଷେ ଯାନ୍ତି । ୧୫ ।
ଦେଖିଲେ ମରୁଆ ପୁରେ ନାରଦ ।
ସମସ୍ତେ ଯାଇ ଓଳଗିଲେ ପାଦ ।
ଦେଖିଣ ନାରଦ ସନ୍ତୋଷ ହେଲେ ।
ସୁକଲ୍ୟାଣ କରି ତାହାଙ୍କୁ ବୋଲେ ।
ସମସ୍ତେ ମେଳ ହୋଇ କେଉଁଣେ ଯାଅ ।
ଆମ୍ଭ ଆଗେ କହ ହରିର ପ୍ରିୟ ।
କୁଞ୍ଜଲତା ବୋଲେ ସ୍ନାହାନ କରି ।
ଯମୁନା ଜଳକୁ ସକଳ ନାରୀ ।
ମରୁଆ ଦେବୀ ସଙ୍ଗେ ହୋଇ ସଙ୍ଗ ।
ଯମୁନା କୂଳରେ ପୂଜିବା ଲିଙ୍ଗ । ୨୦ ।
ସୂର୍ଯ୍ୟଙ୍କୁ ଦେଖି ଗୋପେଶ୍ୱର ଯିବୁ ।
ଦର୍ଶନ କରି ଘରକୁ ଆସିବୁ ।
କଉଁ ସୁଖ ଅଛି ଆଉ ଆମ୍ଭର ।
କୃଷ୍ଣ ଛାଡ଼ିଣ ଗଲେ ମଧୁପୁର ।
କେତେ ସୁଖ କରି ଅନ୍ତର ହେଲେ ।
ଗୋପ ଗଉଡୁଣୀ ଗୋପେ ରହିଲେ ।
ତୁମ୍ଭର ଆଉ କିସ ଅଛି ଏଥି ।
କୃଷ୍ଣଙ୍କୁ ନେଲ ତ ସମସ୍ତେ ପାଖି ।

୯-୨—ଦେଖିଣ (ଘ,ଛ) । ୧୨ ୨—ତାଙ୍କୁ ବୋଇଲେ (ଜ) ।

ଦେବତା ମୁନି ସମସ୍ତେ ବିସ୍ମିତ ।
ଘେନି ଗଲି ଗୋପନବର ଶିଖି ।
ଏତେ ବୋଲିଣ ଦୁଇହସ୍ତ ନାଖି ।
ଭୂମିରେ ପଡ଼ିଲେ ରୋଦନ କରି ।
ହା ହା କୃଷ୍ଣ ବୋଲି ବୋବାଳି କରି ।
ରୋଦନ ସ୍ୱରେ ଗୋପପୁର ପୂରି ।
ଦେଖିଣ ନାରଦ ଚକିତ ହେଲେ ।
ଧନ୍ୟରେ ଗୋପ ତରୁଣୀ ବୋଇଲେ ।
କିମ୍ପା କୃଷ୍ଣ ମନ୍ଦୁ ତେଜ୍ୟା କରିବେ ।
ଏମନ୍ତ ଭାବ ଦେଖା ନାହିଁ କେବେ ।
ନାରଦ ବୋଇଲେ ସମସ୍ତେ ଶୁଣ ।
ଅମ୍ଭଙ୍କୁ ତେଜନ୍ତି ନାହିଁପୁଣ ।
ଅଳପ ଦିନେ ଆସିବାର ପାଇଁ ।
ଗୋପଙ୍କୁ ଅମ୍ଭଙ୍କୁ ଦେଲେ ପଠାଇ ।
ତୁମ୍ଭେ ସମସ୍ତେ ଗୋ ପ୍ରବୋଧ ହୁଅ ।
ବିରହ ସମ୍ଭାଳ କୃଷ୍ଣର ପ୍ରିୟ ।
ଶୁଣିଣ ସକଳ ଗୋପୀ ଉଠିଲେ ।
କର ଯୋଡ଼ିଣ ମୁନିଙ୍କି କହିଲେ ।
ସ୍ନାହାନ କର ହେ କଳପ ଋଷି ।
ଅମ୍ଭଠାରେ ଯେବେ ସୁଦୟା ଅଛି ।
ମୁନି ବୋଇଲେ ତୁମ୍ଭ ସଙ୍ଗେ ଆଜ ।
ଯମୁନାକୁ ଯିବା ଉଠ ଗୋ ସର୍ବ ।
ନାରଦ ଉଠି ବେଗେ ଚଳି ଗଲେ ।
ତାଙ୍କ ପଛେ ଗୋପୀ ସମସ୍ତେ ଚଲେ ।
ଯମୁନା କୂଳରେ ହେଲେ ପ୍ରବେଶ ।
ସମସ୍ତେ ସ୍ନାହାନ ଯାଚ ହରଷ ।
ବାଲୁଙ୍କା ପୂଜି ହରଷରେ ଜାଣ ।
ସୂର୍ଯ୍ୟଙ୍କୁ ଦେଖି ବନ୍ଦାଇଲେ ପୁଣ ।
ନାରଦ ସ୍ନାହାନ ଯମୁନା କଲେ ।
ନିତ୍ୟକର୍ମ ସାରି ବେଗେ ଉଠିଲେ ।
ଗୋପେଶ୍ୱରଙ୍କୁ କଲେ ଅଭିଷେକ ।
ଦର୍ଶନ କଲେ ଗୋପୀଏ ଯେତେକ ॥
ନାରଦଙ୍କୁ ଘେନି ଚଳିଲେ ସର୍ବେ ।
ପ୍ରବେଶ ହେଲେ ଗୋପପୁର ନଗ୍ରେ ।
କୁଞ୍ଜଲତା ପୁରେ ସମସ୍ତେ ମିଳି ।
ନାରଦ ବୋଇଲେ ଚଳି ଗୁଆଳି ।
ମନ୍ଦିରମାନ ନିର୍ମଳ କରିବ ।
ଭୋଜନ ସାରିଣ ବେଗେ ଆସିବ ।
ଚିତ୍ରପଟ୍ଟ ରୂପ ଲେଖିଣ ଦେବା ।
ଯେଝା ମନ୍ଦିରେ ରଖି କର ସେବା ।
ଶୁଣିଣ ଗୋପୀଏ ଘରକୁ ଗଲେ ।
କୁଞ୍ଜଲତା ପୁରେ ମୁନି ରହିଲେ ।
ଖଇ, ଦହି, ଛେନା, ଶାକର ଆଣି ।
କଦଳୀ ଦୁଧସର ଦେଲେ ପୁଣି ।
ବ୍ରହ୍ମଋଷି ବସି ଭୋଜନ କଲେ ।
ଅଚମନ କରି କଷା ସାରିଲେ ।
ଦିବ୍ୟ ପଲଙ୍କରେ ଶୟନ କଲେ ।
କୁଞ୍ଜଲତା ମୁନି ପାଶକୁ ଗଲେ ।
ବସି ଛତ୍ରଘେ ଭୋଜନ କଲେ ।
ଅଚମନ କରି ତାମ୍ବୁଲ ଦେଲେ ।
ଗୋବିନ୍ଦ ନାମ ସୁମରନ୍ତି ମନେ ।
ସମସ୍ତ ଗୋପୀ ମିଳନ୍ତି ତକ୍ଷଣେ ।
ମଠଅ ଦେଖି ପ୍ରବେଶ ହୋଇଲେ ।
ଗହଳ ଶୁଣି ନାରଦ ଉଠିଲେ ।
ରୂପକାରଙ୍କୁ ସୁମରଣା କଲେ ।
ସହସ୍ରେ ରୂପକାର ଆସି ହେଲେ ।

୪୬-୧—ବ୍ରହ୍ମଋଷି ପାଠ (ଗ) । ୪୭-୨—ଅଚମନ ପାଠ (ଡ) ।

ବୋଇଲେ ଚଲ ସହସ୍ରେକ ପୁର ।
ଚନ୍ଦ୍ରପଟ୍ଟ କର ଲେଖ ସତ୍ୱର ।
ବାସୁଦେବ ରୂପ ମଧ୍ୟରେ ଥିବ ।
ଗୃହ ପାଶରେ ଦେବତା ରହିବ ।
ଏମନ୍ତ କରଣ ରୂପ ଲେଖିବ ।
ରୂପ ଦେଖନ୍ତେ ବିରହ ଭାଙ୍ଗିବ । ୬୫ ।
ମୋହ ହୋଇବେ ଯେ ଗୋପସୁନ୍ଦରୀ ।
ଯେଉଁ ରୂପେ କୃଷ୍ଣ ଥିଲେ ତାଙ୍କର ।
ତାହା ଶୁଣିଣ ରୂପକାର ଗଲେ ।
ସହସ୍ରେ ଗୋପାଙ୍ଗଣୀ ଘେନି ଚଲେ ।
ଯେଣ୍ଟା ମନ୍ଦିରେ ପରବେଶ ହେଲେ ।
ରୂପକାରଙ୍କୁ ଦେଖାଇଣ ଦେଲେ ।
ଚନ୍ଦ୍ରପଟ୍ଟରେ ବାସୁଦେବ ରୂପ ।
ଲେଖିଣ ସମସ୍ତେ ଦେଲେ ଭୂରତ ।
ଗୃହପାଶେ ଛନ୍ତି ଦେବତାଗଣ ।
ମଧ୍ୟରେ ବାସୁଦେବ ରୂପ ପୁଣ ।୬୦।
ଯେମନ୍ତେ ଗୋପ କାମିନୀ ମୋହିବେ ।
ତେମନ୍ତ ରୂପ ଲେଖି ସର୍ବ ଭାବେ ।
ରୂପକାରମାନେ ଚଳଣ ଗଲେ ।
ନାରଦଙ୍କଠାରେ ପ୍ରବେଶ ହେଲେ ।
କୁଞ୍ଜଲତା ପୁରେ ଲେଖିଣ ପୁଣ ।
ମରୁଆ ସଙ୍ଗତେ କଲେ ଗମନ ।
ସହସ୍ରେ ବ୍ରଜସୁନ୍ଦରୀ ଘେନିଣ ।
ରୂପକାରଙ୍କୁ ଭେଜ ଦେଲେ ପୁଣ ।
ବୋଇଲେ ଲେଖିବ ଚନ୍ଦ୍ରପଟ୍ଟରେ ।
ବାମନ ରୂପ ଯେବଣ ପ୍ରକାରେ । ୬୫ ।
ଶୁଣି ରୂପକାର ଗଲେ ଭୂରତ ।
ବାମନ ରୂପ ଲେଖିଲେ ସନ୍ତତ ।

ଗୃହପାଶେ ଛନ୍ତି ଋଷି ସମସ୍ତେ ।
ମଧ୍ୟରେ ବାମନ ରୂପ ସାକ୍ଷାତେ ।
ଲେଖି ରୂପକାର ଶୂନ୍ୟକୁ ଗଲେ ।
ନାରଦ ଚରଣ ଧୋଇ ବସିଲେ ।
ଜୀବନ୍ୟାସ କଲେ ବାମନଦେବ ।
ସଙ୍ଗ ଋଷିଗଣ ଦେଇଣ ଜୀବ ।
ଧୂପ ଦୀପ ନେଇ ଅଲଭ ଦେଲେ ।
ଫୁଲ ଚନ୍ଦନେ ବେଶ କରାଇଲେ ।୭୦।
ରତ୍ନରେ ଭୂଷଣ କରଣ ପୁଣ ।
ବାମନରୂପ ମୋହେ ତ୍ରିଭୁବନ ।
ପୁର ରୁଣ୍ଡି ଗଜା ଡାଲମ୍ବ ନେଇ ।
କଦଳୀ ଛେନା ସର ସଙ୍ଗେ ଦହି ।
ଅଙ୍ଗନ୍ୟାସ କରି ମନ୍ତ୍ର ପଢିଲେ ।
ନାରାୟଣ ମନ୍ତ୍ରେ ତାଙ୍କୁ ପୂଜିଲେ ।
ମରୁଆଙ୍କୁ ତାଙ୍କ ମନ୍ତ୍ର ଶିଖାଇ ।
ବ୍ରହ୍ମଜ୍ଞାନ ତାଙ୍କୁ ଗୁପତେ କହି ।
ପୂଜା ବିଧି ଧୂପ ଅଲତି ଦୀପ ।
ସ୍ନାହାନ ବେଶ ଭୂଷଣ ଯେତେକ ।୭୫।
ମନ୍ତ୍ର ଉପଦେଶ ଅଙ୍ଗନ୍ୟାସକୁ ।
ଶିଖାଇ ସର୍ବ ଚଳଲେ ତାହାଙ୍କୁ ।
ଏହିରୂପେ ପୁଣି ସହସ୍ରେ ପୁର ।
ଜୀବନ୍ୟାସ କଲେ ରୂପ ସକଳ ।
ବେଶ ଭୂଷଣ ସମସ୍ତଙ୍କ ପୁରେ ।
ନାନା ଦ୍ରବ୍ୟ ପୂଜା କଲେ ତହିଁରେ ।
ମନ୍ତ୍ର ସୁମରଣା ଶିଖାଇ ଦେଲେ ।
ବ୍ରହ୍ମଜ୍ଞାନ ସମସ୍ତଙ୍କୁ କହିଲେ ।
ତ୍ରପାଏଲା ମାଳ ସହସ୍ରେକ ପୁଣ ।
ସମସ୍ତଙ୍କୁ ବାନ୍ଧିଦେଲେ ଆପଣ ।୮୦।

୬୫-୨ – ବାବନରୂପ (ଖ) ।

ବୋଇଲେ ଏ ମାଳେ କରିବ ଜପ ।
ମହାମନ୍ତ୍ର ଯାହା କଣ୍ଠେ ସମ୍ଭୃତ ।
ଅଙ୍ଗିରା ଋଷି କହିଛନ୍ତି ଯାହା ।
ଚେତା ହୋଇଣ ଜପ କର ତାହା ।
ଏମନ୍ତ କହି ସମସ୍ତଙ୍କୁ ଗଲେ ।
କୁଞ୍ଜଲତା ଗୋପୀ ପୁରେ ମିଳିଲେ ।
ଚରଣ ଧୋଇ ମନ୍ଦିରେ ପଶିଲେ ।
ବାସୁଦେବ ରୂପ ତହିଁ ଦେଖିଲେ ।
ଜୀବନ୍ୟାସ କଲେ ବାସୁଦେବଙ୍କୁ ।
ସଙ୍ଗର ଦେବତାଗଣ ମାନଙ୍କୁ । ୮୫ ।
ମନ୍ତ୍ର ଅଗ୍ରାଣେ ପୂଜାବିଧି କଲେ ।
ପଣା ପଇଡ଼ କଦଳୀ ଛଟ ଭୁଲେ ।
ମନ୍ତ୍ର ପୂଜାବିଧି ଧୂପ ଦୀପରେ ।
ବେଶ ଭୂଷଣ ସ୍ନାନ ଶଉଚରେ ।
ବ୍ରହ୍ମଜ୍ଞାନ ଦେଲେ ମନ୍ତ୍ର ସହିତେ ।
ଶିଖାଇ କୁଞ୍ଜଲତାକୁ ଭରତେ ।
ଶଙ୍ଖା ବସ୍ତ୍ରମାଳା ସଙ୍ଗତେ ନେଇ ।
ସହସ୍ରେ ଗୋପୀଙ୍କି ବାଣ୍ଟିଣ ଦେଇ ।
ସେଠାରୁ ଉଠି ସମସ୍ତଙ୍କ ପୁରେ ।
ଜୀବନ୍ୟାସ କଲେ ସବୁ ମନ୍ଦିରେ । ୯୦ ।
ସମସ୍ତଙ୍କୁ ବ୍ରହ୍ମଜ୍ଞାନ କହିଲେ ।
ପୂଜା ଧୂପ ଦୀପ ଶିଖାଇ ଦେଲେ ।
ଆଲତ ବେଶ ସ୍ନାହାନ ଯେମନ୍ତେ ।
ଶଙ୍ଖ ବର୍ତ୍ତି ମାଳୀ ଜପିବା ମନ୍ତ୍ରେ ।
ସହସ୍ରେ ଗୋପିକା କହୁଣ ପୁଣ ।
ବୋଧ କଲେକ ଋଷି ହେଇ ପୁଣ ।
କୁଞ୍ଜଲତା ସଙ୍ଗେ ସହସ୍ରେ ଗୋଇ ।
ନାରଦଙ୍କୁ ଘେନ ସେଠାରୁ ଯାଇ ।

ମଣୁଆ ପୁରରେ ହେଲେ ପ୍ରବେଶ ।
ଦେଖିଣ ମଣୁଆ ମନେ ହରଷ । ୯୫ ।
ମଣୁଆର ଯେତେ ସାଖା ସହିତେ ।
ସହସ୍ରେ ସୁନ୍ଦରୀ ମିଳି ଭରତେ ।
ସମସ୍ତେ ହୋଇ ନାରଦ ସେବିଲେ ।
କୋମଳ ବଚନ ତାଙ୍କୁ କହିଲେ
ବୋଇଲେ କେତେଠାରେ କୃଷ୍ଣ ଛନ୍ତି ।
ଏହା ଆମ୍ଭଙ୍କୁ କହିବା ସମ୍ପ୍ରତି ।
ନାରଦ ବୋଇଲେ ଶୁଣ ସୁନ୍ଦରୀ ।
ପାତାଳ ପୁରରେ କୁଞ୍ଜବିହାରୀ ।
ଗୋଲୋକ ବୈକୁଣ୍ଠ ପୁରରେ କୃଷ୍ଣ ।
ନିଜ ସ୍ଥାନେ ସେହୁ ଅଟେ ପ୍ରତ୍ୟକ୍ଷ ॥
ରାଧାକୁ କୋଳେ ଘେନି ଦେବ ହରି ।
ରାତ୍ର ଦିବସରେ ରାହାସ କରି ।
ଷୋଳ ସହସ୍ର ଗୋପୀ କରନ୍ତି ଲୀଳା ।
ମର୍ଦ୍ଦଳ ଝାଞ୍ଜରେ ହୋଇଣ ଭୋଳା ।
ଏକାନ୍ତେ ସେ ସ୍ଥାନେ ଅଛନ୍ତି ରହି ।
ଦେବ ଦାନବ ତହିଁ ଭେଟ ନାହିଁ ।
ଯୁଗ ଗୋଷ୍ଠକ ଦିନେ ତହିଁ ହୋଏ ।
କେଉଁଣି କଥାରେ ନ ଥାଏ ଭୟେ ।
ସେହି ରୂପ ତୁମ୍ଭେମାନେ ଦେଖିଲ ।
ଏ ଜନ୍ମରୁ ଗତ ମୁକତି ହେଲ । ୧୦୫ ।
ସହସ୍ର ମନ୍ଦୁରେ ଗୋଲୋକ ଶୂନ୍ୟ ।
ମଧ୍ୟ ପୁରରେ ହୋଇଛନ୍ତି ଜନ୍ମ ।
କେତେ କଥା ହେବ ଦେଖିବ ତୋଳେ ।
କେତେ ଭୋଗ ଗୋ କରିବ ସଙ୍ଗରେ ।
ସାତ ବରଷରେ ଦ୍ୱାରକା ଯିବ ।
ରାହାସ ମଣ୍ଡଳେ ଯାଇ ରହିବ ।

୮୯-୬—ଯାହା କରେ ସମୃଦ୍ଧ (ଖ) । ୮୪ ୬ ସ୍ୱର୍ଗର ଦେବତା (ଖ) । ୧୦୦ ୬ — ନେତ୍ର [illegible] (..), ପ୍ରକାଶ (ଖ) ।

ତୁମ୍ଭେ ଗୋପାଳୁଣୀ ଷୋଳ ସହସ୍ର ।
ରାଜକନ୍ୟା ହେବ ଷୋଳ ସହସ୍ର ।
ଦେବକନ୍ୟା ଷୋଳ ସହସ୍ର ଜାଣ ।
ବ୍ରାହ୍ମଣ କନ୍ୟା ଷୋଳ ସସ୍ର ପୁଣ ।୧୧୦।
ଏମନ୍ତେ ଚଉଷଠି ସସ୍ର ନାରୀ ।
ଏକା କୃଷ୍ଣ ଭୋଗ ଏତେକ କରି ।
ସ୍ୱର୍ଗରୁ ସୁଧର୍ମା ସଭା ଆସିବ ।
ଦ୍ୱାରକା ପୁର ଯେ ସ୍ୱର୍ଗ ହୋଇବ ।
କିସ ଚିନ୍ତା ତୁମ୍ଭେ କରୁଛ ଗୋଇ ।
ସାତ ବରଷ କୃଷ୍ଣ ନ ଅସଇ ।
ତୁମ୍ଭର ରାଧିକା ଅଟନ୍ତି ମୂଳ ।
ସମସ୍ତେ ତୁମ୍ଭେ ସିନା ଅଟ ଡ଼ାଳ ।
ରାଧା ସଙ୍ଗେ ତୁମ୍ଭେ ମନ ମିଳାଅ ।
ତେବେ ଦେଖିବ ତୁମ୍ଭେ ନନ୍ଦ ପୁଅ ॥
କମଳା ଜାତ ହୋଇଛି ରୁକ୍ମିଣୀ ।
ସମସ୍ତଙ୍କ ପୁରେ ସେ ଶିରୋମଣି ।
ନାରାୟଣ ଅଟେ ସବୁର ପୁଣ ।
ଦେବତାଙ୍କ ତୁଲେ ଜନମ ପୁଣ ।
ଅସୁର ମାରି ମେଦନୀ ରଖିବେ ।
ତେବେ ସମସ୍ତେ ସୁଖକୁ ଲଭିବେ ।
ତୁମ୍ଭେ ଜପ କର ମାଳ ଧରିଣ ।
ତେବେ ଲଭିବ ନାରାୟଣ ପୁଣ ।
ଶୁଣିଣ ଗୋପୀଏ ତୋଷ ହୋଇଲେ ।
ନାରଦ ଚରଣେ ଓଳଗି ହେଲେ ॥
ନାରଦ ବୋଇଲେ ଶୁଣ ସୁନ୍ଦରି ।
ଏବେ ସମସ୍ତେ ଯାଅ ଯେଝା ପୁରୀ ।
ରୂପମାନ ତୁମ୍ଭେ ବେଶ କରିବ ।
ପ୍ରତିଦିନ ପୂଜା ବିଧିରେ ଥିବ ।
ସେରୂପ ତୁମ୍ଭଙ୍କୁ ପ୍ରସନ୍ନ ହେବ ।
ଭଲ ମନ୍ଦ ଯାହା ତାଙ୍କୁ ପୁଛିବ ।
ଶୁଣି ଗୋପାଳୁଣୀ ଘରକୁ ଗଲେ ।
ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ନାରଦ ସେଠାରୁ ଚଳିଣ ଗଲେ ।
ଗୋପୀଙ୍କ ସଙ୍ଗେ ଦନାଇ ରହିଲେ ।୧୨୫

୧୧୭-୨—ଜନମ ଜାଣ (ଖ,ଗ) । ୧୨୧-୨—ନାଳ ପୁତ୍ର (ଚ) ।



# ଊନବିଂଶ ଛାନ୍ଦ



ଏଥୁ ଅନନ୍ତରେ ଶୁଣିବା ରସ ।
ପାର୍ବତୀ ଆଗେ କହେ କୃତ୍ତିବାସ ।
ପ୍ରଭାତ୍ ସମୟରେ ଦୂତୀ ପୁଣ ।
ଘର ଜଞ୍ଜାଳ କରଇ ଉଠିଣ ।
ଜଞ୍ଜାଳ ସାରି ଦଧି ମନ୍ଥନରେ ।
ଲଗାଇ ଦେଲା ସଖୀଙ୍କି ସେଥିରେ ।
ବାହାର ପ୍ରାଙ୍ଗଣ ପରେ ସୁନ୍ଦରୀ ।
ବସିଛନ୍ତି ଯାଇଁ ଚନ୍ଦ୍ରା କର ଧରି ।
ରାମ ଗୋବିନ୍ଦ ବୋଲୁଅଛନ୍ତି ତୁଣ୍ଡେ ।
ଶୁଆଙ୍କୁ ପଢ଼ାଏ ଆନନ୍ଦ ଭାବେ । ୫ ।
ଏହି ସମୟରେ ନାରଦ ମିଳି ।
ଦେଖିଣ ଦୂତିକା ଉଠେ ସମ୍ଭାଳି ।
ଚରଣେ ଗୋଡ଼ଇଣ ବିନୋଦ ହେଲା ।
ସୁବର୍ଣ୍ଣ ଝରୀରେ ନୀର ଆଣିଲା ।
ଚରଣ ଧୋଇ ଦେଲା ମୁନିଙ୍କର ।
ଝୀନ ବସନେ ପୋଛିଲା ପୟର ।
ବସିବାକୁ ଦିବ୍ୟ ଆସନ ଦେଲା ।
କର ଯୋଡ଼ିଣ ବଚନ କହିଲା ।
ବୋଇଲା ଭାଗ୍ୟ ହୋଇଲା ମୋହୋର ।
ପ୍ରଭାତେ ଦେଖିଲି ବ୍ରହ୍ମାକୁମର ।୧୦।
ଖୋଜିଲେ ଯାହାକୁ ନ ପାଉ ପୁଣ ।
କଉଁ ଭାଗ୍ୟରେ ମିଳିଲା ଦର୍ଶନ ।
କୃଷ୍ଣ ଗଲା ଦିନୁଁ ଦୁଃଖ ଆମ୍ଭର ।
କହିଲେ ନ ସରଇ ମୁନିବର ।

ରାତ୍ର ଦିବସରେ ନିଦ୍ରା ନୋହିଲା ।
ଯେଉଁ ଦିନୁଁ କୃଷ୍ଣ ମଥୁରା ଗଲା ।
କେମନ୍ତେ ବଞ୍ଚିବୁଁ ଗୋପ ଯୁବତୀ ।
ଆମ୍ଭେ ତାଙ୍କର, ସେ ଆମ୍ଭର ପତି ।
ଭଲ ପଦାର୍ଥ ଯେ ଖାଅଇ ନିତି ।
ମନରେ କି ମନ ହୁଏ ବିପତି । ୧୫ ।
ବଡ଼ଲୋକଙ୍କୁ ଯେ କରଇ ଆଶ ।
ସାନଲୋକରେ ସେହୁ ନୁହେ ବଶ ।
ଗୁରୁଅଙ୍କେ ହେଲା ଅପକୀରତି ।
ଗୋପୀ ଶ୍ରୀକୃଷ୍ଣରେ ବଡ଼ ପୀରତି ।
ତାଙ୍କଠାରୁ ଶୁଣି ନାରଦ ବୋଲେ ।
ତୁମ୍ଭେ ପାଶେ ଥିଲେ କିସ କରିବେ ।
ପୃଥିବୀ ଭାର ଉଶ୍ୱାସର ପାଇଁ ।
ଦେବତାଙ୍କ ଦୁଃଖ ସୁହା ନ ଯାଇ ।
ଅସୁର ମାରିବାକୁ ଜାତ ହେଲେ ।
ଦୈତ୍ୟ ନାଶିଲେ ସର୍ବେ ସୁଖ ଭଲେ ।।
ସେ କଥାମାନ ଗୋ ଛାଡ଼ ମନରୁ ।
ଆମ୍ଭେ ଆସିବୁଁ ପ୍ରେରଣ ହିତରୁ ।
ତୁମ୍ଭମାନଙ୍କୁ ବାଟ ଦେଇ ଯିବୁଁ ।
ତାଙ୍କ ସଙ୍ଗରେ ସଙ୍ଗ କରାଇବୁଁ ।
କାରଣ ପାଇବ କାଳବେଳକୁ ।
ଅଳପ ଦିନେ ଲଭିବ ତାହାଙ୍କୁ ।
ଶୁଣିଣ ଦୂତିକା ଔଲଗି ହେଲେ ।
ସନ୍ତୋଷ ହୋଇ ବଚନ କହିଲେ ।

୧୦-୧—ଯନ୍ତ୍ର ମୁଖ ଭଳେ (ଯ.ର) ।

ସୁଦଯ୍ଯ କର ହେ କଳହ ଋଷି ।
ତୁମ୍ଭର ଗୁଣ ଘୋଷୁଥିବା ବସି ।
ନାରଦ ବୋଇଲେ ଉଠ ବନ୍ଦନ ।
ବୃନ୍ଦାବତୀ ପୁରେ ଯିବା ଗୋ ପୁଣ ।
ନାରଦ ଉଠି ଅଗରେ ଚଳନ୍ତି ।
ପଛରେ ଦୂତୀ ଗମନ କରନ୍ତି ।
ବୃନ୍ଦାବତୀପୁରେ ପ୍ରବେଶ ହେଲେ ।
ବସିଛି ସ୍ୱନକ ପଲଙ୍କ ପରେ ।
ସହସ୍ରେ ଗୋପୀ ବେଢ଼ି ବସିଛନ୍ତି ।
ଆଉ ଗୋପୀମାନେ ବସି ଅଛନ୍ତି ।
ଝାଞ୍ଜ ମର୍ଦ୍ଦଲ ବାଜଣା ବଜାଇ ।
ବୀଣା ତମ୍ବୁରା ସିତାର ସ୍ୱରଇ ।
ରାଧାକୃଷ୍ଣ ଗୁଣ କରେ ଗାୟନ ।
ମଧ୍ୟରେ ବସି ଚନ୍ଦ୍ରମୁଖୀ ପୁଣ ।
ଗୋଷ୍ଠ ଗୋଷ୍ଠ ହୋଇ ଗୋପୀ ସମସ୍ତେ ।
ଦୁଇ ସସ୍ର ନାରୀ ବସିଲେ ପାଶେ ।
ନାଟ ଆରମ୍ଭ ଗୀତମାନ କଲେ ।
ଦଶ ପାଞ୍ଚ ଗୋପୀ ବେଶ ହୋଇଲେ ।
ନାଟକାରୀ ବେଶ ତରୁଣୀଗଣ ।
ମଧ୍ୟରେ ନାଚେ ଛଳ ଛଳ ପୁଣ ।
ଘୁଙ୍ଗୁର ଝୁଣ୍ଟିଅ ପାଦେ ଶବଦ ।
ଗାଇବା ନାଚବାରେ ମନ ଭେଦ ।
ବୃନ୍ଦାବତୀ ବସି ଦେଖୁ ଅଛନ୍ତି ।
ଏହି ସମୟରେ ମିଳିଲେ ଦୂତୀ ।
ଦୂତୀକି ଦେଖି ହରଷ କାମିନୀ ।
ହରଷ ମନରେ ସମସ୍ତେ ପୁଣି ।
ବୃନ୍ଦାବତୀ ପାଶେ ଦୂତୀ ବସିଲେ ।
ହାସ ରସରେ ନୃତ୍ୟ ରଙ୍ଗ କଲେ ।
ମଧ୍ୟମ ହୋଇଛି ନୃତ୍ୟର ବେଳ ।
ଅର୍ଥ ସଙ୍ଗୀତ ଲାଗିଅଛି ମେଳ ।
ଏହି ସମୟରେ ନାରଦ ମିଳେ ।
ଦେଖି ବୃନ୍ଦାବତୀ ଉଠି ସତ୍ୱରେ ।
ନୃତ୍ୟରଙ୍ଗ ପୁଣି ରଖିଲେ ଗୋପୀ ।
ବୃନ୍ଦାବତୀ ଯାଇ ଚରଣେ ଲୁଣ୍ଠି ।
ସମସ୍ତେ ଶୋଇଲେ ମୁନି ଚରଣ ।
କଲ୍ୟାଣ କଲେ ବ୍ରହ୍ମାଙ୍କ ନନ୍ଦନ ।
ଅଇ ସୁଲକ୍ଷଣୀ ହୁଅ ଗୋ ତୁମ୍ଭେ ।
ମନାସିଦ୍ଧି ବର ଲେଉଛୁ ଏବେ ।
କୃଷ୍ଣ ସଙ୍ଗରେ ଦିନ କଟି ଯାଉ ।
ବୃନ୍ଦାବନ ଥାନ ନ ମିଳୁ ଆଉ ।
ଜୀଅନ୍ତେ ହରି ସଙ୍ଗେ ଭାବ ହେବ ।
ମଲେ ଗୋଲୋକ ବୈକୁଣ୍ଠ ମିଳିବ ॥
ସାତ ବରଷ ଛ'ମାସେ ଯେ ପୁଣ ।
ବୃନ୍ଦାବନରେ କରିବ ଭ୍ରମଣ ।
ତେବେ ହରି ସଙ୍ଗେ ସଙ୍ଗ ମିଳିବ ।
ସବୁ ଦୁଃଖମାନ ପାସୋର ଯିବ ।
ଶୁଣି ଗୋପାଳୁଣୀ ତାଟକା ହେଲେ ।
କି ଦୋଷ କଲୁ ହେ ମୁନି ତୁମ୍ଭରେ ।
ଏତେ ନିଷ୍ଠୁର କଥା କିମ୍ପା କହ ।
ମଲା ଉପରେ ଶଗଡ ମଡାଅ ।
ହରି ଛାଡ଼ି କରି ଆମ୍ଭଙ୍କୁ ଗଲେ ।
ଦାରୁଣ ଦଶା ଅକ୍ରୁର ଭ୍ୟାଇଲେ ।
ତୁମ୍ଭେ ଛଡାଇଲ ବୃନ୍ଦାବନକୁ ।
ଏ ଯଉଁ ବେଭାର କଲ ଆମ୍ଭଙ୍କୁ ।
ସମସ୍ତେ ବିଚାର କରଣ ମନେ ।
କୃଷ୍ଣଙ୍କୁ ପାଞ୍ଚ ନେଇ ଗଲେ କେଣେ ।

୩୪-୧—ନଟବର ବେଶ (ଝ), ନଟନାଗ୍ନ ବେଶ (ଗ) ।

ଅମ୍ଭଙ୍କୁ ଏବେ ବିପତ୍ତି ଦେଉଛ ।
ନ ମାର ବଞ୍ଚା ଜୀବନେ ରଖିଛ ।
ଜଣାଗଲା ତୁମ୍ଭ ବିବେକ ପଣ ।
ଯେତେ କହିଲ ସବୁ ଅକାରଣ ।
ଏତେ ବୋଲି ଗୋପୀ ରୋଦନ କଲେ ।
ଗୋଷ୍ଠ ଗୋଷ୍ଠ ହୋଇ ଧରଣୀ ପରେ ॥
ଶୋଇଣ ସ୍ମରେ ନାରାୟଣଙ୍କୁ ।
ଧରାଧର ହୋଇ ଗଡନ୍ତି ତାଙ୍କୁ ।
ରୋଦନ ଦେଖି ମୁନି ବିଚାରିଲେ ।
ଭେଦ ନ ପାଇ ଗୋପୀ ମନ୍ଦ ହେଲେ ।
ବୁଝାଇ ୟାଙ୍କୁ କହିବା ସନ୍ଦେଶ ।
ତେବେ ଅଜ୍ଞାନ ଛାଡିବେ ଅବଶ୍ୟ ।
ମୁନି ବୋଇଲେ ବୃନ୍ଦାବତୀ ଶୁଣ ।
ଅଜ୍ଞାନ ହେଲେ କି ହେବ କାରଣ ।
ବୁଝି ନ ପାଇ ମନେ ମହାଦୁଃଖ ।
ସମ୍ଭାଳ ରୋଦନ ଗୋପୀ ସମସ୍ତ । ୭୦ ।
ଅମ୍ଭେ ସେ କଥା ବୁଝାଇଣ ଦେବା ।
ବସ ସମସ୍ତେ ତୁମ୍ଭଙ୍କୁ କହିବା ।
ହସି ବୃନ୍ଦାବତୀ ଭିନ୍ନ ହୋଇଲେ ।
ସମସ୍ତ ସଖୀଙ୍କି ପ୍ରବୋଧ କଲେ ।
ସମସ୍ତେ କ୍ରୋଧ ଶାନ୍ତ ହୋଇ ପୁଣ ।
ମୁନିଙ୍କ ପାଶେ ବସିଲେ ଆସିଣ ।
ନାରଦ ବୋଲନ୍ତି ଶୁଣ ଗୋ ଗୋଇ ।
ମଥୁରାରେ ଅମ୍ଭେ ପ୍ରବେଶ ହୋଇ ।
କୃଷ୍ଣଙ୍କୁ ଦେଖି ପଚାରିଲୁ ପୁଣ ।
ଗୋପୀଙ୍କି କଷ୍ଟ ଛାଡିଲ ଆପଣ ।୭୫।
ସେ ବୋଇଲେ ଅଷ୍ଟ ବରଷ ଗଲେ ।
ଗୋପୀଙ୍କି ନେବା ଦ୍ୱାରକାକୁ ଗଲେ ।
ଅମ୍ଭେ ଥିବା ଯାକ କେଣେ ନ ଯିବେ ।
ମନ ଇଚ୍ଛାରେ ବାଲୀ କାଲି ନେବେ ।
କେତେ ଲୀଳା ହେବ ଦ୍ୱାରକା ପୁଣ ।
ସ୍ୱଦାସ ଦ୍ୱାରକା ହେବ ଘଥାଣ ।
ବୃନ୍ଦାବନକୁ ଗୋପୀ ତେଜି ଯିବେ ।
ଲେଉଟି ଆଉ ପୁଣ ନ ଦେଖିବେ ।
ତୁମ୍ଭେ ନ ବୁଝି କରୁଛ ରୋଦନ ।
ଶୁଣି ସନ୍ତୋଷ ହେଲେ ଗୋପୀଗଣ ॥
ବୋଇଲେ ଅମ୍ଭଙ୍କୁ ସୁଦୟା କର ।
କେମନ୍ତେ ବିଷ୍ଣୁରୁ କହ ବିଚାର ।
ମୁନି ବୋଇଲେ କରିବା କାରଣ ।
ଚିତ୍ରପଟ ରୂପ ଦେବା ଲେଖିଣ ।
ପୂଜା ବେଶ କର ମନ ତୋଷିବ ।
ରୂପ ଦେଖିଲେ ଅଜ୍ଞାନ ନୋହିବ ।
ଗୋପାଳ ମନ୍ତ୍ରେ ପୂଜା ବିଧି କର ।
ବେଶ କରିବ ନାନା ପୁଷ୍ପ ଭର । ୭୫ ।
ରତ୍ନରେ ଶରୀର ଭୂଷଣ ହେବ ।
ପାଟ ପଛନି କାଛ ପିନ୍ଧାଇବ ।
ଧୂପ ଦୀପ ଗନ୍ଧ ଚନ୍ଦନ ଦେଇ ।
ଲଡୁଆ ଗୁଆ ଗୋ ଥୋଇବ ନେଇ ।
ସକଳ ପଦାର୍ଥ ଥୋଇବ ନେଇ ।
ବେଗେ ଆସ ଅମ୍ଭେ ଏଠାରେ ରହି ।
ଶୁଣିଣ ବ୍ରଜ-ସୁନ୍ଦରୀ ଚଳିଲେ ।
ଯେଝାଘରେ ଯାଇ ପ୍ରବେଶ ହେଲେ ।
ସ୍ନାହାନ ସାରିଣ କଲେ ଭୋଜନ ।
ମନ୍ଦିର ମାନ କରିମଲ ପୁଣ । ୮୦ ।
ଏଥୁ ଅନନ୍ତରେ ଶୁଣ ଗୋ ଉମା ।
ବୃନ୍ଦାବତୀ ସଖୀ ଡାକ ଉତ୍ତମା ।

୬୧-୨—ଭେଦ କାରଣ । ୭୮-୨—ବେଳ କାଳ ନେବେ (ଟ) । ୭୨.....କର,.....ବଡ଼ୁ (ଡ) ।

ଯମୁନା ଜଳ କଳସିରେ ଆଣି ।
ମୁନି ସ୍ନାହାନ କରାଇଲେ ପୁଣି ।
ସୁବର୍ଣ୍ଣ ଝଟିରେ ନୀର ପୂରାଇ ।
ଆସନ ଜଳ ବେଗେ ଦେଲେ ନେଇ ।
ବସି ନିତ୍ୟକର୍ମ ସାରିଲେ ମୁନି ।
ଦୂତୀ ଚଳିଗଲେ ଘରକୁ ପୁଣି ।
ବୃନ୍ଦାବତୀ ସ୍ନାନ ଶୌଚ ହେଲେ ।
ନାରଦଙ୍କୁ ଯାଇଁ ଦର୍ଶନ କଲେ ।
ଦୁଧ ସର ଦହି ଛେନା କଦଳୀ ।
ନବାତ ଯଉଡ଼ ଦେଲେକ ବାଲୀ ।
ବସିଣ ଋଷି କଲେକ ଭୋଜନ ।
ଉଠି ଆଚମନ କରନ୍ତି ପୁଣ ।
କଷାଫଳ ସାର ପଲଙ୍କେ ଶୋଇ ।
ବୃନ୍ଦାବତୀ ଭୁଞ୍ଜି ବସିଲେ ଯାଇଁ ।
ଛଡ଼ ରସରେ କରିଣ ଭୋଜନ ।
କଢ଼ିଅ ତୁଣ୍ଡେ କରି ଆଚମନ ।
ଦୂତୀ ଭୁଞ୍ଜିଣ ବହନ ଅଇଲେ ।
ପୁଞ୍ଜି ପୁଞ୍ଜି ହୋଇ ଗୋପୀ ମିଳିଲେ ।
ଦୁଇ ସହସ୍ର ଗୋପୀ ହୋଇ ଠୁଳ ।
ଗହଳ ଲାଗେ ବୃନ୍ଦାବତୀ ପୁର ।
ସମସ୍ତ ଗୋପୀଏ ଯହୁଁ ମିଳିଲେ ।
ନାରଦ ମୁନି ପଲଙ୍କୁ ଉଠିଲେ ।
ରୂପକାରକୁ ସୁମରଣା କଲେ ।
ସହ୍ରେ ରୂପକାର ଆସି ମିଳିଲେ ।
ବୋଇଲେ ଗୋପୀଙ୍କ ସଙ୍ଗରେ ଯାଅ ।
ଘର ଘରକେ ଚଉପଟ ଲିହ ।
ଗୋପୀନାଥ ରୂପ ଲେଖିବ ଜାଣି ।
ମଧ୍ୟରେ ବଜାଏ ମୁରଲୀପାଣି ।

ସଙ୍ଗରେ ରାଧିକା ଥିବେ ତାଙ୍କର ।
କଳା ଧଳା ଛଡ ଠେକ ଆଗର ।
ଏମନ୍ତ ରୂପେ ଲେଖିବ ସୁଢ଼ଲେ ।
ଯେମନ୍ତ ଗୋପୀନାଥ ବସ୍ତା ମେଳେ ।
ଶୁଣି ରୂପକାର ବହନ ଗଲେ ।
ଦୂତୀ ଘରେ ଯାଇଁ ଆଗେ ଲେଖିଲେ ।
ଗୋପୀନାଥ ରୂପ ଯେମନ୍ତେ ଶୋଭା ।
ଛଡ କାହାଲ ଆଗେ ଲେଖି ଉଭା ।
ମଣ୍ଡଳୀ ଉଡରେ ରୂପ ଲେଖିଲେ ।
ଦଶହଜ ଗୋପୀ ସଙ୍ଗେ ରଖିଲେ ॥
ସମସ୍ତଙ୍କ ଘରେ ଏହି ପ୍ରକାରେ ।
ମୁରଲୀ ଧରି ଉଭା କରନ୍ତରେ ।
ମସ୍ତକରେ ଫୁଲ ବେକରେ ହାର ।
ଉଭୁର ପଇତା ହୃଦରେ ପର ।
ଏମନ୍ତ ରୂପ ଲେଖିଲେକ ଜାଣ ।
ନାରଦ ପାଶେ ପ୍ରବେଶ ତକ୍ଷଣ ।
ଦେଖିଣ ନାରଦ ତୋଷ ହୋଇଲେ ।
ଦୂତୀଙ୍କି ଦେଖି ବଚନ କହିଲେ ।
ବୋଇଲେ ହେଲା କି ରୂପ ସୁଢ଼ାଳ ।
ଦୂତୀ ବୋଇଲେ ସୁଦସ୍ତା ଭୁମ୍ଭର ।
ରୂପକାରକୁ ବୋଇଲେ ନାରଦ ।
ପୁଣି ସହସ୍ର ରୂପ ଯେ ସମ୍ପାଦ ।
ରାଧାକୃଷ୍ଣ ଦୂତୀ ବୃନ୍ଦାବତୀ ।
ଲଳିତା ବିଶାଖା ସଙ୍ଗରେ ସଖୀ ।
ଏମନ୍ତ ରୂପେ ଲେଖିବ ସହସ୍ରେ ।
ରୂପ ଦେଖି ମୋହ ହେବେ ତ୍ରୈଲୋକେ ।
ଶୁଣି ରୂପକାର ବହନ ଗଲେ ।
ସମସ୍ତଙ୍କ ଘରେ ରୂପ ଲେଖିଲେ ।

୧୧୮-୨ — ମୋହ ହେବେ ତ୍ରିଦଶେ (ଖ) ।

ମଣ୍ଡଳୀ ମଧରେ ଲେଖିଲେ କୃଷ୍ଣ ।
ଅଷ୍ଟବାଳକ ଛନ୍ଦ ତାଙ୍କ ପାଶ ।
ଆଗ ପଛରେ ସଖୀଗଣ ଛନ୍ଦ ।
ଲଳିତା ବିଶାଖା ସଙ୍ଗରେ ଦୂତୀ ।
ବୃନ୍ଦାବତୀ ସଙ୍ଗେ ରାଧିକା ପୁଣ ।
ଏମନ୍ତେ ରୂପ କରିଲେ ଭିଆଣ ।
ବୃନ୍ଦାବତୀ ପୁରେ ଲେଖିଲେ ଯାଇଁ ।
ଦେଖିଲେ ସମସ୍ତେ ହୋଇଲେ ମୋହ ।
ରୂପ ଲେଖିଲେ ବିଚିତ୍ର କରଣ ।
ସ୍ୱର୍ଗପୁରକୁ ଗଲେ ତତକ୍ଷଣ ।
ନାରଦ ଋଷି ବନ୍ଦନ ଉଠିଲେ ।
ଚରଣ ଧୋଇ ଭିତରେ ପଶିଲେ ।
ଜୀବନ୍ୟାସ କଲେ ଚିତ୍ରରୂପକୁ ।
ଧୂପ ଦୀପ ଗନ୍ଧ ଦେଲେ ତାହାଙ୍କୁ ।
ବୃନ୍ଦାବତୀ ଆଣି ସକଳ ଦେଲେ ।
ଗୋପାଳ ମନ୍ତ୍ରେ ତାଙ୍କୁ ପୂଜା କଲେ ॥
ସମସ୍ତଙ୍କ ଘରେ ନାରଦ ପୁଣ ।
କୃଷ୍ଣ ରୂପକୁ ଜୀବନ୍ୟାସ ଜାଣ ।
ଧୂପ ଦୀପ ଗନ୍ଧ ଚନ୍ଦନ ଦେଲେ ।
ପୂଜା ସମସ୍ତଙ୍କୁ କରି ଚଳିଲେ ।
ଦ୍ୱାରକା ପୁରରେ ମିଳିଲା ବନ୍ଦନ ।
ଜୀବନ୍ୟାସ ରୂପ କଲେ ବନ୍ଦନ ।
ସହସ୍ର ପୁରେ ଜୀବନ୍ୟାସ କରି ।
ଧୂପ ଦୀପ ଗନ୍ଧ ଚନ୍ଦନ ଭରି । ୧୨୪ ।
ନାନା ଭାବରେ ବେଶ କରାଇଲେ ।
ଦୀନାଇ ଦାସେ ସେ ପାଶେ ରହିଲେ ।

୧୨୪-୧ – ସହସ୍ର ରୂପେ (ତ) ।



# ତ୍ରିଂଶ ଛାନ୍ଦ



ଗନ୍ଧର୍ବୀ ବୋଇଲେ ଶୁଣ ଈଶ୍ୱର ।
ବୃନ୍ଦାବତୀର କେମନ୍ତ ବିସ୍ତର । ୧ ।
ପୁଣି ନାରଦ ତାଙ୍କୁଁ କି କହିଲେ ।
ଏହା ମତେ କହ ଶଙ୍କର ଥରେ ।
ସମସ୍ତ ଗୋପୀଙ୍କି ଡାକଣ ପୁଣ ।
ବ୍ରହ୍ମଜ୍ଞାନ ମନ୍ତ୍ର କହିଲେ ଜାଣ ।
ପୂଜାବିଧି ସବୁ ଶିଖାଇ ଦେଲେ ।
ଗୋପାଳ ମନ୍ତ୍ରେ କରିବ ବୋଇଲେ ।
ସ୍ନାହାନ ବେଶ କରି ପ୍ରଭାତେ ଦିନ ।
ତର୍ପଣ ବିଧିରେ ସାନ୍ଧାନ ପୁଣ । ୫ ।
ଧୂପ ଦୀପ ଗନ୍ଧ ଚନ୍ଦନ ଦେବ ।
ବେଶ କରିଣ ଦର୍ଶନ କରିବ ।
ମୋତିମାଳା ଆଣି ଦେଲେ ସହସ୍ରେ ।
ଏଥିରେ ଜପ କରିବ ସମସ୍ତେ ।
ଗୋଷ୍ଠ ଗୋଷ୍ଠ କରି ବାଣ୍ଟିଣ ଦେଲେ ।
ସମସ୍ତଙ୍କୁ ବୁଝାଇଣ କହିଲେ ।
ମହାମନ୍ତ୍ରରେ କରି ସୁମରଣ ।
ଯେବେ ଗୋବିନ୍ଦଙ୍କୁ ପାଇବ ପୁଣ ।
ପୁଣି ସହସ୍ରେ ନୀଳମଣି ମାଳୀ ।
ସହସ୍ରେ ଗୋପୀଙ୍କି ଦେଲେକ ତୋଳି ॥
ହୃଣିକ ଦେଲେ ନେଇଣ ଗୋଷ୍ଠଏ ।
ସମସ୍ତଙ୍କୁ ପୁଣି ବୁଝାଇ କହେ ।
ବ୍ରହ୍ମଜ୍ଞାନ ତାଙ୍କୁ କହିଣ ଦେଲେ ।
ଗୋପାଳ ମନ୍ତ୍ର ଶିଖାଇଲେ ଭଲେ ।
ସକଳ ବିଧାନ କହି ତାହାଙ୍କୁ ।
ବୋଇଲେ ଯାଅ ଗୋ ତୁମ୍ଭ ଘରକୁ ।
ଶୁଣିଣ ବ୍ରଜସୁନ୍ଦରୀ ଯେତେକ ।
ମେଲାଣି ହୋଇ ଚଳିଲେ ସମସ୍ତ ।
ନାରଦ ବୃନ୍ଦାବତୀକି କହିଲେ ।
ଆମ୍ଭେ ଯାଉଛୁ ତୁମ୍ଭେ ଥାଅ ଭଲେ ॥
ଏତେ କହିଣ ବହନ ଚଳିଲେ ।
ରଙ୍ଗଦେବୀ ପୁରେ ଯାଇ ମିଳିଲେ ।
ଦେଖିଲେ ରଙ୍ଗଦେବୀ ପଲଙ୍କରେ ।
ଶୟନ କରିଛି ଦୋଳି ଉପରେ ।
ଦାସୀଗଣମାନେ ଦୋଳି ଧରିଣ ।
ପହଁଷାଉଛନ୍ତି ତାହାଙ୍କୁ ପୁଣ ।
ରାଧାକୃଷ୍ଣ ନାମ ତୁଣ୍ଡରେ ଗାଇ ।
ସାରୀକି ପଢ଼ାଉ ଅଛନ୍ତି ତହିଁ ।
ନାରଦଙ୍କୁ ଦେଖି ସାରୀ ଡାକଇ ।
ଉଠ ରଙ୍ଗଦେବୀ ମୁନି ଅଇଲେ । ୧୦ ।
ରଙ୍ଗ ଦେବୀ ଉଠି ଚକ୍ଷୁକୁ ମଳି ।
ବ୍ରହ୍ମାଙ୍କ ନନ୍ଦନ ନାରଦ ମିଳି ।
ପୁଣି ତାଙ୍କୁ ଦେଲେ ସାରୀ ଚେତାଇ ।
ଚେତା ନାହିଁ କି ଗୋ ଗୋପର ଗୋଈ
ନାରଦ ଛିଡ଼ା ହୋଇଛନ୍ତି ଦେଖ ।
କ୍ରୋଧ ହେଲେ ଦେବ ବହୁତ ଦୁଖ ।

୧୮-୨—ଦୋଳକ ତୂଣ (ଖ) । ୧୯-୨—ଅଦ୍ଭୁତ ସ୍ନେହ (ଗ) ।

ଶୁଣି ରଙ୍ଗଦେଈ ଉଠି ଅଇଲା ।
ଚରଣ ତଳରେ ଯାଇଁ ଶୋଇଲା ।
ମାନ୍ୟ ଧର୍ମକରି ଚଳିଲା ଘର ।
ସୁବର୍ଣ୍ଣ ଝରୀରେ ପୂରାଇ ନୀର ।
ଚରଣ ଧୋଇ ଉଦେକ ଖାଇଲା ।
ଝୀନ ବସନରେ ବେଗେ ପୋଛିଲା ।
ବନ୍ଦି କଥା ତାଙ୍କୁ ପଚାରିଲା ।
ଦୋଳ ବାଙ୍କିଅ ପରେ ବସାଇଲା ।
ଗଙ୍ଗ ବାସବାଣ ପଇଡ଼ ଆଣି ।
ଛେନାସର ଦେଲେ ଭୁଞ୍ଜିଲେ ମୁନି ।
ଆଚମନ ଖାଇ ବସିଲେ ଯାଇ ।
ବୋଇଲେ କୃଷ୍ଣ ଛାଡ଼ିଲେ କହ୍ନାଇ ।
ସେ ମଥୁରା ଗଲେ ରହିଲେ ତେଣେ ।
ତୁମ୍ଭେ ବିରହରେ ମରୁଛ ଏଣେ ।
ରଙ୍ଗଦେଈ ବୋଲେ କରମେ ନାହିଁ ।
ନ ଦେଖି ମରିବୁ ଗୋପର ଗୋଈ ।
ବିଧାତା ଯାହା ଲେଖିଅଛି ପୁଣ ।
ଆମ୍ଭର ବୋଲେ କି ହୋଇବ ଆନ ।
ତୁମ୍ଭେ ତ ବହୁତ କାଳରେ ଆଜ ।
ଗୋପକୁ ଅଇଲ କେମନ୍ତ ସଜ ।
ଆମ୍ଭମାନଙ୍କ ଦୁଃଖ ଦୂର ଗଲା ।
ବ୍ରହ୍ମାଙ୍କ ନନ୍ଦନ ସୁଦୟା କଲା ।
ତାହା ଶୁଣିଣ ନାରଦ ହସିଲେ ।
ରୂପକାରଙ୍କୁ ସୁମରଣା କଲେ ।
ସ୍ୱର୍ଗରୁ ସହସ୍ରେ ଆସି ମିଳଲେ ।
ଦେଖି ରଙ୍ଗଦେଈ ତାଟକ ହେଲେ ।
ଋଷି ବୋଇଲେ ଶୁଣ ଗୋ ସୁନ୍ଦରୀ ।
ଚିତ୍ରପଟ ରୂପ ଲେଖନ କରି ।
ଚିତ୍ର ଘରରେ ଆମ୍ଭେ ଦେଇ ଯିବା ।
ନୟନରେ ଦେଖିଲେ ହୋଇବ ଲୋଭା ।
ତୁମ୍ଭ ସଖୀଗଣେ ଡ଼ାକାଇ ଆଣ ।
ଶୁଣି ରଙ୍ଗଦେଈ ତୋଷ ହୋଇଣ ।
ସଖୀଙ୍କ ପଠାଇ ଡ଼ାକିବା ପାଇଁ ।
ସମସ୍ତେ ମିଳଲେ ଶୁଣିଣ ତହୁଁ ।
ରଙ୍ଗଦେଈ ପୁଣି ମନ୍ଦିରେ ଗଲା ।
ମନ୍ଦିର ଗୋଟା ନିର୍ମଳ କଲା ।
ନାରଦଙ୍କୁ ଆସି କହିଲା ପୁଣ ।
ରୂପକାରଙ୍କୁ କହିଲେ ଆପଣ ।
ନୃସିଂହ ରୂପ ଲେଖିବ ସୁଢ଼ଙ୍ଗେ ।
ଯେମନ୍ତ ହିରଣ୍ୟ ବିଦାର କଲେ ।
ସହସ୍ରେ ରୂପ ଲେଖିଣ ସତ୍ୱରେ ।
ସହସ୍ରେ ଘର ଏମନ୍ତ ପ୍ରକାରେ ।
ସମସ୍ତଙ୍କ ଘରେ ଲେଖନ କରି ।
ଯେମନ୍ତେ ମୋହ ହେବେ ଗୋପନାରୀ ॥
ତାହା ଶୁଣି ରୂପକାର ଉଠିଲେ ।
ରଙ୍ଗଦେଈ ପୁରେ ଲେଖିତ କଲେ ।
ନୃସିଂହ ମୂରତି ଅତି ସୁନ୍ଦର ।
ଦେଖି ମୋହ ହେଲେ ଗୋପୀ ସକଳ ।
ମଣ୍ଡିଳ ଗୋଟିକ ଭିତରେ ଲେଖି ।
ଜାନୁରେ ପଡ଼ିଛି ହିରଣ୍ୟ ଗୋଟି ।
ସେଠାରୁ ସମସ୍ତ ଗୋପୀ ଚଳିଲେ ।
ମନ୍ଦିର ମାନଙ୍କୁ ସୁନ୍ଦର କଲେ ।
ରୂପକାର ଯାଇ ହେଲେ ପ୍ରବେଶ ।
ନୃସିଂହ ରୂପ କଲେକ ପ୍ରକାଶ ।
କୋଡ଼ିଏ ଭୁଜରେ ଆୟୁଧମାନ ।
ଧରିଣ ନୃସିଂହ ଉଗ୍ର ହୋଇଣ ।
ଜାନୁ ପରେ ଅଛି ହିରଣ୍ୟ ଦୈତ୍ୟ ।
ଦେଖିଲେ ମୋହଇ ଜଗତ ଯାକ ।

ସହସ୍ରେ ରୂପ ଲେଖି ରୂପକାର ।
ପ୍ରବେଶ ହୋଇଲେ ମୁନି ଛାମୁର ।
ଚରଣ ଧୋଇ ମୁନି ବେଗେ ଗଲେ ।
ନୃସିଂହ ମୂର୍ତ୍ତି ଜୀବନ୍ୟାସ କଲେ ।
ଛେନା ଦୁଧ ସର ଲବଣୀ ଆଣି ।
ପାଚେଲା କଦଳୀ ନବାତ ପୁଣି ।୬୫।
ନୃସିଂହ ମନ୍ତ୍ରେ ପୂଜା ତାଙ୍କୁ କଲେ ।
ଧୂପ ଦୀପ ଗନ୍ଧ ଚନ୍ଦନ ଦେଲେ ।
ଫୁଲରେ ଭୂଷଣ ତାହାଙ୍କୁ କରି ।
ପଢ଼ଣୀ ଖଦ ପିନ୍ଧାଇଲେ ଘଡ଼ି ।
ରଙ୍ଗଦେବୀଙ୍କ ଶିଖାଇଣ ଦେଲେ ।
ନୃସିଂହ ମନ୍ତ୍ରରେ ପୂଜା କହିଲେ ।
ବ୍ରହ୍ମଜ୍ଞାନ ତାଙ୍କୁ କହିଲେ ପୁଣ ।
ମହାମନ୍ତ୍ରରେ ଜପ ସୁମରଣ ।
ବଇଡୂର୍ଯ୍ୟ ମାଳୀ ସହସ୍ରେ ଆଣି ।
ସମସ୍ତଙ୍କୁ ବାନ୍ଧି ଦେଲେକ ପୁଣି ।୭୦।
ଏ ମାଳରେ ତୁମ୍ଭେ ଜପ କରିବ ।
ତେବେ ହରିଙ୍କି ଅଳପେ ଲଭିବ ।
କହି ସେଠାରୁ ଚଳିଗଲେ ପୁଣ ।
ସମସ୍ତଙ୍କ ଘରେ ମିଳିଲେ ଜାଣ ।
ନୃସିଂହ ମୂର୍ତ୍ତି ଜୀବନ୍ୟାସ ଦେଇ ।
ସେଠାରୁ ନାରଦ ଚଳିଲେ ଯାଇ ।
ସୁଦେବୀ ପୁରେ ପ୍ରବେଶ ହୋଇଲେ ।
ଗହଳ ଲାଗିଛି ତାହାର ପୁରେ ।
ସହସ୍ରେ ବ୍ରଜ-ସୁନ୍ଦରୀ ମିଳଣ ।
ବସିଛନ୍ତି ସବୁ ମେଳ ହୋଇଣ ।
ଶ୍ରୀକୃଷ୍ଣ କଥା କୁହାକୋହି ହୋଇ ।
ମଧ୍ୟରେ ସୁଦେବୀ ବସି ଅଛଇ ।
କେ ବୋଲେ ଯଣେ ପଟିଆଅ ଗୋପ ।
ମଥୁରା ଯାଇ ଦେଖି ଅସିବାକୁ ।
ଏମନ୍ତେ ଗୋପୀଏ ବିଚାର କରି ।
ଏହି ସମୟରେ ନାରଦ ମିଳି ।
ଦେଖିଣ ସମସ୍ତ ଗୋପୀ ଉଠିଲେ ।
ଚରଣେ ଯାଇଁ ଭଗତ ହୋଇଲେ ।
ସୁବର୍ଣ୍ଣ ଝରିରେ ଯମୁନା ଜଳ ।
ସୁଦେବୀ ଯାଇଁ ଆଣିଲେ ସତ୍ୱର ।୭୦।
ଚରଣ ଋଷିଙ୍କର ଧୋଇ ଦେଲା ।
ଝୀନ ବସନ ଆଣିଣ ପୋଛିଲା ।
ବସିବାକୁ ଝୀନ ପଢ଼ଣୀ ଦେଲା ।
ବସ ବ୍ରହ୍ମବେତ୍ତା ବୋଲି ବୋଇଲା ।
ଆନନ୍ଦେ କଳହ ବସିଲେ ଯାଇଁ ।
ବୋଇଲେ କି କର ଗୋପର ଗୋଈ ।
ଶୁଣିଣ ସୁଦେବୀ ବଚନ କହି ।
ଛାଡ଼ି ଗଲା ହରି ନନ୍ଦର ପୋଇ ।
ଅନାଥ ଯୁବତୀ ପରାଏ ହେଲୁଁ ।
ମଝି ନଦୀରେ ନାବ ବୁଡ଼ାଇଲୁଁ ।୭୫।
ଏବେ ତ ବସିଛୁଁ ପାଷାଣ ପ୍ରାଏ ।
ରକତ ମାଂସ ଦେହରୁ ଯାଏ ।
ଶୁଖିଲା ତରୁ ପ୍ରାଏ ଆମ୍ଭେ ହେଲୁଁ ।
ବଡ଼ପଣ ଛାଡ଼ି ଯାନ ନୋହିଲୁଁ ।
ତୁମ୍ଭେ ତ ଆମ୍ଭଙ୍କୁ ସୁଦୟା କଲ ।
ଦୁଃଖର ବେଳେ ଥରେ ସଙ୍ଖୋଳିଲ ।
ନାରଦ ବୋଲେ ଶୁଣ ଗୋପାଙ୍ଗଣି ।
ଯେମନ୍ତେ ତୋଷ ହେବ ତୁମ୍ଭେ ପୁଣି ।
ତେମନ୍ତ ରୂପ କରିବା ଧିଆଣ ।
ଚିତ୍ର ପଟରେ କରିବା ଲେଖନ ।
ରୂପକାରମାନ ଯେକଣ ଚଳି ।
ମନ୍ଦିରମାନ ନିର୍ମ୍ମଳ ଯେ କରି ।

ପ୍ରଭଦନ ଦେଖି ନାରାୟଣଙ୍କ ।
ଏମନ୍ତେ କହିଲେ ନାରଦ ତାଙ୍କୁ ।
ରୂପକାରଙ୍କୁ ସୁମରଣା କଲେ ।
ସହସ୍ରେ ରୂପକାର ଆସି ମିଳେ ।
ଗୋପୀ ଗୋଷ୍ଠକେ ଗୋଷ୍ଠ ରୂପକାର ।
ଯେନ ଚଳଲେ ଯେଝାର ମନ୍ଦିର ।
ନାରଦ ବୋଇଲେ ରୂପକାରଙ୍କୁ ।
ରାମ ଲକ୍ଷ୍ମଣ ସୀତା ଲେଖିବାକୁ ।
ଯାହ ମନ୍ତ୍ରୀ ହନୁ ସଙ୍ଗରେ ଥିବେ ।
ରାବଣ ମୂରତି ଲେଖିବ ଏବେ ।
ମୂରତି ଦେଖି ଗୋପୀ ତୋଷ ହେବେ ।
ରାତ୍ର ଦିବସ ପାଶ ନ ଛାଡ଼ିବେ ।
ଶୁଣି ଚିତ୍ରକାର ବନ୍ଦନ ଗଲେ ।
ପୁରେ ପୁରେ ପଶି ରୂପ ଲେଖିଲେ ।
ସହସ୍ରେ ରୂପ ଲେଖିକର ଆସି ।
ଦେଖିଣ ଗୋପୀ ଯେ ହୋଇଲେ ତୋଷୀ
ରାମ ଲକ୍ଷ୍ମଣ ସୀତା ହନୁ ଭୁଲେ ।
ଲେଖି ରୂପକାରେ ଗଲେ ମନ୍ଦିରେ ॥
ସୁଦେବୀ ମନ୍ଦିରେ ଏହି ପ୍ରକାରେ ।
ଚିତ୍ର ବିଚିତ୍ର ମଣ୍ଡଳ ଆକାରେ ।
ଦେଖିଣ ନାରଦ ବେଗେ ଉଠିଲେ ।
ଚରଣ ଧୋଇ ମନ୍ଦିରେ ପଶିଲେ ।
ରୂପ ଜୀବନ୍ୟାସ କରନ୍ତି ବସି ।
ହସି ଶ୍ରୀଫଳ ଗୁଆ ତହିଁ ଥାପି ।
ପୂର୍ଣ୍ଣକୁମ୍ଭ ଥୋଇ ଆଗରେ ପୁଣ ।
ତାରକ ମନ୍ତ୍ର କଲେ ସୁମରଣ ।
ପୂଜା ଧୂପ ଦୀପ ଆଳତି କଲେ
ସମସ୍ତ ଗୋପୀଙ୍କି ଶିଖାଇ ଭଲେ ।
ତାରକ ମନ୍ତ୍ରରେ ପୂଜା କରିବ ।
ଫୁଲ ଚନ୍ଦନ ବେଶ କରାଇବ ।
ସ୍ନାନ ଦାନ ସାରି ଦର୍ଶନ କରିବ ।
ଏମନ୍ତ ବୋଲି କହିଲେ ନାରଦ ।
ବ୍ରହ୍ମଜ୍ଞାନ ମନ୍ତ୍ର ଗୁପତେ କହି ।
ସେଠାରୁ ନାରଦ ଚଳଲେ ଯାଇଁ ।
ନାରଦଙ୍କ ସଙ୍ଗେ ଗୋପୀଏ ଗଲେ ।
ଯେଝା ମନ୍ଦିରେ ପ୍ରବେଶ ହୋଇଲେ ।
ସମସ୍ତଙ୍କ ପୁରେ ନାରଦ ଯାଇଁ ।
ଜୀବନ୍ୟାସ କଲେ ରୂପକୁ ତହିଁ ।
ପୂଜା ଧୂପ ଦୀପ ଆଳତି ଦେଲେ ।
ଫୁଲ ଚନ୍ଦନ ବେଶ କରାଇଲେ ।
ରତ୍ନ ଆଭରଣ ରୂପ କଷଣ ।
ପଉଣି ଶାଢି କାଞ୍ଚ ପିନ୍ଧାଇଣ ।
ସମସ୍ତଙ୍କୁ କହି ସେଠାରୁ ଗଲେ ।
ଭୁଙ୍ଗଦେବୀ ପୁରେ ପ୍ରବେଶ ହେଲେ ।
ଦେଖିଲେ ଭୁଙ୍ଗଦେବୀ ସେ ଘରରେ ।
ସହସ୍ରେ ଗୋପୀ ଅଛନ୍ତି ବାହାରେ ।
ଜଣାଣ କରୁଛନ୍ତି ସବୁ ଗୋଈ ।
ରାମ କୃଷ୍ଣ ନାମ ତୁଣ୍ଡରେ ଗାଇ ।
ଦେଖିଣ ନାରଦ ତୋଷ ହୋଇଲେ ।
ଗୋପୀଙ୍କ ଆଗରେ ଯାଇଁ ମିଳିଲେ ।
ଦେଖିଣ ସମସ୍ତ ବ୍ରଜ ସୁନ୍ଦରୀ ।
ଉଠିଣ ଓଳଗେ ପାଦେ ତାଙ୍କର ।
ଖବର ଜବେଦ ହେବାରୁ ପୁଣି ।
ବାହାରେ ଅଇଲେ ନାୟିକା ପୁଣି ।
ଦେଖିଲେ ନାରଦ ଆଗରେ ଉଭା ।
ଭୁଙ୍ଗ ଦେବୀ ମାନ୍ୟ ଧର୍ମରେ ସେବା ।
ରୁପା ଝାରିରେ ନୀର ବେଗେ ନେଇ ।
ମୁନିଙ୍କ ଚରଣ ଦେଲେକ ଧୋଇ ॥

କାନ ପଣନ୍ତରେ ଚରଣ ପୋଛି ।
ହସ୍ତ ଧରି ନେଲେ ସେ ଶୁଭ୍ରକେଶୀ ।
ସିଂହାସନ ପରେ ନେଇଁ ବସାଇ ।
ରୂପକାର ମାନ ମିଳିଲେ ତହିଁ ।
ଦେଖି ଭୃଙ୍ଗଦେବୀ ମୁନିଙ୍କ କହେ ।
ଅପୂର୍ବ ରୂପ ତ ପୃଥୁରେ ଥାଏ ।
ନାରଦ ବୋଇଲେ ରୂପ ଲେଖିବେ ।
ଚିତ୍ରପଟରେ ଦାଶରଥି ଥିବେ ।
ତୁମ୍ଭେ ସମସ୍ତେ କରିବ ଦର୍ଶନ ।
ସନ୍ତୋଷ ହୋଇବ ସବୁରି ମନ ।୧୧୯।
ଜଣେ ଜଣେ ଯେନି ସମସ୍ତେ ଚାଲ ।
ଯେଝା ମନ୍ଦିର ନିର୍ମଳ କର ।
ଶୁଣିଣ ଗୋପୀ ଯେଝା ଘର ଗଲେ ।
ରୂପକାରମାନ ସଙ୍ଗରେ ନେଲେ ।

ମନ୍ଦିର ଉଜଳା କରିଣ ପୁଣ ।
ଚିତ୍ରପଟେ ରୂପ କଲେ ଲିଖଣ ।
ଦାଶରଥି ସଙ୍ଗେ ତିନି ଭାଇଙ୍କି ।
ଶତ୍ରୁଘନ ଭରଥ ଲକ୍ଷ୍ମଣ ଜିକ ।
ସୀତା ଶୁଭ୍ରକେଶୀ ସଙ୍ଗରେ ଅଛି ।
ମଣ୍ଡଳ ଆକାରେ ରୂପକୁ ଲେଖି ।୧୨୦
ଲେଖୀ ରୂପକାର ସ୍ୱର୍ଗକୁ ଗଲେ ।
ନାରଦ ଜୀବନ୍ୟାସ ତାଙ୍କୁ କଲେ ।
ପୂଜା ଧୂପ ଦୀପ ସବୁଙ୍କି ଦେଇ ।
ରତ୍ନ ଆଭରଣେ ବେଶ କରାଇ ।
ବ୍ରହ୍ମଜ୍ଞାନ ତାଙ୍କୁ ଗୁପତେ କହି ।
ପୂଜାମନ୍ତ୍ର ଧୂପ ଦୀପ ଶିଖାଇ ।
ସେଠାରୁ ନାରଦ ଚଳିଣ ଗଲେ ।
ଦନାଇ ଦାସ ଗୋପରେ ରହିଲେ ।



# ଏକତ୍ରିଂଶ ଛାନ୍ଦ

ଏଥୁ ଉତ୍ତାରେ ଗୋ ଗରୁଡ଼ ଶୁଣ ।
ଭୃଙ୍ଗଦେବୀ ପୁରେ ନାରଦ ପୁଣ ।
କେଳେ କରନ୍ତେ ସବୁ ଗୋପାଳୁଣୀ ।
ସଙ୍ଗରେ ଗୋଡ଼ାଇ ଅଛନ୍ତି ପୁଣି ।
ସହସ୍ରେ ଯୁବତୀ ଘେନ ସୁଦେବୀ ।
ଭୃଙ୍ଗଦେବୀ ପୁରେ ଭୂରତେ ମିଳ ।
ଦେଖିଣ ନାରଦ ବୋଇଲେ ତାଙ୍କୁ ।
ସମସ୍ତେ ଯାଅ ଗୋ ଯେଝା ଘରକୁ ।
ଚନ୍ଦ୍ର ରୂପକୁ ପୂଜା ବେଶ କର ।
ଆଳତି ଧୂପ ଦୀପ କର ନାରୀ । ୫ ।
ଫୁଲ ଚନ୍ଦନ ଦେଇ ବେଶ କର ।
ଦର୍ପଣ ଧର ସ୍ନାହାନ ପ୍ରକାର ।
ସ୍ୱର୍ଣ୍ଣ ତାରକ ମନ୍ତ୍ରେ ପୂଜା କର ।
ଯେତେ ପୁରେ ରାମରୂପ ବହର ।
ଦାଶରଥି ଯେତେ ପୁରେ ଅଛନ୍ତି ।
ଛତିଶ ପ୍ରକାରେ ପୂଜିବ ସେଥି ।
ମାଣିକ ମାଳା ସହସ୍ରେକ ଆଣି ।
ସୁଦେବୀକି ଡାକ ଦେଲେକ ପୁଣି ।
ବୋଇଲେ ସହସ୍ରେ ସଙ୍ଗର ସଖୀ ।
ଗୋଟିଏ ଗୋଟିଏ ଦିଅ ଗୋ ବାଣ୍ଟି ॥
ସୁଦେବୀ ଶୁଣି ବାଣ୍ଟି ଦେଲା ତାଙ୍କୁ ।
ନାରଦ ବୋଇଲେ ଗୋପୀମାନଙ୍କୁ ।
ମହାମନ୍ତ୍ରରେ ଏ ମାଳ ଜପିବ ।
ତେବେ ନାରାୟଣ ସଙ୍ଗ ହୋଇବ ।
ପୁଣି ସହସ୍ରେ ମାଳ ହାର ଆଣି ।
ରଙ୍ଗଦେବୀଙ୍କ ଦେଲେ ମୁନି ଜାଣି ।
ବୋଇଲେ ଏ ମାଳ ସମସ୍ତେ ନେବେ ।
ମହା ମନ୍ତ୍ରରେ ଜପ କରିବେ ।
ଶୁଣି ଭୃଙ୍ଗଦେବୀ ବାଣ୍ଟିଣ ଦେଲେ ।
ମହାମନ୍ତ୍ରେ ଜପ ବୋଲି ବୋଇଲେ ॥
ମେଲାଣି ମାଗି ହୁଇ ସସ୍ତ ନାରୀ ।
ଯେଝା ପୁରକୁ ସେ ଗଲେକ ଚଳି ।
ସେଠାରୁ ନାରଦ ଚଳିଲେ ପୁଣି ।
ଚନ୍ଦ୍ରରେଖା ପୁରେ ପ୍ରବେଶ ଜାଣି ।
ବସିଛୁ ସୁନ୍ଦରୀ ସ୍ନାହାନ କରି ।
ଗୋବିନ୍ଦ ନାମ ହୃଦପଦ୍ମେ ଧରି ।
କେହି ନାହାନ୍ତି ସଙ୍ଗରେ ତାଙ୍କର ।
ବୋଲକାରୀ ମାନେ ସଙ୍ଗେ କେବଳ ।
ଦଧି ମନ୍ଥନ ସମସ୍ତେ କରନ୍ତି ।
ଦେବୀ ଏକାନ୍ତେ ବସିଣ ଅଛନ୍ତି ।୧୦।
ନାରଦ ମିଳିଲେ ତାଙ୍କର ପୁର ।
ଦେଖିଣ ସୁନ୍ଦରୀ ଯୋଡ଼ିଲା କର ।
ଚରଣ ଧୋଇ ଘରେ ଘେନିଗଲା ।
ବସିବାକୁ ଦିବ୍ୟ କମଳ ଦେଲା ।
ଦଧି ମନ୍ଥନ ସାରି ସଖୀଗଣ ।
ପ୍ରବେଶ ହୋଇଲେ ତାଙ୍କ ପାଖେଣ ।
ଚନ୍ଦ୍ରରେଖା ବୋଲେ ବହନ ଚଳ ।
ଯମୁନାରୁ ବେଗେ ଅଣାଅ ଜଳ ।

୧-୨,—ନାରଦ ଜାଣ (କ) । ୨-୧—ଦେଖେ କରନ୍ତେ (ଗ)।

ବ୍ରହ୍ମାଙ୍କ ନନ୍ଦନ ସ୍ନାନ କରିବେ ।
ଉତ୍ତର ନ କର ଆସିବ ବେଗେ ॥
ଶୁଣିଣ ପାଞ୍ଚ ଜଣ ଚଳି ଗଲେ ।
ଯମୁନା ନଦୀରୁ ଜଳ ଆଣିଲେ ।
ଚଉକି ପକାଇ ଦେଲେ ବାହାରେ ।
ମୁନିଙ୍କ ଡ଼ାକି ବସାଇ ତହିଁରେ ।
ସ୍ନାହାନ ସାରିଲେ କଳହ ଋଷି ।
ନିତ୍ୟ କର୍ମ ବେଗେ ସାରଣ ଉଠି ।
ଦହି ଖିଇ ଛେନା ସର ଲବଣୀ ।
ମୁନିଙ୍କି ଦେଲା ଚିତ୍ରରେଖା ପୁଣି ।
ଭୋଜନ ସାରି ଆଚମନ କଲେ ।
କମଳ ଆସନ ପରେ ବସିଲେ ।୩୦।
ଚିତ୍ରକାରଙ୍କୁ ସୁମରଣା କରି ।
ରୂପକାରମାନେ ସହସ୍ରେ ମିଳି ।
ଚିତ୍ରରେଖା ଦେଖି ସନ୍ତୋଷ ହେଲା ।
ଶୂନ୍ୟ ପୁରୁଷଙ୍କୁ ନେତ୍ରେ ଦେଖିଲା ।
ମୁନି ବୋଇଲେ ଗୋ ଶୁଣ ସୁନ୍ଦରି ।
ଚିତ୍ରପଟରେ ରୂପ ଲେଖା କରି ।
ସମସ୍ତଙ୍କ ପୁରେ ଅଇଲୁ ପୁଣ ।
ଆଉ ଉନ୍ନଜଣ ଅଛନ୍ତି ଜାଣ ।
ମନ୍ଦିର ନିର୍ମଳ କରି ଗୋଷ୍ଠଏ ।
ରଘୁନାଥ ରୂପ ହେଲେ ସ୍ୱଦେହେ ॥
ଶୁଣିଣ ଚିତ୍ରରେଖା ଚଳିଗଲା ।
ମନ୍ଦିର ନିର୍ମଳ କରି ଡ଼ାକିଲା ।
ରୂପକାର ଯାଇଁ ପ୍ରବେଶ ହେଲେ ।
ରଘୁନାଥ ମୂର୍ତ୍ତି ସଞ୍ଜୀବ କଲେ ।
ମଣ୍ଡଳ ଭିତରେ ଚତୁର୍ଭୁଜ ରୂପ ।
ଶ୍ୟାମଳ ବର୍ଣ୍ଣ ଲେଖିଲେ ସ୍ୱରୂପ ।
ରଘୁନାଥ ରାମନାଥ ଯେ ପୁଣ ।
ଗୋପୀନାଥ ବିଶ୍ୱନାଥ ପ୍ରମାଣ ।
ଏମନ୍ତେ ଚତୁର୍ଭୁଜ ମୂର୍ତ୍ତି ଦେଖିଣ ।
ଜୀବନ୍ୟାସ କଲେ ନାରଦ ପୁଣ ।
ଧୂପ ଦୀପ ଗନ୍ଧ ଚନ୍ଦନ ଦେଲେ ।
ଆଳତି ସାରି ପୂଜା ବିଧି କଲେ ।
ଚିତ୍ରରେଖାକୁ ବ୍ରହ୍ମ ଜ୍ଞାନ କହି ।
ପୂଜା ଜପ ମନ୍ତ୍ର ଦେଲେ ଶିଖାଇ ।
ଅଏଁଲା ମାଳ ଗୋଟି ଆଣି ଦେଲେ ।
ଏ ମାଳେ ଜପ କରିବ ବୋଇଲେ ।
ସେଠାରୁ ଉଠିଣ ମୁନି ଚଳିଲେ ।
ଚିତ୍ରରେଖା ତାଙ୍କ ସଙ୍ଗରେ ଗଲେ ।
ଗୋପୀମାନଙ୍କର ଘରରେ ମିଳି ।
ଦେଖି ଶୁଣି ଗୋପୀ ଆନନ୍ଦେ ଚଳି ॥
ମନ୍ଦିର ମାନ କଲେକ ନିର୍ମଳ ।
ଚିତ୍ରକାର ରୂପ ଲେଖିଲେ ଘର ।
ସମସ୍ତଙ୍କ ଘରେ ଚତୁର୍ଭୁଜ ରୂପ ।
ରାମ ରଘୁ ଗୋପୀ ସେ ବିଶ୍ୱନାଥ ।
ସହସ୍ରେ ପୁରେ ଲେଖି ରୂପକାର ।
ଶାମଳ ମୂରତି ଅତି ସୁନ୍ଦର ।
ସମସ୍ତଙ୍କ ପୁରେ ନାରଦ ମିଳି ।
ଜୀବନ୍ୟାସ ରୂପ ସବୁଙ୍କି କରି ।
ପୂଜା କଲେ ନାରାୟଣ ମନ୍ତ୍ରରେ ।
ଆଳତି ଧୂପ ଦୀପ ଚନ୍ଦନରେ ।୫୦।
ସମସ୍ତଙ୍କୁ ବ୍ରହ୍ମଜ୍ଞାନ କହିଣ ।
ଅଏଁଲା ମାଳ ସମସ୍ତଙ୍କୁ ପୁଣ ।
ଦେଇଣ ମହାମନ୍ତ୍ର କହିଁଦେଲେ ।
ଏମନ୍ତେ ଜପ କରିବ ବୋଇଲେ ।
ଚିତ୍ରରେଖାକୁ କହି ଚଳିଗଲେ ।
ଇନ୍ଦୁରେଖା ପୁରେ ପ୍ରବେଶ ହେଲେ ।

ଯମୁନା ଗାଧୋଇ ଯାଉଛୁ ମୋହ ।
ସଙ୍ଗ ସଖୀମାନେ ନାହାନ୍ତି କେହ ।
ଶାଶୁ ଜଟିଲା ଘରେ ତାର ଅଛୁ ।
ମୁନିଙ୍କି ଦେଖିଣ ଓଳଗେ ଆସି । ୫୫ ।
ସୁବର୍ଣ୍ଣ ଝଞ୍ଜରେ ପାଣି ଆଣିଣ ।
ମୁନଙ୍କ ଚରଣ ଧୋଇଲା ପୁଣ ।
କ୍ଷୀନ ବସନରେ ଚରଣ ପୋଛୁ ।
ଶାଲ ଯୋଡ଼ ପାଡ଼ ଦେଲା ଚଉଁଚ ।
ତହିଁ ପରେ ମୁନ ଯାଇଁ ବସିଲେ ।
ଏହି ସମୟେ ଇନ୍ଦୁରେଖା ମିଳେ ।
ଦେଖିଲା ପୁରେ ବଜେ ଦେବଋଷି ।
ମୁନଙ୍କ ଚରଣେ ଲୋଟିଲା ଆସି ।
ମୁନ ବୋଇଲେ କେଣେ ଯାଇଥିଲ ।
ଜଟିଲା ସେବା କଲାକ ଅପାର । ୬୦ ।
ସହସ୍ରେ ସାଖା ଯେ ସଙ୍ଗରେ ଥିଲେ ।
ସମସ୍ତେ ମୁନଙ୍କି ଦର୍ଶନ କଲେ ।
ଚରଣେ ଶୋଇଲେ ସକଳ ଗୋଇ ।
ଉଠିଣ କର ଯୋଡ଼ି ଉଭା ହୋଇ ।
ନାରଦ ବୋଇଲେ ସମସ୍ତେ ଶୁଣ ।
ତୁମ୍ଭ ଚନ୍ତା ଦେଖି ଅଇଲୁ ପୁଣ ।
ଶ୍ରୀକୃଷ୍ଣ ଗଲାରୁ ଝୁରୁଛ ତୁମ୍ଭେ ।
ବୋଧ କରିବାକୁ ଅସିଛୁ ଅମ୍ଭେ ।
ଚିତ୍ରପଟରେ ରୂପ ଲେଖି ଦେବା ।
ତୁମ୍ଭମାନ ମନ ଶାନ୍ତ କରିବା । ୬୫ ।
ଶୁଣିଣ ସମସ୍ତେ ତୋଷ ହୋଇଲେ ।
ଜୀବନ ଅମୃତ ରଖି ବୋଇଲେ ।
ଶୁଣିଣ ନାରଦ ମନେ ବିଚାର ।
ରୂପକାରେ ଅସି ଭୁଟିଲେ ମିଳ ।

ଋଷି ବୋଇଲେ ଶୁଣ ଗୋ ଗୁଆଳ ।
ଯେତେକ ମନ୍ଦିର ନିରମଳ କର ।
ରୂପକାରଙ୍କୁ ଦେଖାଇଣ ଦେବ ।
ଚିତ୍ରପଟେ ରୂପ ଲେଖିବେ ସର୍ବ ।
ରୂପ ଦେଖିଣ ଅମ୍ଭ ପାଶେ ଅସ ।
ଅମ୍ଭେ ତୁମ୍ଭଙ୍କୁ କହିବା ଗୁପତ ।୭୦।
ଶୁଣିଣ ସମସ୍ତେ ଚଳଣ ଗଲେ ।
ରୂପକାର ମାନ ସଙ୍ଗରେ ନେଲେ ।
ଘରମାନଙ୍କରେ ହେଲେ ପ୍ରବେଶ ।
ମନ୍ଦିରମାନ ଦେଖାଇ ହରଷ ।
ନିର୍ମଳ ଦେଖି ଚିତ୍ରପଟ ଲେଖି ।
ଅନନ୍ତ ଶଯ୍ୟନେ ଯେସନେ ମଛ ।
ଅଲଙ୍କାର ରୂପ ସବୁରି ପରେ ।
ଶୟନ ହୋଇଛୁ ସର୍ପ ଉପରେ ।
ଲକ୍ଷ୍ମୀ ସରସ୍ୱତୀ ପାଦ ମଞ୍ଚାଳ ।
ବୀଣା ତମ୍ବୁରୀ ଧରି ସ୍ୱର କରି । ୭୫ ।
ଏମନ୍ତ ରୂପ ଯେ ସମସ୍ତ ଘରେ ।
ଲେଖିଣ ମଣ୍ଡଳ ଦେଲେ ଉପରେ ।
ଇନ୍ଦୁରେଖା ପୁରେ ଏହି ପ୍ରକାରେ ।
ଚତୁର୍ଭୁଜ ମୂରତି ସବୁରି ଘରେ ।
ଲେଖି ରୂପକାର ମିଳଲେ ଅସି ।
ସମସ୍ତ ଗୋପୀ ସଙ୍ଗେ ସଙ୍ଗେ ଛନ୍ତି ।
ଦେଖିଣ ଉଠିଲେ ନାରଦ ପୁଣ ।
ଚରଣ ଧୋଇ ବସିଲେ ତକ୍ଷଣ ।
ଅନନ୍ତ ମନ୍ତ୍ରେ ଅଣାକାର ରୂପ ।
ଜୀବନ୍ୟାସ କଲେ ଚତୁର୍ଭୁଜ ରୂପ ।୮୦।
ପୁରୁଷ ହୁଇ ସ୍ତିରୀ ହୁଇ ଜଣ ।
ଷୋଡ଼ଶ ମନ୍ତ୍ରେ ପୂଜା କଲେ ପୁଣ ।

୬୫-୧—ସତ୍ତ୍ୱର ଢଳେ (ଶ,ଗ,ପ,ଡ,ଚ,କ) ।

ଇନ୍ଦୁରେଖା ପୂଜା ସାମଗ୍ରୀ ଦେଲା ।
ଅଗେ ଧୂଆ ମୃଗ ନେଇ ଥୋଇଲା ।
ଛନ୍ନ ଗୁଡ ସଙ୍ଗେ ପଇଡ଼ ଜାଣ ।
ଡାଲ ଲୁଞ୍ଚ ଗଜା ଡାଲମ୍ବ ପୁଣ ।
ଦେଖିଣ ମୁନି ତାଙ୍କୁ ପୂଜା ଦେଲେ ।
ଧୂପ ଦୀପ ଗନ୍ଧ ଆଲତି କଲେ ।
ଅମଲାଣ ବସ୍ତ୍ର ପିନ୍ଧାଇ ତାଙ୍କୁ ।
ଫୁଲ ଚନ୍ଦନେ ବେଶ କଲେ ତାଙ୍କୁ । ୮୯ ।
ଉଠି ପ୍ରଲମ୍ବିତ କଲେକ ମୁନି ।
ଇନ୍ଦୁରେଖା ସଙ୍ଗେ ସମସ୍ତେ ପୁଣି ।
ଦର୍ଶନ କଲେ ଧରଣୀରେ ଶୋଇ ।
ବୋଲନ୍ତି ଦୟା କର ଲକ୍ଷ୍ମୀସାଇଁ ।
ସହସ୍ରେ ଗୋପୀଙ୍କି ନାରଦ କହି ।
ବ୍ରହ୍ମଜ୍ଞାନ ମନ୍ତ୍ର ଶିଖାଇ ଦେଇ ।
ଷୋଡ଼ଶ ଉପଚ୍ଚାର ପୂଜା ଦେଲେ ।
ବେଶ ଭୂଷଣ ସବୁ କହି ଦେଲେ ।
ଶଉଚ ସ୍ନାହାନ ତର୍ପଣ କର ।
ଧୂପ ଆଲତି ଦୀପେ ତୋଷ ଯାର ॥
କାଇଁଚ ମାଳା ସହସ୍ରେ ଆଣିଣ ।
ସହସ୍ରେ ଗୋପୀଙ୍କି ଦେଲେ ବନ୍ଦନ ।
ବୋଇଲେ ଏ ମାଳେ କରବ ଜପ ।
ମହାମନ୍ତ୍ର ମନେ ଧ୍ୟାଇ ସ୍ୱରୂପ ।
ସେଠାରୁ ଉଠିଣ ବନ୍ଦନ ଗଲେ ।
ଗୋପୀଙ୍କ ଘରେ ପ୍ରବେଶ ହୋଇଲେ ।
ଚତୁର୍ଦ୍ଧା ମୂର୍ତ୍ତି ଜୀବନ୍ୟାସ କର ।
ସମସ୍ତଙ୍କ ଘରେ ନାରଦ ପେଶ ।
ସହସ୍ରେ ରୂପ ଜୀବନ୍ୟାସ କଲେ ।
ସମସ୍ତଙ୍କୁ କହି ସେଠାରୁ ଗଲେ । ୯୬ ।

ଇନ୍ଦୁରେଖା ପୁରେ ହେଲେ ପ୍ରବେଶ ।
ବୁଝାଇ ତାଙ୍କୁ କହିଲେ ସମସ୍ତ ।
ସେଠାରୁ ମୁନି କଲେକ ଗମନ ।
ଲବଙ୍ଗଲତା ପୁରେ ଯାଇ ପୁଣ ।
ଆନନ୍ଦ ବନ ସୁନ୍ଦରୀର ପୁଣ ।
ସ୍ନାହାନ ସାରି ପିନ୍ଧି ଅମଲାଣ ।
ଫୁଲ ଚନ୍ଦନ ବେଶ ହୋଇ ନାରୀ ।
ସିଂହାସନ ପରେ ବସି ସୁନ୍ଦରୀ ।
ସହସ୍ରେ ସୁନ୍ଦରୀ ସଙ୍ଗରେ ଛନ୍ତି ।
ଆଲଟ ଚାମର କରୁଁ ବିଞ୍ଚନ୍ତି । ୧୦୦ ।
କେବଣ ନାରୀମାନେ କଲେ ନୃତ୍ୟ ।
ବୀଣା ଡମ୍ବୁରୁ କେ ବାଏ ଭୁରତ ।
ରାମ କୃଷ୍ଣ ଦାମ ସୁଦାମ କେହି ।
ଚଳ ଯେସନେ ନାଚୁଥାନ୍ତି ପ୍ରହି ।
ସେହି ରୂପେ ନାଟ ନୃତ୍ୟ ହୋଉଛି ।
ବଜେ କଲେ ଯାଇଁ ବ୍ରହ୍ମାଙ୍କ ବଚ୍ଛି ।
ଦେଖି ସିଂହାସନୁ ଲବଙ୍ଗଲତା ।
ଉଠିଣ ମୁନି ଚରଣେ ଭଗତା ।
ସକଳ ଗୋପୀ ପାଦେ ଓଳଗିଲେ ।
ଲବଙ୍ଗଲତା ଚରଣ ଧୋଇଲେ ॥
ଝୀନ ବସନରେ ପୋଛି ବନ୍ଦନ ।
ମୁନିଙ୍କି ବସାଏ ସିଂହାସନେଣ ।
ଫଳମୂଳ ଆଣି ମୁନିଙ୍କ ଦେଲେ ।
ଯମୁନା ଜଳ ଆଣିଣ ଥୋଇଲେ ।
ଉଠିଣ ନାରଦ କଲେ ଭୋଜନ ।
ଅଚମନ ସାରି ଭୁଞ୍ଜିଲେ ପାନ ।
ସୁମରଣା କଲେ ରୂପକାରଙ୍କୁ ।
ସହସ୍ରେ ଚଣକାର ଅସିବାକୁ ।

୮୬-୨—ଘେନ ଥୋଇଲ (ଡ) । ୮୭-୨—ଲକ୍ଷୀସାଇଁ (ଘ) ।

ରୂପକାର ଆସି ସମ୍ମୁଖେ ମିଳ ।
ଲବଙ୍ଗଲତା ଦେଖି ମନେ ଭୁଲ ॥
ମନେ ବିଗୁରଇ କଷ୍ଟ ଚରିତ୍ର ।
ସମ୍ମୁଖେ ଅଇଲେ ଶୂନ୍ୟ ପୁରୁଷ ।
ନାରଦ କହେ ଗୋପାଙ୍ଗଣୀ ଶୁଣ ।
ମନ୍ଦିର ଗୋଟିଏ ଦେଖାଅ ପୁଣ ।
ରୂପକାର ଚିତ୍ରପଟେ ଲେଖିବେ ।
ସମସ୍ତଙ୍କ ମନ ତୋଷ କରିବେ ।
ଶୁଣି ଲବଙ୍ଗଲତା ଚଳ ଗଲା ।
ମନ୍ଦିର ଗୋଟି ଦେଖାଇଣ ଦେଲା ।
ମଚ୍ଛ କୂରୁମ ବରେହା ସ୍ୱରୂପ ।
ନାରଦ ବୋଇଲେ ଲେଖ ପ୍ରତ୍ୟକ୍ଷ ॥
ଆଗେ ମଣ୍ଡଳ କରିବ ତିଆଣ ।
ମନ୍ଦିରେ ଲେଖିବ ଗ୍ରହଙ୍କି ପୁଣ ।
ଗଣି ବ୍ରହ୍ମରୂପ ସଙ୍ଗରେ ଥିବ ।
ଚତୁର୍ଦ୍ଧା ମୂରତି ରୂପ ଲେଖିବ ।
ଶୁଣି ଚିତ୍ରକାର ବନ୍ଦନ ଗଲେ ।
ଚତୁର୍ଦ୍ଧା ରୂପ ମଣ୍ଡଳେ ଲେଖିଲେ ।
ଗୋପୀମାନଙ୍କ ସଙ୍କେତରେ ଯାଇ ।
ସମସ୍ତଙ୍କ ଘରେ ରୂପ ତିଆଇ ।
ମଚ୍ଛ କୂରୁମ ବରେହା ଗଣେଶ ।
ସମସ୍ତଙ୍କ ପୁରେ କରି ପ୍ରକାଶ । ୧୬୦ ।
ରୂପକାର ମାନେ ଶୂନ୍ୟକୁ ଗଲେ ।
ନାରଦ ଚରଣ ଧୋଇ ବସିଲେ ।
ଜୀବନ୍ୟାସ କଲେ ଚତୁର୍ଦ୍ଧା ରୂପ ।
ଏକ ଅକ୍ଷରେ ଅଟେ ଯେଉଁ ମନ୍ତ୍ର ।
ଧୂପ ଦୀପ ଗନ୍ଧ ଚନ୍ଦନ ଦେଇ ।
ଅମୃତ ଯୋଗାଡ଼ ପୂଜନ୍ତ ଠାଇଁ ।
ସ୍ନାହାନ ବେଶ ପିନ୍ଧାଇବା ବାସ ।
ମନ୍ତ୍ର ପୂଜା ବିଧି କରି ସମସ୍ତ ।
ବ୍ରହ୍ମଜ୍ଞାନ ସମସ୍ତଙ୍କୁ କହିଲେ ।
ମଥୁରି କାଷ୍ଠମାଳ ଆଣି ଦେଲେ । ୧୬୫ ।
ସମସ୍ତଙ୍କ ପୁରେ ପ୍ରବେଶ ହୋଇ ।
ରୂପ ଜୀବନ୍ୟାସ କରିଣ ଦେଇ ।
ମହାମନ୍ତ୍ରେ ମାଳ ଜପ ଗୋ ସବେ ।
ଦାସ ଦନାଇ ସେବେ ପଦ୍ମ ପାଦେ ।୧୬୭।

୧୬୩-୬—ପୂଜିଲେ ନେଇ (ଗ,ତ) ।



# ଦ୍ୱାତ୍ରିଂଶ ଛାନ୍ଦ

ଶୁଣ ଗୋ ପାର୍ବତି ଏମନ୍ତ ରସ ।
ଗୋପିକା ଦେଖି ନାରଦ ହରଷ । ୧ ।
ମଥୁରା ମଞ୍ଜିଆ ସହସ୍ରେ ମାଳ ।
ଦେଇଣ ଗୋପୀଙ୍କ କଣ୍ଠ ସକଳ ।
ଲବଙ୍ଗଲତା ପୁରେ ହେଲେ ଯାଇ ।
ସମସ୍ତ ଗୋପୀ ଘରେ ଛନ୍ତି ଧାଇ ।
ଲବଙ୍ଗଲତା ସଙ୍ଗେ ସର୍ବ ଗୋଈ ।
ସମସ୍ତଙ୍କୁ ମୁକ୍ତ ମେଲାଣି ଦେଇ ।
ଅନ୍ତର୍ଦ୍ଧାନ ହୋଇ ସେଠାରୁ ଗଲେ ।
ନନ୍ଦ ନଗରେ ପରବେଶ ହେଲେ । ୫ ।
ରୋହଣୀ ଯଶୋଦା ନନ୍ଦ ସଙ୍ଗରେ ।
ରାମ, କୃଷ୍ଣ କଥା ଭାବି ମନରେ ।
ଏହି ସମୟରେ ନାରଦ ମିଳ ।
ଦେଖି ତିନିଜଣ ପାଦରେ ପଡ଼ି ।
ଯମୁନା ଜଳରେ ଧୋଇ ଚରଣ ।
ଅମଳାଣ ବସ୍ତ୍ରେ ପୋଛିଲେ ପୁଣ ।
ସିଂହାସନ ପରେ ନେଇ ବସାଇ ।
ରାମ କୃଷ୍ଣ କଥା ତାଙ୍କୁ ପୁଚ୍ଛଇ ।
ନାରଦ ବୋଇଲେ ଅଛନ୍ତି ସୁଖେ ।
ବ୍ରହ୍ମ ଜ୍ଞାନସୂତ୍ର ହେଲେ ସ୍ୱପକ୍ଷେ । ୧୦ ।
ବିଦ୍ୟା ଶିଖିଣ ବ୍ରାହ୍ମଣ ହୋଇଲେ ।
କଂସ ପୁଅଙ୍କୁ ଏବେ ନାଶ କଲେ ।
ମତେ ଭେଜି ଦେଲେ ତୁମ୍ଭ ପୁରକୁ ।
ବୋଇଲେ କହିବ ତାତ ମାତାଙ୍କୁ ।
ବୋଲିବ ଜାରାସନ୍ଧ ସଙ୍ଗେ ଦ୍ୱନ୍ଦ ।
ତାଙ୍କୁ ମାରଣ ଆସିବେ ଶ୍ରୀଅଙ୍ଗ ।
ଶୁଣିଣ ନନ୍ଦ ଯଶୋଦା କହିଲେ ।
ଅନ୍ଧ ପଟଳ ଦେଇ କରି ଗଲେ ।
ଛ’ମାସ ହେଲା ନେତ୍ରେ ନ ଦେଖିଲୁ ।
ପାଷାଣ ତରୁ ହୋଇଣ ରହିଲୁ । ୧୫ ।
ଏତେ ବୋଲିଣ କରନ୍ତି ରୋଦନ ।
ନାରଦ ତାଙ୍କୁ କଲେ ପ୍ରବୋଧନ ।
ବୋଇଲେ ଆରତ ନୁହ ଗୋ ତୁମ୍ଭେ ।
ବ୍ରହ୍ମାଣ୍ଡ କରତା ସବୁରି ଏବେ ।
ତୁମ୍ଭ ଘରେ ଥିଲେ ରଖନ୍ତେ ଗାଈ ।
ଏବେ ତ ସବୁରି ଠାକୁର ହୋଇ ।
ବୃନ୍ଦାବନରେ ବେହେରା ବୋଲାନ୍ତେ ।
ଏବେ ମହାପ୍ରଭୁ ହେଲେ ସାକ୍ଷାତେ ।
ଦେବତା ବ୍ରାହ୍ମଣ ରାଜା ଯେ ଋଷି ।
ସମସ୍ତଙ୍କର ସେ ଦେବ ଅଟନ୍ତି । ୨୦ ।
ପୂର୍ବେ ଭାଗ୍ୟ ଥିଲା ତୁମ୍ଭର ପୁଣ ।
ନାରାୟଣ କୋଳେ ବସିଲେ ଜାଣ ।
ଏବେ ମାଳା ଧରି ଜପ ହରିଙ୍କି ।
ରୂପ ଲେଖି ଦେବା ଦେଖିବ ନନ୍ଦ ।
ଏତେ ବୋଲି ରୂପକାର ସୁନ୍ଦର ।
ଦୁଇଜଣ ଆସି ଭୁରତେ ମିଳ ।
ବୋଇଲେ ନନ୍ଦ ବେଗେ ଚଳ ଯାଅ ।
ମନ୍ଦିର ଏହାଙ୍କୁ ଦେଖାଇ ଦିଅ ।
ରୂପ ତହିଁରେ କରନ୍ତୁ ପ୍ରକାଶ ।
ଦେଖିଲେ ତୁମ୍ଭେ ହୋଇବ ସନ୍ତୋଷ ॥

ଶୁଣିଣ ନନ୍ଦ ବେଗେ ଚଳିଗଲେ ।
ରୂପକାରଙ୍କୁ ନେଇ ଦେଖାଇଲେ ।
ବୋଇଲେ ଏ ପୁରେ କର ଲେଖନ ।
ପଥର କାନ୍ଥ ଚୂନ ବାଡ଼ି ପୁଣ ।
ନାରଦ ବୋଇଲେ ରୂପକାରଙ୍କୁ ।
ଦାରୁବ୍ରହ୍ମ ରୂପ ଏହି ଠାବକୁ ।
ଆଗେ ମଣ୍ଡଳ ଆକାର ସେ କଲେ ।
ଗୃହପାଶେ ଦେବଗଣ ଲେଖିଲେ ।
ମନ୍ଦିରେ ନୀଳ ମାଧବ ଶ୍ରୀହରି ।
ଧବଳ ମୂର୍ତ୍ତି ଅନନ୍ତ ଯେ କରି । ୩୦ ।
ମଧ୍ୟରେ ଲକ୍ଷ୍ମୀ ଦେବୀ ଲେଖିଲେ ।
ସୁଦର୍ଶନ ଚକ୍ର ରୂପ ଲହିଲେ ।
ଆଗେ ସଦାଶିବ ପଛରେ ବ୍ରହ୍ମା ।
ସମସ୍ତେ ଅଛନ୍ତି ମଣ୍ଡଳ ସୀମା ।
ଲେଖି ରୂପକାର କହିଣ ଗଲେ ।
ନାରଦ ଚରଣ ଧୋଇ ବସିଲେ ।
ନନ୍ଦଙ୍କୁ ବୋଇଲେ ସାମଗ୍ରୀ ଆଣ ।
ଗୁଆ ନଡ଼ିଆ ଯେ ଚାଉଳ ପୁଣ ।
ଦୁଧ ଦହି ସର ଛେନା କଦଳୀ ।
ପଇଡ଼ ନବାତ ଯମୁନା ବାରି ।
ଘୃତ ସମିଧ ଯେ ରଖିଲେ ପୁଣ ।
ଫୁଲ ଚନ୍ଦନ ଧୂପ ଦୀପ ଜାଣ ।
ସମସ୍ତ ସଂଯୋଗ କରି ରଖିଲେ ।
ନୀଳ ବ୍ରହ୍ମଙ୍କୁ ଜୀବନ୍ୟାସ କଲେ ।
ଗୋପାଳ ମନ୍ତ୍ରେ ପୂଜା ତାଙ୍କୁ କରି
ଅନନ୍ତ ମୂର୍ତ୍ତି ଜୀବନ୍ୟାସ କରି ।
ଶିବ ପଞ୍ଚାକ୍ଷରେ ପୂଜା କରିଣ ।
ଭୁବନେଶ୍ୱରୀ ମନ୍ତ୍ରେ ଦେବୀ ପୁଣ ।
ଜୀବନ୍ୟାସ କରି ଦେବୀ ପୂଜିଲେ
ଜୀବନ୍ୟାସ ସୁଦର୍ଶନଙ୍କୁ କଲେ । ୪୦ ।
ମଣ୍ଡଳ ଦେବ ଜୀବନ୍ୟାସ କରି ।
ଷୋଡ଼ଶ ମନ୍ତ୍ରେ ପୂଜା ବିଧି ସାରି ।
ହୋମ କରିଣ କଲେକ ସବନ୍ଧ ।
ସକଳ ପଦାର୍ଥ କଲେ ପୂଜିତ ।
ଫୁଲ ଚନ୍ଦନ ବେଶ କରାଇଲେ ।
ନନ୍ଦ ଯଶୋଦା ରୋହିଣୀ ଡ଼ାକିଲେ ।
ଦାରୁବ୍ରହ୍ମଙ୍କୁ କରାଇ ଦର୍ଶନ ।
ସେଠାରୁ ଉଠିଲେ ନାରଦ ପୁଣ ।
ପ୍ରସାଦ ନେଇ କଲେକ ଭୋଜନ ।
ନନ୍ଦ ଯଶୋଦା ରୋହିଣୀ ଯେ ପୁଣ ॥
ମୁନି ପ୍ରସାଦ ଭୁଞ୍ଜିଣ ସନ୍ତୋଷ ।
ଆଚମନ କରି ବ୍ରହ୍ମାଙ୍କ ଶିଷ ।
ବାହୁଅ ଭୁଞ୍ଜି ସନ୍ତୋଷ ହୋଇଲେ ।
ମନ୍ତ୍ର ପୂଜା ବିଧି ଶିଖାଇ ଦେଲେ ।
ସ୍ନାହାନ ଶଉଚ ବେଶ ଭୂଷଣ ।
ନନ୍ଦଙ୍କୁ କହି ଚଳିଗଲେ ପୁଣ ।
ମଥୁରା ପୁରେ ପରବେଶ ହେଲେ ।
ଉଗ୍ରସେନ ସଭାଠାରେ ମିଳିଲେ ।
ଦେଖିଣ ସମସ୍ତେ ଉଠିଲେ ବେଗେ ।
ପ୍ରଲମ୍ବିତ କଲେ ମୁନିଙ୍କ ପାଦେ । ୫୦ ।
ରାମ କୃଷ୍ଣ ଉଠି ଚରଣେ ସେବି ।
ସଭାରେ ନେଇ ବସାଇଲେ ବେଗି ।
ଉଗ୍ରସେନ ଦିବ୍ୟ ଆସନ ଦେଲେ ।
ଆନନ୍ଦ ହୋଇଣ ମୁନି ବସିଲେ ।
ସଭା ଭାଙ୍ଗିଣ ଯେଝା ଘର ଗଲେ ।
ରାମ କୃଷ୍ଣ ସଙ୍ଗେ ଋଷି ଚଳିଲେ ।
ବସୁଦେବ ପୁରେ ହେଲେ ପ୍ରବେଶ ।
ଉତରଙ୍କୁ ଗଲେ ରୋହିଣୀ ଶିଷ ।

ଶ୍ରୀକୃଷ୍ଣ ନାରଦ ବସିଲେ ପୁଣି ।
କୁଶଳ ବାରତା ପୁଚ୍ଛିଲେ ଜାଣି ।୬୫।
ଗୋପପୁର କଥା ମୁନି କହିଲେ ।
ଗୋପୀଗଣ ବଡ଼ ଦୁଖୀ ହୋଇଲେ ।
ଚିନ୍ତାରେ ହୃଦୟ ଗଲାଣି ସଡ଼ି ।
ଶରୀର ମାନ ଅଛି କଳା ପଡ଼ି ।
ରାତ୍ରି ଦିବସରେ ଝୁରନ୍ତି ବସି ।
ଅନୁକ୍ଷଣରେ ଚିନ୍ତା ବ୍ରହ୍ମରାଶି ।
ନେତ୍ର ମାନଙ୍କରୁ ବୋହୁଛି ବାରି ।
ଆମ୍ଭେ କି ତାଙ୍କର ହେଲୁ ବଇରୀ ।
ଆମ୍ଭଙ୍କୁ ଦେଖି ମାନ୍ୟ ଧର୍ମ କଲେ ।
ସକଳ କଥା କୁଶଳ ପୁଚ୍ଛିଲେ ।୭୦।
ବୋଇଲେ କୃଷ୍ଣ ନ ଆସିଲେ ହରି ।
ଆମ୍ଭେ କି ତାଙ୍କର ହେଲୁ ବଇରୀ ।
ସୁମରୁ ଅଛନ୍ତି ତୁମ୍ଭଙ୍କୁ ନାରୀ ।
ରାଧା ବୋଇଲେ ବଡ଼ ଚିନ୍ତା ଦେଲେ ।
ଗିରି ଦିନକୁ କଣ୍ଠ କରି ଗଲେ ।
ଛ'ମାସ ହୋଇଲା ରହିଲେ ତେଣେ ।
ଦେଖା ଦରଶନ ନ ଦେଲେ ଦିନେ ।
କନ୍ଦୁ ବଚନ ଆମ୍ଭଙ୍କୁ କହିଲେ ।
ବୋଇଲେ ଦେବତା ଶିଖାଇ ନେଲେ ।
ଆମ୍ଭେ ତାହାଙ୍କୁ ବୋଧିଲୁ ଅପାର ।
ଚିତ୍ରପଟ ଲେଖା ସମସ୍ତ ଘର ।
ସମସ୍ତ ଗୋପୀଏ ଆମ୍ଭଙ୍କୁ ବୋଲେ ।
ଆମ୍ଭ ଦୁଖ ଜଣାଇବ ଶ୍ୟାମରେ ।
ବୋଲିବ ଗୋପକୁ ଆସିବେ ଥରେ ।
ସୁଦୟା କରିବ ଗୋପୀଙ୍କ ଠାରେ ।
ସେଠାରୁ ଆମ୍ଭେ ନନ୍ଦଘର ଗଲୁ ।
ଆଠଦିନ ହେଲା ଗୋପରେ ଥିଲୁ ।
ନନ୍ଦ ଯଶୋଦାଙ୍କୁ କହି ବହୁତ ।
କାନ୍ଥେ ଲେଖି ଦେଲୁ ବ୍ରହ୍ମ ସ୍ୱରୂପ ।
ବୋଇଲୁ ଏ ରୂପ ଲକ୍ଷ୍ୟେ କରିବ ।
ଯେବେ ନାରାୟଣ ନେତ୍ରେ ଦେଖିବ ॥
କହିଣ ସେଠାରୁ ଚଳି ଅଇଲୁ ।
ତାଙ୍କର ଦୁଖ ତୁମ୍ଭଙ୍କୁ କହିଲୁ ।
ଦିନେ ତୁମ୍ଭେ ଗୋପ ପୁରକୁ ଯାଅ ।
ତାତ ଜନନୀଙ୍କୁ ବୁଝାଇ କହ ।
ଶ୍ରୀକୃଷ୍ଣ ବୋଇଲେ ଦେଖୁ ନାହିଁ କି ।
କଂସସଙ୍ଗ ଧାତ୍ରି ଆମ୍ଭ ତହିଁକି ।
ଦ୍ୱାରକା ଆମ୍ଭେ ଯେତେବେଳେ ଯିବା ।
ସମସ୍ତ ଗୋପୀଙ୍କି ସଙ୍ଗରେ ନେବା ।
ନାରଦଙ୍କୁ ଘେନି ଭିତରେ ଗଲେ ।
ଚରଣ ଧୋଇ ପୂଜା ବିଧି କଲେ ।୭୫।
ଭୁଞ୍ଜିବାକୁ ଦିବ୍ୟ ପଦାର୍ଥ ଦେଲେ ।
ଆଚମନ କରି ପାନ ଭୁଞ୍ଜିଲେ ।
ମେଲାଣି ହୋଇ ଗଲେ ନିଜ ପୁର ।
କୃଷ୍ଣ ରହିଲେ ବସୁଦେବ ଘର ।
ଶୁଣିଲଟି କି ଗୋ ଦକ୍ଷ-ନନ୍ଦନ ।
ଗୋପୀମାନଙ୍କର ଚରିତ୍ର ପୁଣି ।
ଭଗବତୀ ବୋଲେ ଶୁଣିମା ହର ।
ଗୋପ ସୁନ୍ଦରୀ କସ କଲେ ଆଉ ।
କେମନ୍ତ ରୂପମାନ ପୂଜା କଲେ ।
କେମନ୍ତେ ତୋଷ ହୋଇଣ ରହିଲେ ॥
ଏହା ମୋତେ କହ ଦେବଙ୍କ ନାଥ ।
ଶୁଣିମାକୁ ମୋର ଶରଧା ଚିତ୍ତ ।
ପ୍ରିୟବଚନ ଶରଧାରେ ପୁଣ ।
ଗୋପୀଙ୍କ କଥା କହନ୍ତି ଈଶାନ ।
ରୂପ ଲେଖି ଦେଇ ନାରଦ ଗଲେ ।
ଗୋପୀମାନେ ସବୁ ସନ୍ତୋଷ ହେଲେ ।

ବେଶଭୂଷଣ ନାନା ବର୍ଣ୍ଣେ ପୁଣ ।
ସ୍ନାହାନ ଶଉଚ ବିଧିରେ ଜାଣ ।
ଆନନ୍ଦ ହୋଇ ନାନା ଦ୍ରବ୍ୟ ଭ୍ୟାଇ ।
ପୂଜା କରନ୍ତି ଚିତ୍ରପଟେ ନେଇ । ୮୫।
ବୋଲନ୍ତି ସ୍ୱରୂପ ହୋଉ ଭୁମ୍ଭର ।
ଆମ୍ଭ ସଙ୍ଗତରେ କର ବିହାର ।
ରୂପମାନେ ସର୍ବେ ପ୍ରସନ୍ନ ହେଲେ ।
ଗୋପୀମାନଙ୍କୁ ବଚନ କହିଲେ ।
ବୋଇଲେ ଶୁଣ ଗୋ ବ୍ରଜସୁନ୍ଦର ।
ଅସ୍ଥି ଦେହ ସିନା ଅଟେ ଆମ୍ଭର ।
ରକତ ମାଉଁସ ଶରୀରେ ନାହିଁ ।
କେମନ୍ତେ ବୋଧ ହେବ ଗୋପ ଗୋଇ ।
ଆମ୍ଭେ ତ ଦେବତା ଭୁମ୍ଭେ ମାନୁଷ ।
ଜୀବନ୍ୟାସରୁ କହିଲୁ ସନ୍ଦେଶ ।୯୦।
ସାତ ବରଷ ଛଅ ମାସ ଗଲେ ।
ଦ୍ୱାରକାକୁ କୃଷ୍ଣ ବିଜେ ହୋଇଲେ ।
ନିଶ୍ଚିନ୍ତ ହେଗ ଗୋ ଭୁମ୍ଭେ କରିବ ।
ଦିନ ସରିବ ଗୋ ଲୋକ ମିଳିବ ।
ଅଳପ ଦିନ ଶାନ୍ତି ହୋଇ ରହ ।
ରାଧାଠାରେ ଯାଇଁ କର ସେନେହ ।
ଏମନ୍ତ ଶୁଣିଣ ଗୋପୀଏ ତୋଷ ।
ସମସ୍ତେ ମିଳିଲେ ରାଧିକା ପାଶ ।
ଚନ୍ଦ୍ରାବଳୀ ଶତଦଳ କମଳେ ।
ବସିଅଛି ଦେଖ ପଦ୍ମକେଶରେ ।୯୫।
ଚିତ୍ରପଟ ରୂପ ସଙ୍ଗରେ ଘେନ ।
ପଦ୍ମମୁଖି ବେଶ ହୋଇଛି ପୁଣି ।
ମଦନ ମୋହନ କୋଳରେ ଶୋଭା ।
ସଖୀଗଣ ମାନେ ଅଗରେ ଉଭା ।
ଆଲଟ ଚାମରି ଧରି ବିଞ୍ଚନ୍ତି ।
ମଣିମା ଡାକ ଶବଦ କରନ୍ତି ।
ଧବଳ ଛତ୍ର ଅଗେ ଟେକି ପୁଣ ।
ଷୋଳସସ୍ର ଗୋପୀ ଦେଖନ୍ତି ଜାଣ ।
ଷୋଳ ନାୟିକା ଜଣାଇଲେ ଯାଇ ।
ସବୁ ଘରେ ରୂପ ନାରଦ ଦେଇ ॥
ଉଠ ଚନ୍ଦ୍ରାବଳୀ ବହନ ଯିବା ।
ସମସ୍ତଙ୍କ ପୁରେ ଫେରି ଦେଖିବା ।
ଶୁଣିଣ ରାଧିକା ଉଠିଣ ବେଗେ ।
ସମସ୍ତଙ୍କୁ ଘେନ ଚଲେ ସରାଗେ ।
ପୂର୍ଣ୍ଣମାସୀ ପୁରେ ମିଳିଲେ ଯାଇ ।
ଚନ୍ଦ୍ରଶିଖର ସଙ୍ଗରେ କହାଇ ।
ଦେଖିଣ ଦର୍ଶନ ତାହାଙ୍କୁ କଲେ ।
ଧବଳ ଛତ୍ର ଅଛି ଶିର ପରେ ।
ମଣିମା ଡ଼ାକ ଅଗରେ ହଉଛି ।
ଅଢ଼େ ହୁଅ ବୋଲି କେହୁ କହୁଛି ॥
ଆଲଟ ଚାମରି ବିଞ୍ଚନ୍ତି ଧରି ।
ମଧ୍ୟରେ ବିଜୟ ରାଧାସୁନ୍ଦରୀ ।
ଅଗରେ ଷୋଳ ନାୟିକା ଚାଲନ୍ତି ।
ପଛେ ସର୍ବ ଗୋପୀ ଗୋଡାଇଛନ୍ତି ।
ଗୋପୀମାନଙ୍କର ଘରେ ଦେଖିଲେ ।
ଚିତ୍ରପଟର ଲେଖା ଦେଖି ଗଲେ ।
ସହସ୍ରେ ରୂପ ମାଧବରେ ଅଛି ।
ମଦନ ମୋହନ ସହସ୍ରେ ଦେଖି ।
ଗୋପ ନଗରେ ହାଲ୍ଲୋଳ ହୋଇଲା ।
ରାଇ ରାଜା ଗୋପନଗ୍ରେ ଫେରିଲା ।୧୧୦
ମାଧବ ରୂପ ବେଶ ଶେଢ ଫୁଲେ ।
ମଦନମୋହନ ବେଶ ପଦ୍ମରେ ।

ହୂଳ ମସ୍ର ରୂପ ଦେଖିଣ ପୁଣି ।
ଚଳପ୍ର ଲଳଢା ପୁରେ ଯାଉଣ ।
ଦେଖିଲେ ଇନ୍ଦ୍ରଗୋବିନ୍ଦ ସେଥିରେ ।
ଫଉ ଧଷଛନ୍ତ୍ର ବାମ କରରେ ।
ସେହିରୂପେ ପୁଣି ସହସ୍ରେ ଘର ।
ଦେଖିଣ ସମସ୍ତେ ଚଳେ ସତ୍ୱର ।
ବିଶାଖା ପୁରରେ ଦେଖିଲେ ଯାଇ ।
ଚତୁର୍ବା ରୂପ ନାରାୟଣ ତହିଁ । ୧୧୫ ।
ସହସ୍ରେ ମନ୍ଦିର ଦେଖିଣ ଗଲେ ।
ମାଳତୀ ପୁରେ ଗୋପୀନାଥ ଭଲେ ।
ସେଠାରୁ ମଲ୍ଲିକା ପୁରେ ମିଳିଲେ ।
କହ୍ଲାର ରୂପ ସହସ୍ରେ ଦେଖିଲେ ।
ମରୁଆ ପୁରେ ଦେଖିଲେକ ଯାଇ ।
ବାସୁଦେବ ରୂପ ସହସ୍ରେ ହୋଇ ।
କୁନ୍ଦଲତା ଘରେ ପ୍ରବେଶ ହେଲେ ।
ବାମନ ରୂପ ତହିଁରେ ଦେଖିଲେ ।
ଦୃଢକା ପୁରେ ଗୋପୀନାଥ ଦେଖି ।
ବୃନ୍ଦାବତୀ ପୁରେ ସମସ୍ତେ ଯାନ୍ତି ।୧୨୦।
କୃଷ୍ଣ ରୂପକୁ ସେଠାରେ ଦେଖିଲେ ।
ନୃସିଂହ ରୂପ ଦରଶନ କଲେ ।
ସୁଦେବୀ ଗୃହେ ଦାଶରଥି ରୂପ ।
ତୁଙ୍ଗ ଦେବୀ ପୁରେ ରାମ ସ୍ୱରୂପ ।
ରଙ୍ଗଦେବୀ ପୁରେ ରଘୁନାଥଙ୍କୁ ।
ଇନ୍ଦୁରେଖା ପୁରେ ମତ୍ସ କୂର୍ମଙ୍କୁ ।
ଲବଙ୍ଗ ପୁରେ ଅଣାକାର ରୂପ ।
ନନ୍ଦ ପୁରେ ଦାରୁବ୍ରହ୍ମ ସ୍ୱରୂପ ।
ଷୋଳସସ୍ର ପୁରେ ଦେଖିଣ ରୂପ ।
ନନ୍ଦ ପୁରେ ଦେଖି ହେଲେ ଉଷତ ॥
ସକଳ ଗୋପୀ ଯେଝା ଘର ଗଲେ ।
ଚନ୍ଦ୍ରସେଣା ପୁରେ ରାଧା ମିଳିଲେ ।
ସମସ୍ତଙ୍କ ମନ ହରଷ ହେଲା ।
ଦନାଇ ଦାସ ଗୋପରେ ରହିଲା ।

୧୧୪-୨—ଦେଖିଣ ସବେ ଚଳଲେ ସତ୍ୱର (ଡ,ଚ) ।




Printed by B. C. Patnaik, B.A. at the Prachi Press Cuttack. 1929

# କଠିନ ଶବ୍ଦାବଳୀର ଅର୍ଥ

## ପ୍ରଥମ ଛାନ୍ଦ

୪୬ । ସଫଳାର ଶିଖ୍ୟ—ଅତୁର । ଅଷ୍ଟ ଉପଲବ୍ଧ ଓଡ଼ଅରେ ସଫଳା । ୬୪ । ଗୁଅଳୀ—ଗରୁଡ଼ୁଣୀ । ୬୫ । ପାଢ଼—ପଡ଼ାଇ ।

## ଦ୍ୱିତୀୟ ଛାନ୍ଦ

୩୬ । ଛରକ—ଉପଯୁକ୍ତ । ଦୁଧ ଗଣ୍ଡୁ—ପାଟୁରେ ଥିବା ଦୁଧ । ୪୫ । ବାବେଣୀ—ବନ୍ଧନ । ୪୮ ଗଥର୍ଥ ।ସନ କରୁ । ୪୦ । ଉଦ୍ଧତ—ଅମାନଥ, ଚଗଲ । ଉଚ୍ଛଳ ବା (ଉଚ୍ଛୁଙ୍ଖଳ ଶବ୍ଦଜ) । ଫ୍ରେଂଦଳୀ—ପାଟ୍ଟ ।ଗାଳମାଳ (ପ୍ରଦଳ ଶବ୍ଦଜ) । ୭୬ । ଦଗାମ୍ବର ସ୍ୱରୂପେ—ଲଙ୍ଗଳା ରୂପରେ । ୮୦ । ପରିବନ୍ଧ—ପ୍ରକାଶ ।ଧାନ, (ପ୍ରବନ୍ଧ ଶବ୍ଦଜ) । ୮୭ । ପୂର୍ଷକାର (ପୁରୁଷକାର ଶବ୍ଦଜ) ପୌରୁଷ । ୯୪ । ସ୍ୱଳ୍ପ ନାଏନ (ଅରବ୍ୟ ସମ୍ପୃକ୍ତ ଶବ୍ଦଜ) ସ୍ୱଳାଙ୍କ ଯୋଗ୍ୟ । ୯୮ । ଶାଳଅନ୍ଧ—ଭଲ ଧାନର ଘଡ଼ । ୯୯ । ଶୁପାଟ—ଶେଯ (?) । ୧୦୦ । ସଙ୍କଟରେ—ସଙ୍କଟ ପଥରେ ।

## ତୃତୀୟ ଛାନ୍ଦ

୬୧ । ବଟ—ଲମ୍ପଟ । ୩୬ । ଅହ୍ନାବଛ – ମୂର୍ଚ୍ଛି ପାଉଛ, ଅଶ୍ୱାସନା ପାଉଛ । ୩୭ । ଲେଛଳ—ଗଛର ଡାଳ କଲ । ୪୭ । ଥମ୍ଭନ୍ତ—ଅମ୍ଭମାନଙ୍କୁ । ୬୬ । କ୍ଷୋପୁର—କଣା ଗୁହର । ୬୮ । ଧଂସାଇ—ପେଲ ହୋଇ, ଜବରଦସ୍ତି, ବଳେ ବଳେ । ୧୦୧ । ମହାଶୁଣ୍ଡ—ଗରୁଡ଼ ।

## ଚତୁର୍ଥ ଛାନ୍ଦ

୧ ଶୂଳପାଣି—ମହାଦେବ, ତାଙ୍କ (ପାଣି) ହାତରେ ଶୂଳ ଅସ୍ତ୍ର ଥାଏ । ୫ । ଶିରୀ—ଲକ୍ଷ୍ମୀ ବା ଶୋଭା । ୧୧ କଙ୍କଣ—ହାତର ଖଡ଼ୁ । ୩୦ । କାରଣ—ସାର୍ଥକ, ସଫଳ । ୩୩ । ଦାଶରଥି—ବିଷ୍ଣୁଙ୍କ ଅବତାର ଦଶରଥଙ୍କ ପୁଅ । ଏଠାରେ କୃଷ୍ଣଙ୍କୁ ବୁଝିବାକୁ ହେବ । ୪୬ । ଶ୍ରୀରଙ୍ଗ—କୃଷ୍ଣ । ୫୩ । ମାୟାମୋହନା—ଯମନ୍ତ୍ରଙ୍କୁ ଭୁଲାଇ ପାରିବାର କୌଶଳ ବା ମୁଗ୍ଧଶି । ୫୯ । ଉରେ—ଛାତିରେ । ୬୫ । ଅର୍ଥରେ ସମ୍ଭତ—ଅର୍ଥରେ ଉଭୟ ପଡ଼ିବା । ୬୮ । ବଡ଼ ତପୀ—ବଡ଼ ଭଗବତୀ । ୮୧ । ଦଶାବତରେ—ଛତ ଅଧରେ । ୮୭ । ଦଶି ରଜନୀ—ପ୍ରତି ରାତିରେ । ୯୪ । ନାନା ବନୋଦେ—ନାନା ପ୍ରକାର ଅମୋଦ ପ୍ରମୋଦରେ ।

## ପଞ୍ଚମ ଛାନ୍ଦ

୧୯ । କେଳୁଅଳ—ଅତୁଳ । ୬୪ । ନେଙ୍କଡ଼ା ଚୂଡ଼ା—ଅଡ଼ ଚୂଡ଼ା । ୬୧ । ଚୋଗ—ଡାଉନ ୬୬ । ଗୋରସ—ଦୁଧ । ୩୪ । ଅପ୍ରଚ୍ଛନ ଲେଙ୍କଡ଼ା ବେଶ—ମଳମୁଣ୍ଡିଆ ଚରକନା ପିନ୍ଧିଥିବା ଚୂଡ଼ା ରୂପ । ୩୮ । ଚୋଗ—ଝଟ, ବେଗାବେଗି । ୪୧ । କରଚ—କାମ ଦାମ (କୃତ ଶବ୍ଦଜ) । ୪୮ ନନ୍ଦ ନନ୍ଦନା—ନନ୍ଦଙ୍କ ପୁଅ କୃଷ୍ଣ । ଏଠାରେ ଯତର ଅନୁରୋଧରେ ନନ୍ଦ ନନ୍ଦନ ସ୍ଥାନରେ ନନ୍ଦନା ଲେଖା ହୋଇଛି । ୫୦ । ନଦର—ନଜର । ୫୬ । ନାଟ—ନଟୁ (ନାଟ, ନଟ ନଟୁ ପ୍ରଭୃତି ଏକାର୍ଥ ବାଚକ ଶବ୍ଦ) ଖେଳନା ବଶେଷ । ୬୫ । ଛଇଳବର—ଚତୁର ଓ ସୁନ୍ଦର ଲୋକମାନଙ୍କ ଭିତରେ ଶ୍ରେଷ୍ଠ—କୃଷ୍ଣ । ୭୭ । ଠଣା—ରହିବା (ସ୍ଥାନ ଶବ୍ଦଜ) । ୮୬ । ପାସୁଲ କଣ୍ଠି—ଏକପ୍ରକାର କଣ୍ଠି । ଚୂଡ଼ୀ ପାଖରେ ହାତରେ ଏହି ଅଳଙ୍କାର ପିନ୍ଧିବାକୁ ହୁଏ । ୯୩ । ଦୁର୍ବାଦ—ଅପବାଦ ବା କଳଙ୍କ ଲଗା କଥା ।

## ଷଷ୍ଠ ସ୍କନ୍ଦ

୧ । ପଞ୍ଚମୁଖ—ମହାଦେବ, ତାଙ୍କର ପାଞ୍ଚୋଟି ମଥା ବା ମୁଣ୍ଡ । ୫ । କେଉଁଠି—
୮ । ଚନ୍ଦ୍ରାବଳୀ—ରାଧା । ୩୦ । ଅମୂ—ଅଫିମ । ଏବେ ଯେତେବେଳେ ଏ କାବ୍ୟ ରଚନା ହା
ସେତେବେଳେ ଏ ଦେଶରେ ଅଫିମ ଖାଇବା ପ୍ରଥା ଥିଲା । ସ୍ତ୍ରୀମାନେ ମଧ୍ୟ ପୁରୁଷମାନଙ୍କ ପରି
ଖାଉଥିଲେ । ୪୧ । ଦଳ—ପାଖୁଡ଼ା । ୫୦ । ଅଞ୍ଜନ—କଜଳ । ୫୧ । ଝୀନ ବସନ—ସରୁ
ଲୁଗା । ୭୪ । ପଞ୍ଚଶର—କନ୍ଦର୍ପ । ୮୦ । ହୃତ୍ୟ—ରଙ୍ଗିଅ, କୌତୁକଅ ।

## ସପ୍ତମ ସ୍କନ୍ଦ

୧ । ଶର୍ବାଣୀ—ପାର୍ବତୀ । ୩ । ଈଶାନ—ମହାଦେବ । ୧୮ । ଘିଳଣ—ତୃଷ୍ଣା (ତୃଣ
ସାନ ହୋଏ—ଚଞ୍ଚଳ ହେବା, ଯୋଟି ପିବା (ଘାସ ଶବ୍ଦ) । ୩୪ । ମନ୍ୟୁପାଣି—କ୍ରୋଧ, ଯାହ
ଶଙ୍କ ଥାଏ । ୪୭ । ନଭସ୍ଥଳ—ଦଣ୍ଡବତ କରିବା । ୫୧ । ଗାଙ୍ଗା ବାଘ ବାଣ ପଇଡ଼—ଛାଡ଼ି
୭୩ । ଅଡ଼ଙ୍ଗା—ଘରଦ୍ୱାର ।

## ଅଷ୍ଟମ ସ୍କନ୍ଦ

୬ । ଶାକମ୍ବରୀ—ପାର୍ବତୀ । ୯ । ଅମ୍ବିକା—ପାର୍ବତୀ । ୨୯ । ନଟବାସ—ବେଶ୍ୟା । ୩୬ ।
ନୀପମୂଳକୁ—କଦମ୍ବଗଛ ମୂଳକୁ ।

## ନବମ ସ୍କନ୍ଦ

୧୩ । ହାଲ୍ଲୋଳ—କୋଳାହଳ । ୪୬ । ଇଜାର—(ପାରସିକ ଶବ୍ଦ) କର ଆଦାୟ ପାଇଁ ଠିକା ଦେଇ,
କରି କ୍ଷମତା ଦେବା । ୫୩ । ସମ୍ଭାଳ—ତାକତ୍ କରିବା, ବାଟ ବନ୍ଦ କରିବା । ୮୭ । ଉଷତ—ଟ୍ଟ ।

## ଦଶମ ସ୍କନ୍ଦ

ସ୍ୱପଥଶୀଳ—ସ୍ୱଶବ୍ଦର ମର୍ଯ୍ୟାଦା ରକ୍ଷା (ଶପଥଶୀଳ ଶବ୍ଦ) । ଖଳ—ଖଳବୁଦ୍ଧି ।

## ଏକାଦଶ ସ୍କନ୍ଦ

୪୭ । ଯଣ୍ଡା—ଫଳମାନ (ପ୍ରସ୍ତବନ୍ଦ ଶବ୍ଦ) । ୮୭ । ଅଡ଼ା—ଯୋଗ, ଦାଉ । ୧୫ । ବାସୁଦେବା—ବାସ୍ତୁ,
ବୃଥା ।

## ଦ୍ୱାଦଶ ସ୍କନ୍ଦ

୩ । ତ୍ରିଶୂଳଧର—ମହାଦେବ, ସେ ତ୍ରିଶୂଳ ଧରିଥାନ୍ତି । ୭ । ଗହ୍ୱର—ଗୋଷ୍ଠ । ୩୦ । ୯ ତ୍ରି—
ସସସ୍ତ୍ରେ । ୩୭ । ଭେଳ ଦେବେ—ପଠାଇ ଦେବେ (ପାରସିକ ଶବ୍ଦ ?—ହୃଦ ଜର୍ଜିନେ ଏହ୍ଣ ।ତ୍ରିଷ୍ଟ-
ଭେଦନା-ହୃନୀ, ବରଗିବା-ଓଡ଼ସ୍ୱା) । ୪୭ । ଷୋଳସା—ଷୋଳ ବର୍ଷିଅ । ୧୫ । ଉତ୍ସବ—ଥଣ୍ଡ । ୯

## ତ୍ରୟୋଦଶ ଛନ୍ଦ

୨୪ । ବନୋଠ—ବନଠ ଶବ୍ଦ । ୩୧ । ଝରକାଠି—କାଠର ଗହଣା, ମାଇପେ କୂଡ଼ାରେ ଖୋଷନ୍ତି । ଝଲ—ପିନ୍ଧ ବା ଯେନ । ଥୋପି ଝିଞ୍ଜିରି—କାଠର ଗହଣା । ୩୨ । ଅଳକା—ମୁଣ୍ଡର ଗହଣା । ୩୮ । ଭୁଲଇ—ଝୁଲେ । ୪୭ । ଉଗରି—ଓଲ୍ହାଇ ।

## ଚତୁର୍ଦ୍ଦଶ ଛନ୍ଦ

୩୪ । ମାତଙ୍ଗ ହାଗ । ୩୬ । ଦୋସରା—ଚଦର । ୭୦ । ସମ୍ବେ—ଅନ୍ତ୍ୟରରେ ।

## ପଞ୍ଚଦଶ ଛନ୍ଦ

୩୧ । ଢଣା—ଢୋରଣା, ଘାଟକ । ୩୬ । କଂସାଳ—କାଠିଏ ବାଜା । ୩୭ । ଝୁଲ ଖେଳ—ଖେଳ । ୭୩ । ସୁରଭି—କାମଧେନୁ । ୯୦ । ଖଗ—ଦୁଷିତ ।

## ଷୋଡ଼ଶ ଛନ୍ଦ

୪୧ । ଘଉଠ—ଏଠାରେ 'ଘଳା' ଅର୍ଥରେ ପ୍ରଯୁକ୍ତ । ୭୯ । ଡ଼ାକୁଆ—ଦଣ୍ଡାକି, ବୋଲକରା ।

## ସପ୍ତଦଶ ଛନ୍ଦ

୪୨ । ନବଗ୍ରହ ଗନ୍ଧ ହଳଦ—ଏକପ୍ରକାର ହଳଦ । ୭୪ । ନନ୍ଦ ସୋଦର—ନନ୍ଦଙ୍କ ପୁଅ । ୭୮ । ଯୁଗୁଛି—ଯୋଗାଉଛି । ୮୪ । ପଉଡ଼—ପଉଢ଼ ।

## ଅଷ୍ଟାଦଶ ଛନ୍ଦ

୨ । ସଙ୍ଗତି—ସଙ୍କ୍ଷେପ କର । ୩ । ନୀଳକଣ୍ଠ—ମହାଦେବ । ୪୭ । ସମ୍ଭାର—ଉତ୍ସବ । ୧୦୮ । ଦୃଧର—କନ୍ଦର୍ପ ।

## ଊନବିଂଶ ଛନ୍ଦ

୧ । ବମ୍ବାସ—ମହାଦେବ । ୩୪ । ଚଳସ୍ୱକର—(ଚତ୍ରଲସୁ ଶବ୍ଦ) ମନ୍ଦେର ଗୁଣ । ୨ । ନଟନାସ—ନାଚ କରିବା ସ୍ତ୍ରୀ । ୧୧୦ । କପେବାଗ—ଭୁଚି । ୧୧୧ । ସମର—ଉତ୍ସବ ।

## ଏକବିଂଶ ଛନ୍ଦ

୮୩ । ପାଏଡ଼ା—ରଜା ବନେ କଲେ ଭୂଇଁରେ ବଛା ହୋଇଥିବା ଲୁଗା ।

## ଦ୍ୱାବିଂଶ ଛନ୍ଦ

୮୮ । ସ୍ୱନର୍ଯ୍ୟ—ସୁବର୍ଣ୍ଣ ମୁଦ୍ରା

## ତ୍ରୟୋବିଂଶ ଛନ୍ଦ

୪ । ଯୋଗଧାରଣା—ମହାଦେବ । ୨୭ । ପ୍ରଚ୍ଛିଷଣ—ଶୃଙ୍ଗପଟେ ବୁଲିବା (ପ୍ରଦକ୍ଷିଣ ଶବ୍ଦଜ) । । ବରେହା—ବାର୍ହା (ବରାହ ଶବ୍ଦଜ) । ୪୭ । ମହାଥନ—(ମହାସ୍ଥାନ ଶବ୍ଦଜ) ଅତି ଅଧିକ ।

## ଚତୁର୍ବିଂଶଛାନ୍ଦ

୨୪ । ଥଳେଲ—ଚହଳ, ଗୋଳମାଳ । ୨୮ । ବଉଚି—କାନ (ଲୁଚି ଶବ୍ଦଜ) । ୩୪ । କୋଥରେ, ଦୁଃଖରେ ।

## ପଞ୍ଚବିଂଶ ଛାନ୍ଦ

୪୮ । ଶ୍ରୋଢା—ଶୋଉଠା, ଶ୍ରଦ୍ଧା । ୧୧୦ । ସମ୍ବର—ଉତ୍ସବ ।

## ଷଡ୍‌ବିଂଶ ଛାନ୍ଦ

୨୧ । ଭଳଦ୍ଭ—ଭଳଥ ନାରଦ । ୮୧ । ଲଟ ବନ୍ଧୀ କର—ଗୁରୁପଟେ ଲୁଗା ସେସରି ।

## ସପ୍ତବିଂଶ ଛାନ୍ଦ

୪ । ତ୍ରିଲୋଚନ—ତିନଅକ୍ଷିଆ ମହାଦେବ । ୧୪ । ବ୍ରହ୍ମାବଳା—ବ୍ରହ୍ମାଙ୍କ ପୁଅ ନାରଦ ।
୯୦ । ବଳଲୋଚନ—ବଲୋଚନଙ୍କ ପୁଅ ବଳ । ୧୦୭ । ପୁଷ୍ପରମାଳା—ପଦ୍ମଫୁଲର ମାଳ ।

## ଅଷ୍ଟାବିଂଶ ଛାନ୍ଦ

୮ । ନବଗ୍ରହ—ଏକପ୍ରକାର ହଳଦ । ୧୩ । ଥଇ (ଥହ୍ୟ-ଥହ୍ୟ) ସୁଲକ୍ଷଣୀ—ସଧବା ଓ ଲକ୍ଷଣବତୀ । ୪୭ । ନଖ ସାରଲେ—ଦଶାଫଳ ଅର୍ଥାତ୍ ହରଡ଼ା ଇତ୍ୟାଦ ଖିଅ ପିଅ ଶେଷ କର ପାଞ୍ଚ ପଦାଇଲେ ।

## ଊନତ୍ରିଂଶ ଛାନ୍ଦ

୧ । ବଶ୍ୱବାସ—ମହାଦେବ । ୧୬ । କ୍ରିପୁଚି—ତୃପ୍ତି ଶବ୍ଦଜ । ୨୪ । ବଳଦ୍ଭ ଗଷ୍ଟି ମୂଳ । ସେ ବଳକୁ ବଡ ଭଲ ପାଥନ୍ତି ।

## ତ୍ରିଂଶ ଛାନ୍ଦ

୨୨ । ଜଦକ—ପାଣି । ୧୧୩ । ଦାଶରଥି—ଦଶରଥଙ୍କ ପୁଅ ରାମ ।

